ଯଦୁମଣି ମଙ୍ଗରାଜ
ଜନ୍ମ ଶତବାର୍ଷିକୀ ଉତ୍ସବ

ସ୍ଥାନ – ସୂଚନା ଭବନ
ଜାନୁୟାରୀ ୧, ୧୯୯୪

## ସ୍ୱନାମଧନ୍ୟ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରାଯାଉଅଛି

ଶ୍ରୀଯୁକ୍ତ ସୁରେନ୍ଦ୍ର ନାଥ ଦ୍ୱିବେଦୀ
ଶ୍ରୀଯୁକ୍ତ ବ୍ରଜକିଶୋର ଧଳ
ଶ୍ରୀଯୁକ୍ତ ବିଜୟ କୁମାର ପାଣି
ଶ୍ରୀଯୁକ୍ତ ନାରାୟଣ ବୀରବର ସାମନ୍ତ
ଶ୍ରୀଯୁକ୍ତ ନିତ୍ୟାନନ୍ଦ ମହାପାତ୍ର
ଶ୍ରୀଯୁକ୍ତ ପ୍ରହ୍ଲାଦ ରାୟ ଲାଠ
ଶ୍ରୀଯୁକ୍ତ ବିଭୂଦେନ୍ଦୁ ମିଶ୍ର
ଶ୍ରୀଯୁକ୍ତ ଗଂଗାଧର ପାଇକରାୟ

## ଜନ୍ମ ଶତବାର୍ଷିକୀ ପାଳନ କମିଟୀ ସଭ୍ୟବୃନ୍ଦ

ମନ୍ତ୍ରୀ ଶ୍ରୀ ବିଜୟ ମହାପାତ୍ର - ସଭାପତି
ମନ୍ତ୍ରୀ ଶ୍ରୀ ନଳିନୀକାନ୍ତ ମହାପାତ୍ର - ଉପସଭାପତି
ମନ୍ତ୍ରୀ ଶ୍ରୀ ବେଦପ୍ରକାଶ ଅଗ୍ରୱାଲା - ଉପସଭାପତି
ଶ୍ରୀ ରମେଶ ଚନ୍ଦ୍ର ଧଳ, ଆଡ୍‌ଭୋକେଟ୍ - ସଂପାଦକ
ଶ୍ରୀ ବିଜୟ କେତନ ମଙ୍ଗରାଜ - ସାଙ୍ଗଠନିକ ସଂପାଦକ
ଶ୍ରୀ ଗିରିଜା ଭୂଷଣ ପଟ୍ଟନାୟକ - ଯୁଗ୍ମ ସଂପାଦକ
ଶ୍ରୀମତୀ ସଂଯୁକ୍ତା ମଙ୍ଗରାଜ - ଯୁଗ୍ମ ସଂପାଦକ
ମନ୍ତ୍ରୀ ଶ୍ରୀ ପ୍ରସନ୍ନ କୁମାର ପାଟଶାଣୀ - ସଭ୍ୟ
ମନ୍ତ୍ରୀ ଶ୍ରୀ ଚୈତନ୍ୟ ପ୍ରସାଦ ମାଝୀ - ସଭ୍ୟ
ମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ଘଡ଼େଇ - ସଭ୍ୟ
ମନ୍ତ୍ରୀ ଶ୍ରୀ ସୁରେନ୍ଦ୍ର ନାଥ ନାୟକ - ସଭ୍ୟ
ଶ୍ରୀଯୁକ୍ତ ଚିନ୍ତାମଣି ପାଣିଗ୍ରାହୀ, ପୂର୍ବତନ ରାଜ୍ୟପାଳ - ସଭ୍ୟ
ଶ୍ରୀ ରବି ରାୟ, ପୂର୍ବତନ ଲୋକସଭା ବାଚସ୍ପତି - ସଭ୍ୟ
ଶ୍ରୀମତୀ ନନ୍ଦିନୀ ଶତପଥି, ଏମ୍.ଏଲ୍.ଏ - ସଭ୍ୟ
ପ୍ରଫେସର ଡକ୍ଟର ଶ୍ରୀରାମ ଚନ୍ଦ୍ର ଦାଶ, ଆଡଭୋକେଟ୍ - ସଭ୍ୟ
ଶ୍ରୀମତୀ ମନୋରମା ମହାପାତ୍ର, ସହଯୋଗୀ ସଂପାଦିକା, ସମାଜ - ସଭ୍ୟ
ଶ୍ରୀ ଭର୍ତ୍ତୃହରି ମହତାବ, ସଂପାଦକ, 'ପ୍ରଜାତନ୍ତ୍ର' - ସଭ୍ୟ
ଶ୍ରୀ ତ୍ରିଲୋଚନ କାନୁନ୍‌ଗୋ, ଫେୟରପାଳ, କଟକ, ମ୍ୟୁନିସିପାଲିଟି - ସଭ୍ୟ
ଶ୍ରୀ ବିଶ୍ୱମ୍ଭର ପରିଡ଼ା, ସ୍ୱାଧୀନତା ସଂଗ୍ରାମୀ ସମିତି, ଓଡ଼ିଶା - ସଭ୍ୟ
ଶ୍ରୀ ଜଗଦୀଶ ପାଣି, ସଂପାଦକ, ସମାବେଶ - ସଭ୍ୟ
ଶ୍ରୀ ମହେନ୍ଦ୍ର ଜେନା, ସ୍ପେସାଲ୍ କ୍ଲାସ୍ କଣ୍ଟ୍ରାକ୍ଟର - ସଭ୍ୟ
ଶ୍ରୀ ପ୍ରସନ୍ନ କୁମାର ମଂଗରାଜ, ଖ୍ରୀଷ୍ଟ କଲେଜ - ସଭ୍ୟ
ଶ୍ରୀ ପୂର୍ଣ୍ଣଚନ୍ଦ୍ର ମଂଗରାଜ, ପ୍ରିନ୍ସପାଲ୍, ଦି ଲ' କଲେଜ, କଟକ - ସଭ୍ୟ
ଅଧ୍ୟାପକ ସ୍ୱରାଜ କେତନ ମଂଗରାଜ, କେନ୍ଦ୍ରାପଡ଼ା କଲେଜ - ସଭ୍ୟ

### ଯୁଗ୍ମ ସଂପାଦକ

**ରମେଶ ଚନ୍ଦ୍ର ଧଳ, ପ୍ରବୋଧ ଚନ୍ଦ୍ର ଚୌଧୁରୀ**

**ଡିଜାଇନ୍, ଟାଇପ ସେଟିଂ ଏବଂ ମୁଦ୍ରଣ** କ୍ୱାଲିଟି ପ୍ରେସ୍ (ପ୍ରା) ଲିମିଟେଡ୍
ଏ/୬୭, ଇଣ୍ଡଷ୍ଟ୍ରିଆଲ ଏରିଆ, ଭୁବନେଶ୍ୱର - ୭୫୧ ୦୦୧

# ଯଦୁମଣି ସ୍ମରଣିକା

## ଲେଖା ଓ ଲେଖକ





# ବାର୍ତ୍ତା

ରାଜ୍ୟପାଳ, ଓଡ଼ିଶା

ରାଜଭବନ
ଭୁବନେଶ୍ୱର ୭୫୧୦୦୮
୧୪ ଡିସେମ୍ବର, ୧୯୯୩

ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ପ୍ରମୁଖ ଭୂମିକା ଗ୍ରହଣ କରିଥିବା ଓଡ଼ିଶାର ବରେଣ୍ୟ ଜନନାୟକ, ଅଦ୍ୱିତୀୟ ବାଗ୍ମୀ ଓ ବିଶିଷ୍ଟ ସ୍ୱତନ୍ତ୍ରତା ସେନାନୀ ସ୍ୱର୍ଗତ ଯଦୁମଣି ମଂଗରାଜଂକ ଜନ୍ମ ଶତବାର୍ଷିକୀ ପାଳନ ହେବାକୁ ଯାଉଛି ଜାଣି ଅତ୍ୟନ୍ତ ଆନଂଦିତ ହେଲି । ଆଧୁନିକ ଓଡ଼ିଶାକୁ ସ୍ୱର୍ଗତ ମଂଗରାଜଂକର ଅବଦାନ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ, ଏଥିରେ ସଂଦେହର ଅବକାଶ ନାହିଁ । ଜଣେ ବିପ୍ଳବୀ ଭାବରେ ସେ ଆମର ପୂଜ୍ୟ । ଏହି ବୈପ୍ଳବିକ ଚିନ୍ତାଧାରା ତାଙ୍କୁ ନେତାଜୀ ସୁଭାଷ ବୋଷଂକର ନିକଟତର କରିପାରିଥିଲା । ଗାଂଧିଜୀଂକର ଅହିଂସା ଓ ଅସହଯୋଗର ବାଣୀକୁ ସେ ଓଡ଼ିଶାର ପ୍ରତ୍ୟେକ ପୁରପଲ୍ଲୀରେ ପରିଚିତ କରାଇଥିଲେ । ନିଜର ଓଜସ୍ୱିନୀ ବାକ୍‌ପଟୁତା ତାଂକୁ ଜନସାଧାରଣଂକର ଅତ୍ୟନ୍ତ ନିକଟବର୍ତ୍ତୀ କରିପାରିଥିଲା । ଓଡ଼ିଶାର ଜଣେ ଉଚ୍ଚକୋଟୀର ବ୍ୟବସ୍ଥାପକ ରୂପେ ସେ ସମସ୍ତଂକ ନିକଟରେ ପରିଚିତ । ତାଂକର ଉତ୍ସର୍ଗୀକୃତ ଜୀବନ ଭାବୀ–ବଂଶଧରମାନଂକ ପାଇଁ ଏକ ପ୍ରେରଣାର ଉତ୍ସ ହୋଇ ରହିବ ।

ମୁଁ ଏହି ମହାନ୍ ଆତ୍ମା ପ୍ରତି ମୋର ବିନମ୍ର ଶ୍ରଦ୍ଧାଂଜଳି ଜ୍ଞାପନ କରୁଛି ଏବଂ ଜନ୍ମ ଶତବାର୍ଷିକୀ ଉତ୍ସବର ସଫଳତା କାମନା କରୁଛି ।

(ବି. ସତ୍ୟନାରାୟଣ ରେଡ୍‌ଡୀ)

# ମଙ୍ଗରାଜେ

## ଜଷ୍ଟିସ୍ ହରିହର ମହାପାତ୍ର

ମଙ୍ଗରାଜଙ୍କୁ ଯେ ଜାଣିଛି କିମ୍ବା ତାଙ୍କ ସାଙ୍ଗେ ଯେ ଚଳିଛି, ସେ ତାଙ୍କୁ କଦାପି ଭୁଲିପାରିବ ନାହିଁ। କଂଗ୍ରେସ ବା ଅନ୍ୟ ସାଧାରଣ କାର୍ଯ୍ୟରେ ତାଙ୍କ ସହିତ ପରିଚୟ ଆଉ ଅନ୍ୟଥା ପରିଚୟ ମଧ୍ୟରେ ଆକାଶ ପାତାଳ ପ୍ରଭେଦ ଥିଲା। ଏ ଦୁଇ ପରିଚୟର ସୁଯୋଗ ମୋର ଥିଲା ତାଙ୍କ ସଙ୍ଗେ, ୧୯୨୧ରୁ କଟକକୁ ରେଭେନ୍‌ସା କଲେଜରେ ମୁଁ ପଢ଼ିବାକୁ ଆସିଲାଦିନୁ। ସେତେବେଳେ କଂଗ୍ରେସ ସଭାରେ ଭାଷଣ ଦେବାରେ ଧୁରନ୍ଧର ତିନି ଜଣଙ୍କ ମଧ୍ୟରୁ ସେ ଥିଲେ ଜଣେ। ଅନ୍ୟ ଦୁଇଜଣ ଥିଲେ, ରାଜକୃଷ୍ଣ ବୋଷ, ଗୋବିନ୍ଦ ମିଶ୍ର। ମାଇକ୍ ନଥିଲା। ମଙ୍ଗରାଜଙ୍କ ଉଚ୍ଚସ୍ୱର, ଅନର୍ଗଳ ଶବ୍ଦବାଣ ଶ୍ରୋତାମାନଙ୍କର ପ୍ରଧାନ ଆକର୍ଷଣ ଥିଲା। କଲେଜରେ ପଢ଼ିଲାବେଳେ ଆମେ କେତେଜଣ କଂଗ୍ରେସ କର୍ମୀମାନଙ୍କ ସହିତ ସହଯୋଗ ରଖୁଥିବାରୁ, ତାଙ୍କ ସହିତ ଘନିଷ୍ଠତା ହେଲା। ସେ ମଝିରେ ମଝିରେ ଆମ ଇଷ୍ଟ ହଷ୍ଟେଲ୍‌କୁ ଆସନ୍ତି ମୋ ରୁମ୍‌କୁ ବୁଲିବା ପାଇଁ। ହଷ୍ଟେଲ୍ ସୁପରିନ୍‌ଟେଣ୍ଡେଣ୍ଟ (ଆର୍ତ୍ତବାବୁ) ସେଥିପାଇଁ ମତେ ଆକଟ କରନ୍ତି। କିନ୍ତୁ ମଙ୍ଗରାଜେ ମୋ ରୁମ୍‌କୁ ଆସିଲେ, ପିଲେ ଜମନ୍ତି ସେଠାରେ। ମଙ୍ଗରାଜେ କମାଇଦେଲେ ତାଙ୍କଆଡୁ ହଷ୍ଟେଲକୁ ଆସିବା। ଯେଉଁଦିନ କଂଗ୍ରେସ ମିଟିଙ୍ଗ୍ ହେବାର ଥାଏ, ଜଣେ ଦାନରସେନାଙ୍କୁ ସକାଳେ ପଠାନ୍ତି ମୋ ପାଖକୁ ଖବର ଦେବାପାଇଁ। ସେତେବେଳେ ପ୍ରତିବର୍ଷ ଉତ୍କଳ ଛାତ୍ର ସମ୍ମିଳନୀ (All Orissa Students Conference) ହେଉଥିଲା। ମଙ୍ଗରାଜେ ପଢ଼ା ଛାଡ଼ିବା ପୂର୍ବରୁ ସେଥିରେ ଜଣେ ବଡ଼ ପଣ୍ଡା ଥିଲେ। ୧୯୨୪ ଡିସେମ୍ବର ମାସରେ ସେ ବର୍ଷର ଛାତ୍ର ସମ୍ମିଳନୀ ରେଭେନ୍‌ସା କଲେଜରେ ହେବାର ଥିଲା। ମୁଁ ଥିଲି ତା'ର କାର୍‌ପଟଦାର। ଅଭ୍ୟର୍ଥନା ସମିତି ଗଢ଼ା ହୋଇଥିଲା ପରିଜା ସାହେବଙ୍କ (Prof. P. K. Parija, I.E.S.) ଅଧ୍ୟକ୍ଷତାରେ। ଲକ୍ଷ୍ମୀନାରାୟଣ ସାହୁ ଥିଲେ ସମ୍ପାଦକ, ମଙ୍ଗରାଜ ଓ ମୁଁ ଜଏଣ୍ଟ ସେକ୍ରେଟାରୀ। ଅଫିସ୍ ହୋଇଥିଲା ଆମ ଇଷ୍ଟ ହଷ୍ଟେଲରେ, ଓ୍ୱର୍ଡେନ ଅକ୍ଷୋରଲୋନି ସାହେବଙ୍କ ଅନୁଭୂତିକ୍ରମେ। ମଙ୍ଗରାଜେ ରହୁଥିଲେ ସେତେବେଳେ କଟକ ସ୍ୱରାଜ ଆଶ୍ରମରେ କାଠଯୋଡି କୂଳରେ। ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କୁ ସମ୍ମିଳନୀର ସଭାପତି ହେବାପାଇଁ ଆମେ ଯେତେବେଳେ ସ୍ଥିର କଲୁ, କଟକ କଲେକ୍ଟର ବିଲ୍ ସାହେବ, ଏସ.ପି. ସାହେବ, କମିଶନର ସାହେବ, ଏମାନେ ସବୁ ଲାମ୍ବର୍ଟ ସାହେବ ପ୍ରିନ୍‌ସେପାଲ୍‌ଙ୍କୁ କହିଲେ, ସମ୍ମିଳନୀ କଲେଜ ହଲ୍‌ରେ କରିବା ଅନୁମତି ଓ ହଷ୍ଟେଲରେ ହୋଇଥିବା ଅଫିସ୍‌ର ଅନୁମତି ପ୍ରତ୍ୟାହାର କରିବା ପାଇଁ। ଏବକାର ଲୋକେ, ବିଶେଷ କରି ଛାତ୍ରମାନେ କଳ୍ପନା କରିପାରିବେ ନାହିଁ ସେ ସଙ୍କଟମୟ ପରିସ୍ଥିତି କଥା। କଲେକ୍ଟର ଚିଡ଼ିବସିଲେ, ସମ୍ମିଳନୀ ନାଁକୁ ଛାତ୍ର ସମ୍ମିଳନୀ, ପ୍ରକୃତରେ କଂଗ୍ରେସ ସଭା, କାରଣ ସମ୍ପାଦକ ଲକ୍ଷ୍ମୀନାରାୟଣ ସାହୁ ଓ ମଙ୍ଗରାଜ ଅଣଛାତ୍ର, ଗୋଦାବରୀଶ ବାବୁ, ଯାହାଙ୍କୁ ସଭାପତି କରାଯାଇଥିଲା, ,ଦୁରାଦୁରି କଂଗ୍ରେସ ନେତା। ପରିଜା ସାହେବଙ୍କୁ କୁହାଗଲା, ଅଭ୍ୟର୍ଥନା ସମିତିର ସଭାପତିତ୍ୱ ଛାଡ଼ିବାକୁ। ସମ୍ମିଳନୀ ହେବାକୁ ମାତ୍ର ଥାଏ ଛଅଦିନ। କଲେକ୍ଟର ଜାଣିଥାନ୍ତି ବହୁ ଛାତ୍ର ସମାଗମ ହେବ, ଗୋଦାବରୀଶ-ବାବୁ ସଭାପତି ହେଉଥିବାରୁ। ପ୍ରିନ୍‌ସିପାଲ୍ ଇଂରେଜ ହେଲେ ମଧ୍ୟ, ତାଙ୍କର ହୃଦ୍‌ବୋଧ ହେଉଥାଏ, ଲକ୍ଷ୍ମୀନାରାୟଣ ସାହୁ ଓ ମଙ୍ଗରାଜ ସମ୍ପାଦକ ଥିଲେ

ମଧ୍ୟ , ମୁଁ ସହକାରୀ ସମ୍ପାଦକଭାବେ ପ୍ରକୃତରେ ସବୁ ଆୟୋଜନ କରୁଥିଲି । ସମ୍ମିଳନୀ ବନ୍ଦ ହୋଇଗଲେ କଲେଜ ଛାତ୍ରମାନେ ଅତ୍ୟନ୍ତ କ୍ଷୁବ୍ଧ ହେବେ । ସେତେବେଳେ ଘେରାଉ, ଧର୍ମଘଟ, ଭଙ୍ଗାରୁଜା ଇତ୍ୟାଦି ପ୍ରତିବାଦର ରୂପ ନେଇ ନଥାଏ । ପ୍ରିନ୍‌ସପାଲ ଓ ପରିଜା ସାହେବ, କଲେଜ ଅଫିସ୍‌କୁ ମତେ ଡାକି କହିଲେ, ଯଦି ଲକ୍ଷ୍ମୀନାରାୟଣ ସାହୁ ଓ ମଙ୍ଗରାଜ ଓହରିଯିବେ ଏବଂ ମୁଁ ଏକାକୀ ସମ୍ପାଦକ ରହିବି, ତେବେ ସେମାନେ କଲେକ୍ଟର ଓ କମିଶନରଙ୍କୁ ପରାମର୍ଶ ଦେବେ, ସମ୍ମିଳନୀକୁ ବନ୍ଦ ନ କରିବାକୁ । ମୋ ଦୟନୀୟ ଅବସ୍ଥା ପରିଜା ସାହେବ ବୁଝୁଥିଲେ, ମୁଁ ପ୍ରଥମେ ଲକ୍ଷ୍ମୀନାରାୟଣବାବୁଙ୍କ ପାଖକୁ ଗଲି । ମାଗିକରି ଖଣ୍ଡିଏ ସାଇକେଲ ଯୋଗାଡ଼ କଲି । ପ୍ୟାଡ୍‌ଲରେ ଗୋଡଦେଇ ସିଟ୍‌କୁ ଯିବା ମୋ ଦ୍ୱାରା ହେଉନଥିଲା । ପଛ ଚକ ପିନ୍‌ରେ ପାଦଦେଇ କୌଣସି ପ୍ରକାରେ ଚଢ଼େ । ସନ୍ଧ୍ୟାବେଳ । କଲେଜଠାରୁ ସାହୁଙ୍କ ବସା ବହୁ ଦୂର । ସେ ଘରେ ନଥିଲେ । ରାତି ୮ ଟା ବେଳକୁ ଫେରି, ମୁଁ ଅପେକ୍ଷା କରିଥିବାର ଦେଖି ବିସ୍ମିତ ହେଲେ । ସବୁ କଥା ଶୁଣି, ତତ୍‌କ୍ଷଣାତ୍ ସମ୍ପାଦକ ପଦରୁ ଇସ୍ତଫା ଲେଖିଦେଲେ ଏବଂ ମତେ ସାଙ୍ଗରେ ନେଇ ସ୍ୱରାଜ ଆଶ୍ରମକୁ ଗଲେ ଯଦୁମଣି ମଙ୍ଗରାଜଙ୍କ ଇସ୍ତଫା ପାଇଁ । ମଙ୍ଗରାଜ ମୁହଁରୁ ଅମଙ୍ଗ ହେଲେ, ସବୁକଥା ଶୁଣିସାରିଲା ପରେ । କହିଲେ, ଛାତ୍ର ସମ୍ମିଳନୀ ନହେଉ କଲେଜ ହଲ୍‌ରେ, କାଠଯୋଡି ନଈବାଲିରେ କରିବା । ସମ୍ମିଳନୀ ତ ଘଣ୍ଟା ଦୁଇଘଣ୍ଟାର ପ୍ରୋଗ୍ରାମ ନଥିଲା । ଦୁଇଦିନ ଅଧିବେଶନ ହେବ ବୋଲି ଚିଠି ଓ ସମ୍ବାଦପତ୍ରରେ କୁହାଯାଇଥିଲା । କଟକ ବାହାର ପିଲେ ରହିବା ପାଇଁ କଲେଜ ବୋର୍ଡିଂରେ ବନ୍ଦୋବସ୍ତ କରାହୋଇଥିଲା । ହାତରେ ଆଉ ପଇସା ନଥାଏ ଅନ୍ୟତ୍ର ରହିବା, ଖାଇବା ବନ୍ଦୋବସ୍ତ କରିବା ପାଇଁ । ରାତି ।। ରୁ ୧୨ଟା ଯାଏ, ଲକ୍ଷ୍ମୀନାରାୟଣବାବୁ , ମୁଁ ଓ ସ୍ୱରାଜ ଆଶ୍ରମର ଅନେକ ଯେତେ ବୁଝାଇଲେ ମଧ୍ୟ ମଙ୍ଗରାଜ ଜିଦ୍‌ରୁ ଟଳିଲେ ନାହିଁ । ଅଗତ୍ୟା ଆମେ ଫେରିବାକୁ ଉଠିଲୁ । ମୁଁ କାନ୍ଦ କାନ୍ଦ ହେଲି । ଉଠିଲାବେଳେ ଅତି କୋପରେ ଲକ୍ଷ୍ମୀନାରାୟଣବାବୁ ପାଟିକରି କହିଲେ, ଯଦୁମଣି, ହରିହରକୁ ହଇରାଣରେ ପକାଇ କି ବାହାଦୁରିଟେ ପାଇବ । ଆମେ ଶେଷ ପାହାଚ଼ରେ ପହଞ୍ଚିଲା ବେଳକୁ, ପଛରୁ ମଙ୍ଗରାଜ ମୋ ପିଠିରେ ହାତଦେଇ କହିଲେ, ହରିହର, ଦିଅ ସେ କାଗଜ, ମୁଁ ଦସ୍ତଖତ କରିଦେଉଛି । ଗ୍ରୁରିଘଣ୍ଟାର ତୋଡ଼ ଭାଙ୍ଗିଗଲା । ମତେ କୁଣ୍ଢାଇ ପକାଇ ବହେ କାନ୍ଦିଲେ, ମୁଁ ମଧ୍ୟ । ପଚ୍ଚରିଲେ, ସମ୍ମିଳନୀକୁ ସେ ଆସିବେ କି ନାହିଁ । ନିଶ୍ଚୟ ଆସିବେ ବୋଲି କହି, ବିଦାୟ ନେଇ ପ୍ରାୟ  ରାତି ଗୋଟେ ବେଳକୁ ହଷ୍ଟେଲ୍‌ରେ ପହଞ୍ଚିଲି । ତହିଁ ଆରଦିନ ଦୁଇ ଇସ୍ତଫାପତ୍ର ନେଇ ପ୍ରିନ୍‌ସପାଲଙ୍କୁ ଦେଲି । ସମ୍ମିଳନୀ ହେଲା, ପରିଜାଙ୍କ ଅଭ୍ୟର୍ଥନା ସମିତିର ସଭାପତି ରୂପେ ଭାଷଣ ତେଜୋଦୀପ୍ତ ଯେପରି ଥିଲା, ଗୋଦାବରୀଶବାବୁ କଂଗ୍ରେସ ନାମ ନଧରି, ଶିକ୍ଷାନୀତି ଓ ଆଭିମୁଖ୍ୟ ଉପରେ ଏକ ଉଚ୍ଚକୋଟୀର ବକ୍ତୃତା ଦେଇଥିଲେ । ମୁଁ ସରକାରଙ୍କ ତରଫରୁ ସମ୍ମିଳନୀ ଭଣ୍ଡୁର କରିବାର ଯେଉଁ ପ୍ରୟାସ ହୋଇଥିଲା ତା'ର ପ୍ରତିବାଦ ରୂପେ ଏକ ପ୍ରସ୍ତାବ ଆଣି ଯାହା ସାମାନ୍ୟ କିଛି କହିଥିଲି, ତାକୁ ସି.ଆଇ.ଡି. ବାଲା ରିପୋର୍ଟ କଲେ ସିନା, କିନ୍ତୁ ମଙ୍ଗରାଜଙ୍କ ମନକୁ ଖୁବ୍ ପାଇଲା । ସେହିଦିନଠାରୁ ମଙ୍ଗରାଜଙ୍କ ସଙ୍ଗେ ନିବିଡ ସଂପର୍କ ରହିଆସିଥିଲା ଶେଷ ପର୍ଯ୍ୟନ୍ତ ।

ମଙ୍ଗରାଜେ ଦି' ରକମର ମଣିଷ ଥିଲେ । ସଭାସମିତିରେ, ବିଶେଷ କରି କଂଗ୍ରେସ ସଭାମାନଙ୍କରେ ପ୍ରକାରେ - ଜ୍ୱାଳାମୟ ଅଗ୍ନିବାଣ । ଆଉ ବାହାରେ ଘରେ, ବନ୍ଧୁମେଳରେ ଅତି ସ୍ନେହୀ, ଆଳାପୀ । ଝଂଜାପରି, ହାତରେ ବାଡ଼ିଧରି ପଶିଆସନ୍ତି ଘରକୁ ଯେତେବେଳେ ସେତେବେଳେ, ହସରେ ଭାଙ୍ଗିପଡୁଥାନ୍ତି । ଥଟ୍ଟା କରିବାରେ ଅତି ପଟୁ । ତାଙ୍କୁ କଟାକ୍ଷ କରି କିଏ କିଛି କହିଲେ, ଚଟାପଟ ଉତ୍ତର ଦେଇ କାବୁ କରି ଦେଉଥିଲେ । କ୍ୱଚିତ୍ ସେ ଏକାକୀ ଆସନ୍ତି । ସବୁବେଳେ ସାଙ୍ଗରେ ଦୁଇ ତିନିଜଣ । ଦିନେ କହିଲେ, "ତମେ ଜାଣିନ କି, ଆମେ ସବୁ ଭୋଟ୍ ଭିଖାରି । ଆମ ସାଙ୍ଗେ ଲୋକ ଅଛନ୍ତି ତ, ଖାତିର୍ ଅଛି । ଏକୁଟିଆ ଦେଖିଲେ କେହି ଆମ ଉପରକୁ ଛେପ ପକାଇବେ ନାହିଁ । କଂଗ୍ରେସ ପାଇଁ କଲେଜ ଛାଡି ଏଇ ଦୁର୍ଦ୍ଦଶାରେ ପଡ଼ିଲୁ । ସବୁବେଳେ ଜାଗତିଆର ନଇଲେ ଚ଼ଉପାଟ", ବହେ ହସିଲେ, ହସାଇଲେ । ପ୍ରକୃତରେ ସେ କେବେ ପସ୍ତାଇ ନାହାନ୍ତି ।

ଷ୍ଟୋନି ରୋଡ, କଟକ-୨
୧୬.୧୨.୧୯୩୩

# ନିର୍ଭୀକ ଯଦୁମଣି

ଜାନକୀବଲ୍ଲଭ ପଟ୍ଟନାୟକ

ଶ୍ରୀ ଯଦୁମଣି ମଙ୍ଗରାଜଙ୍କର ମୃତ୍ୟୁର ୩୦ ବର୍ଷ ହୋଇଗଲା । ଏବେ ମଧ୍ୟ ତାଙ୍କର ସ୍ମୃତି ତାଙ୍କ ବଂଧୁମାନଙ୍କର ହୃଦୟରେ ଅମଳିନ ରହିଛି । ବାଗ୍ମିଭାବରେ ତାଙ୍କର ପ୍ରତିଭା ଅସାମାନ୍ୟ ଥିଲା ଏବଂ ଭାରତବର୍ଷର ସ୍ୱାଧୀନତା ଆନ୍ଦୋଳନରେ ବିଭିନ୍ନ ରାଜ୍ୟରେ ଯେଉଁ କେତେକ ଗଣ୍ୟମାନ୍ୟ ବ୍ୟକ୍ତି ତାଙ୍କର ଭାଷଣ ଜରିଆରେ ଜନସାଧାରଣଙ୍କୁ ଉଦ୍‌ବୁଦ୍ଧ କରିପାରୁଥିଲେ ଏବଂ ସ୍ୱାଧୀନତାର ସେହି ଅଗ୍ନିଯୁଗର ବାର୍ତ୍ତା ମୂକ ନିପୀଡ଼ିତ ନିରକ୍ଷର ଜନସାଧାରଣଙ୍କ ମଧ୍ୟରେ ଖେଳାଇ ଦେଇପାରୁଥିଲେ, ସେମାନଙ୍କ ମଧ୍ୟରେ ଯଦୁମଣିବାବୁ ଅନ୍ୟତମ । ବିଶାଳ ଜନସଭା ମାନଙ୍କରେ ଭାଷଣ ଦେବାପାଇଁ ସେତେବେଳେ ମାଇକ୍ରୋଫୋନ୍ ବ୍ୟବସ୍ଥା ନଥିଲା । ବିଶିଷ୍ଟ ନେତାମାନଙ୍କର ବକ୍ତୃତା ଶୁଣିବାକୁ ହେଲେ ଲୋକମାନଙ୍କୁ ନିରବରେ ଧୈର୍ଯ୍ୟଧରି ଶୁଣିବାକୁ ପଡୁଥିଲା । କିନ୍ତୁ ବକ୍ତୃତା ନିରସ ହେଲେ ବା ଲୋକଙ୍କର ହୃଦ୍‌ବୋଧ ହୋଇ ନପାରିଲେ ବହୁଲୋକ ଉଠିଯାଉଥିଲେ, ସେତିକିବେଳେ ଯଦି ଘୋଷଣା କରାଯାଉଥିଲା, "ଏବେ ଯଦୁମଣି ମଂଗରାଜ କହିବେ ଆପଣମାନେ ଧୀରସ୍ଥିର ହୋଇ ବସି ତାଙ୍କ କଥା ଶୁଣନ୍ତୁ", ଯଦୁମଣିବାବୁ କହିବାକୁ ଉଠିଲେ ସେ କାଳରେ ସମସ୍ତେ ବସିପଡୁଥିଲେ । ତାଙ୍କର ଭାଷଣରେ କି ଉଦ୍ଦୀପନା, କି ମାଦକତା, ତାହା ଲୋକଙ୍କୁ ହସେଇ, କନ୍ଦେଇ ଓ ମତେଇ ଦେଇପାରୁଥିଲା, ଗାଁଉଲି କଥା ଓ ଉପମା ଛଳରେ ସେ କୌଣସି କଠିନ ବିଷୟକୁ ଅତି ସୁନ୍ଦର ଭାବରେ ବୁଝାଇ ଦେଇପାରୁଥିଲେ ।

ଥରେ ମୁଁ ବ୍ରହ୍ମପୁରରେ ଜଣେ ଭଦ୍ରବ୍ୟକ୍ତିଙ୍କ ଅତିଥି ଭାବରେ ରହିଥିଲି । ତାଙ୍କ ଘରକୁ ତାଙ୍କ ଅଞ୍ଚଳର ଜଣେ ଗାଉଁଲି ବ୍ୟକ୍ତି ଆସିଥିଲେ । କଥାବାର୍ତ୍ତା ହେଲାବେଳେ ମତେ କହିଲେ କଂଗ୍ରେସରେ ହେଉ କିମ୍ବା ଅନ୍ୟ କୌଣସି ଦଳରେ ହେଉ ଯଦୁମଣି ମଙ୍ଗରାଜଙ୍କ ପରି ବକ୍ତା ନାହାନ୍ତି ? ମୁଁ ତାଙ୍କୁ ପଚାରିଲି ତୁମେ ତାଙ୍କର ବକ୍ତୃତା ଶୁଣିଛ ତ ? କ'ଣ ତୁମର ମନରେ ଅଛି କହ, ସେ କହିଲେ ଇଂରେଜ ସରକାରଙ୍କ ସମୟରେ ବିଶ୍ୱନାଥବାବୁଙ୍କ ମନ୍ତ୍ରିମଣ୍ଡଳ ଗଢାହୋଇଥାଏ । କଂଗ୍ରେସ୍ ଇଂରେଜ ସରକାରଙ୍କ ସହ ଜଲ୍‌ଦି ସାଲିଶ କରୁଛି ବୋଲି ଲୋକଙ୍କ ଭିତରେ ପ୍ରଚାର । ଯଦୁମଣିବାବୁ ଏକ ବିରାଟ ସାଧାରଣ ସଭାରେ ବକ୍ତୃତା ଦେଇ କହିଲେ 'ଆମେ ସରକାର ଭିତରେ କାହିଁକି ପଶିଛୁ ଜାଣ ? ହନୁମାନ ସମୁଦ୍ର ପାର ହେଲାବେଳେ ତାର ଗତିରୋଧ କରୁଥିବା ରାକ୍ଷସୀର ପେଟ ଭିତରେ ପଶି ତାର ଅନ୍ତବୁଜୁଳା ଛିଣ୍ଡାଇ ପେଟ ଚିରି ଯେପରି ପେଟଭିତରୁ ବାହାରିପଡ଼ିଲା ଆମେ ସେହିପରି ଏ ସରକାର ଭିତରେ ପଶି ତାର ସମସ୍ତ ଗୁମର ବାହାର କରିବୁ ଏବଂ ଇଂରେଜ୍ ସରକାରର ପେଟ ଚିରି ଦେଶରେ ସ୍ୱରାଜ ଆଣିବୁ । ଆଉ ଏକ ଉଦାହରଣ 'ଆମେ ସିନା ସରକାର ଭିତରେ ପଶିଛୁ ଆମର ମନ ଲୋକଙ୍କ ପାଖରେ, ଗୌଡ଼ ପଖାଳକଂସା ଧରି ଗାଈ ଚରାଇବାକୁ ଯାଏ ଯେତେବେଳେ ଖାଇବା ବେଳହୁଏ ଖାଇବସେ । କିନ୍ତୁ ତାର ମନଟି ଥାଏ ଗାଈବାଛୁରୀଙ୍କ ପାଖରେ । କାଳେ ଗାଈବାଛୁରୀ ଧାନବିଲରେ ପଶିଯିବେ ସେ ପଖାଳଗୁଣ୍ଡା ମୁହଁରେ ନବା ପୂର୍ବରୁ ସବୁବେଳେ ହ-ହ- କରୁଥାଏ, ଏଥିରେ ସେ ମୀରାଙ୍କର ଏକ ପ୍ରସିଦ୍ଧ ଭଜନ 'ହେ ଗିରିଧର ନାଗର' ମୁଁ ଯାହା କାମ କରୁଥିଲେ ମଧ୍ୟ ତୁମ୍ଭ ପାଖରେ ହିଁ ମୋର ମନପ୍ରାଣକୁ ସମର୍ପି ଦେଇଛି' ଏହି

ସୁନ୍ଦର କଥାଟିକୁ ସେ ଲୋକଙ୍କ ଭାଷାରେ ରାଜନୈତିକ କ୍ଷେତ୍ରରେ କିପରି ପ୍ରୟୋଗ କରିବାକୁ ହୁଏ, ତାହା ସଫଳତାର ସହିତ କରିଥିଲେ।

ଥରେ ମୋର ନିଜର ଏକ ବ୍ୟକ୍ତିଗତ ଅଭିଜ୍ଞତାରୁ କହୁଛି ଜଗତ୍‌ସିଂହପୁରରେ ଏକ ଉପନିର୍ବାଚନ ହେଉଥାଏ। କଂଗ୍ରେସ ପକ୍ଷରୁ କବି ବୀରକିଶୋର ଦାସ୍ ପ୍ରାର୍ଥୀ, ପ୍ରଜାସୋସାଲିଷ୍ଟ ଦଳ ପକ୍ଷରୁ ଲୋକନାଥ ରାୟ ପ୍ରାର୍ଥୀ, ସେତେବେଳେ ଜଳ ଟିକସ ନ ଦେବା ପାଇଁ ପ୍ରଜାସୋସାଲିଷ୍ଟ ଦଳ ଆନ୍ଦୋଳନ କରୁଥାଏ। ନିର୍ବାଚନରେ ମଧ୍ୟ ତାଙ୍କର ପ୍ରଧାନ ଯୁକ୍ତି ଥିଲା ସେଇଆ । ସେମାନଙ୍କର ଯୁକ୍ତି ଥିଲା କେନାଲ ଜଳସେଚିତ ଅଞ୍ଚଳରେ ସବୁଲୋକଙ୍କ ଜମିରେ ଜଳକର ପଡ଼ିବା ଠିକ୍ ନୁହେଁ ଯେଉଁମାନେ ନିଜ ଜମିରେ ପାଣି ମଡ଼ାଇବେ ସେହିମାନେ କେବଳ ଜଳକର ଦେବେ ଅନ୍ୟମାନେ ନୁହେଁ। ଯଦୁମଣିବାବୁ ଏକ ସଭାରେ କହିଲେ "ଭାଇମାନେ ତୁମର ଜମି, ମୋର ଜମି, ଜାନକୀବାବୁଙ୍କ ଜମି ଲଗାଲଗି ହୋଇଅଛି। ତୁମ ଜମି ଆଗ, ତା'ପରେ ମୋର ଜମି, ତା'ପରେ ଜାନକୀବାବୁଙ୍କ ଜମି। ତୁମେ ପାଣି ନେବ ବୋଲି କହିଲ ଜାନକୀବାବୁ ମଧ୍ୟ କହିଲେ କିନ୍ତୁ; ମୁଁ ମନାକଲି ତାହାହେଲେ ପାଣି କ'ଣ ତୁମ ଜମିକୁ ଆସି ମୋ ଜମି ଉପରେ ଡେଇଁ ଜାନକୀବାବୁଙ୍କ ଜମିକୁ ଯିବ। ଏହିପରି ପାଣି କ'ଣ ଡେଇଁ ଡେଇଁ ମାଡୁଥିବ"? ବିଭିନ୍ନ ସଭାରେ ସେ ଭାଷଣ ଦେବାପାଇଁ ଠିଆ ହେଲେ ଲୋକେ ତାଙ୍କୁ ବିପୁଳ କରତାଳି ଦ୍ୱାରା ସ୍ୱାଗତ ଜଣାଉଥିଲେ। କାରଣ ମନଖୋଲି ହସିବା ଆଉ କାହା ଭାଷଣରେ ସମ୍ଭବ ନଥିଲା। ସେ ଅତ୍ୟନ୍ତ ସ୍ପଷ୍ଟବାଦୀ ଓ ନିର୍ଭୀକ ଥିଲେ। ସୀମା ଆନ୍ଦୋଳନବେଳେ ଛାତ୍ର ଓ ଜନସାଧାରଣଙ୍କର ଏକ ବିରାଟ ସାଧାରଣ ସଭାରେ ଛିଡ଼ାହୋଇ କହିଲେ 'ମୁଁ ଯଦୁମଣି ମଂଗରାଜ ଗଭର୍ଣ୍ଣର କହୁଛି ତୁମେ ଏ ସରକାର ଆଉ ମାନନାହିଁ। ସ୍ୱାଧୀନତା ସଂଗ୍ରାମର ଏହି ବୀରପୁରୁଷ ସ୍ୱାଧୀନତାର ପରବର୍ତ୍ତୀ କାଳରେ କେତେବେଳେ କଂଗ୍ରେସ ସରକାର ସହିତ ରହିଛନ୍ତି ତ କେତେବେଳେ ଖୋଲାଖୋଲି ଭାବରେ ବିରୋଧ କରି କଂଗ୍ରେସ ବିରୁଦ୍ଧରେ ନିର୍ବାଚନରେ ଲଢିଛନ୍ତି ଏବଂ ପୁଣି ମୂଳକଂଗ୍ରେସକୁ ଫେରି ଆସିଛନ୍ତି। ଡଃ ହରେକୃଷ୍ଣ ମହତାବଙ୍କ ପ୍ରଥମ ମନ୍ତ୍ରିମଣ୍ଡଳବେଳେ ସେ ତାଙ୍କୁ ସମର୍ଥନ କରୁନଥିଲେ ମାତ୍ର, ଦ୍ୱିତୀୟ ମନ୍ତ୍ରିମଣ୍ଡଳରେ ସେ ଥିଲେ ତାଙ୍କର ଜଣେ ପ୍ରଧାନ ସମର୍ଥକ। ବିଶ୍ୱନାଥବାବୁଙ୍କ ମନ୍ତ୍ରିମଣ୍ଡଳରେ ସେ ପାର୍ଲ୍ୟାମେଣ୍ଟାରୀ ସେକ୍ରେଟେରୀ ଥିଲେ ଓ ମହତାବବାବୁଙ୍କ ଦ୍ୱିତୀୟ ମନ୍ତ୍ରିତ୍ୱ କାଳରେ ସେ ଡେପୁଟି ସ୍ପିକର ହୋଇଥିଲେ। ଅବଶ୍ୟ ସ୍ପିକର ଥିଲେ ପଣ୍ଡିତ ନୀଳକଣ୍ଠ ଦାଶ। କେବେ ମନ୍ତ୍ରୀ ନଥିଲେ ମଧ୍ୟ ତାଙ୍କର ନିଜସ୍ୱ ବ୍ୟକ୍ତିତ୍ୱ ବଳରେ ସେ ସମସ୍ତଙ୍କର ଆଦରଣୀୟ ହୋଇପାରିଥିଲେ ଏବଂ ସାଧାରଣ ଜୀବନରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଥିଲେ। ୧୯୨୧ ମସିହାରେ ଛାତ୍ରଜୀବନରୁ ବିଦାୟ ନେଇ ସେ ଅସହଯୋଗ ଆନ୍ଦୋଳନରେ ଯୋଗଦେଇଥିଲେ ଏବଂ ସ୍ୱାଧୀନତା କାଳରେ କଂଗ୍ରେସ ଆନ୍ଦୋଳନର ସୁଦୃଢ ସ୍ତମ୍ଭ ଭାବରେ କାର୍ଯ୍ୟ କରିଥିଲେ। ବ୍ୟକ୍ତିଗତ ଭାବରେ ତାଙ୍କ ସହ ମୋର ବେଶ୍ ବନ୍ଧୁତା ଥିଲା ଏବଂ ଅନେକ ସଭାରେ ଆମେ ଏକତ୍ର ଅତିଥି ଭାବରେ ରହିଲୁ। ତାଙ୍କର ସ୍ନେହ, ଶ୍ରଦ୍ଧା ଓ ବ୍ୟକ୍ତିତ୍ୱ ମତେ ସବୁବେଳେ ମୁଗ୍ଧ କରିଛି। ଏପରି ଜଣେ ବ୍ୟକ୍ତିଙ୍କର ଯେପରି ସ୍ମୃତିରକ୍ଷା କରିବାର କଥା ତାହା ହୋଇପାରି ନାହିଁ। ସାମାନ୍ୟ ସାନ୍ତ୍ୱନା ଯେ କେନ୍ଦ୍ରାପଡ଼ାର ଏହି ବରପୁତ୍ରଙ୍କର ଏକ ଆବକ୍ଷ ପ୍ରତିମୂର୍ତ୍ତୀ ସେଠାର ତିନିମୁହାଣୀ ଛକରେ ଏକ ବିଶାଳ ଜନସଭାରେ ମୁଁ ମୁଖ୍ୟମନ୍ତ୍ରୀ ଥିବାବେଳେ ଉନ୍ମୋଚନ କରିବାର ସୌଭାଗ୍ୟଲାଭ କରିଥିଲି ଏବଂ ସେତେବେଳେ ତାଙ୍କର ଧର୍ମପତ୍ନୀ ଶ୍ରୀମତୀ ଚନ୍ଦ୍ରପ୍ରଭା ଦେବୀ ସେଠାରେ ଉପସ୍ଥିତ ଥିଲେ।

ବିଧାନସଭାରେ ସେ ସଭ୍ୟ ଥିବାବେଳେ ତାଙ୍କର ବିଭିନ୍ନ ଭାଷଣ ଓ ଏକ ପୁସ୍ତକ ଆକାରରେ ପ୍ରକାଶିତ ହେବା ବାଞ୍ଛନୀୟ ଏବଂ ବିଭିନ୍ନ ବିଶ୍ୱବିଦ୍ୟାଳୟରେ ଯଦୁମଣି ମଙ୍ଗରାଜଙ୍କ ନାମରେ ବାର୍ଷିକ ବକ୍ତୃତା ପ୍ରତିଯୋଗିତା ନିହାତି କରାଯିବା ଦରକାର।

• • •

# ସ୍ୱର୍ଗତ ଯଦୁମଣି

ଯୁଧିଷ୍ଠିର ଦାସ

ମଣିଷର ଜନ୍ମ କେବଳ ଖାଇପିଇ ବଂଚିବା ମଧ୍ୟରେ ସୀମିତ ନୁହେଁ। ସ୍ୱାର୍ଥଠାରୁ ସେବା, ସଂପର୍କଠାରୁ ସଂପ୍ରୀତିକୁ ଅଧିକ ଗୁରୁତ୍ୱ ଦେଇ କାର୍ଯ୍ୟକରିବା ହେଉଛି ମଣିଷର ଲକ୍ଷ୍ୟ। ଜୀବନର ପ୍ରତ୍ୟେକଟି ମୁହୂର୍ତ୍ତକୁ ଯେଉଁ ଲୋକ ଯେତେ ସଦୁପଯୋଗ କରିପାରେ, ସମାଜ କଲ୍ୟାଣରେ ବିନିଯୋଗ କରିପାରେ ସେ ସେତିକି ପରିମାଣରେ ସମର୍ଥ ହୋଇଥାଏ ବୋଲି କୁହାଯାଇଥାଏ। ଦେଶ ଓ ସମାଜର କଲ୍ୟାଣ କରିବା ପାଇଁ ପ୍ରତ୍ୟେକ ମଣିଷର ଜନ୍ମ। ଅନ୍ଧକାର ମଧ୍ୟରେ ଆଲୋକ ପାଇଁ ରାସ୍ତାଟିଏ ଫିଟାଇବାର କୁସଂସ୍କାର ମଧରେ ସଂସ୍କାରକୁ ପ୍ରତିଷ୍ଠିତ କରିବାର ଅଭିପ୍ରାୟ ରହିଥାଏ। ପ୍ରତିଟି ସମାଜସେବୀର ମନରେ ସେହିପରି ସମାଜକୁ ସୁସ୍ଥ, ଶକ୍ତ କରି ଗଢ଼ିତୋଳିବା ସହ ସୁଂଦର ଓ ସ୍ୱାଭିମାନୀ କରି ଗଢ଼ିତୋଳିବା ନିମିତ୍ତ ପ୍ରଚେଷ୍ଟା ପ୍ରତ୍ୟେକ ଦେଶସେବକ କରିଥାଏ। ଯଦୁମଣି ମଙ୍ଗରାଜ ଥିଲେ ଜଣେ ମହାନ୍ ଦେଶସେବକ।

ତାଙ୍କ ଜୀବନ ଥିଲା ସଂଘର୍ଷମୟ; କାର୍ଯ୍ୟକ୍ଷେତ୍ର ଥିଲା ବିସ୍ତୃତ, ହୃଦୟ ଥିଲା ସାଗରଠୁ ଗଭୀର ବୌଦ୍ଧିକ ଚିନ୍ତା ଓ ଚେତନାରେ ସେ ଥିଲେ ସମସ୍ତଙ୍କଠାରୁ ବହୁତ ଆଗରେ। କଟକ ଜିଲ୍ଲା ଅନ୍ତର୍ଗତ କରିଲୋପାଟଣା ଗ୍ରାମରେ ଭିକାରୀ ଚରଣ ପଟ୍ଟନାୟକଙ୍କ ପୁତ୍ରଭାବେ ସେ ଜନ୍ମଗ୍ରହଣ କରିଥିଲେ। ପିଲାଟିବେଳୁ ପାଠପଢିବା ଲାଗି ଆର୍ଥିକ ପରିସ୍ଥିତି ସହ ବରାବର ସଂଘର୍ଷ କରିବାକୁ ତାଙ୍କୁ ପଡୁଥିଲା। ସେଇଥିପାଇଁ ପ୍ରାଥମିକ ଶିକ୍ଷା ସମାପ୍ତି ପରେ ପୋଥିରେ ଡୋରି ବାଂଧିଦେଇ ପେଟପାଟଣା ଲାଗି ଚିନ୍ତା କରିବା ସହ ସିରସ୍ତାଗିରି କାର୍ଯ୍ୟରେ ଲଗାଇ ଦେବାକୁ ତାଙ୍କ ପିତା ଚିନ୍ତା କରିଥିଲେ। ହେଲେ ଯଦୁମଣିଙ୍କ ଆଶା ଓ ଆକାଂକ୍ଷା ଥିଲା ଭିନ୍ନ ପ୍ରକାରର। ସମସ୍ତ ପ୍ରତିକୂଳ ପରିସ୍ଥିତି ସତ୍ତ୍ୱେ ସେ ପ୍ୟାରୀମୋହନ ଏକାଡେମୀରୁ ପ୍ରଥମ ଶ୍ରେଣୀରେ କୃତିତ୍ୱ ସହ ମାଟ୍ରିକ୍ ପାସ୍ କରିବା ପରେ ପାଟନା ବିଶ୍ୱବିଦ୍ୟାଳୟରୁ ଆଇ. ଏସସି. ଏବଂ ବିହାର ବିଦ୍ୟାପୀଠରୁ ଡିଷ୍ଟିଂସନ୍ ସହ ବି. ଏସସି. ପାସ୍ କରିଥିଲେ।

କଟକରେ ଅଧ୍ୟୟନ କରୁଥିବା ସମୟରୁ ହିଁ ଇଂରେଜ ସାମ୍ରାଜ୍ୟବାଦୀ ଶକ୍ତି ବିରୋଧରେ ସଂଗ୍ରାମ କରିବା ଲାଗି ସେ ସଂକଳ୍ପ ନେଇଥିଲେ। ନିଜ ସମ୍ମୁଖରେ ସେ ଦେଖିପାରିଥିଲେ ବ୍ରିଟିଶମାନଙ୍କର ଶୋଷଣ, ଅତ୍ୟାଚାରର ସ୍ୱରୂପ। ଜାଲିଆନାୱାଲାବାଗ୍‌ଠାରେ ବ୍ରିଟିଶ୍ ଫଉଜର ଆଖିବୁଜା ଗୁଳିଚାଳନା ଫଳରେ ଯେଉଁ ରକ୍ତର ନଦୀ ବହିଥିଲା ତାହା ତାଙ୍କ ମନରେ ଗଭୀର ରେଖାପାତ କରିଥିଲା। ୧୯୨୧ରେ ସେ ଭାରତୀୟ ସ୍ୱାଧୀନତା ସଂଗ୍ରାମ ପାଇଁ କଂଗ୍ରେସରେ ଯୋଗଦାନ କରି ସାଂଗଠନିକ ପ୍ରସ୍ତୁତି କାର୍ଯ୍ୟରେ କେନ୍ଦ୍ରାପଡ଼ାଠାରେ କାର୍ଯ୍ୟ ଆରମ୍ଭ କଲେ। ସେ ସମୟରେ ଗୋପବନ୍ଧୁ, ହରେକୃଷ୍ଣ ମହତାବ ପ୍ରମୁଖ ନେତୃବୃନ୍ଦ ଜାତୀୟ କଂଗ୍ରେସର ଓଡ଼ିଶା ପ୍ରାନ୍ତର ସାଂଗଠନିକ କାର୍ଯ୍ୟ ଦାୟିତ୍ୱରେ ଥିଲେ। ସାଂଗଠନିକ ଦାୟିତ୍ୱ ସଂପାଦନ ସମୟରେ ସେ ସମସ୍ତଙ୍କ ଭିତରେ ବହୁତ ପ୍ରସିଦ୍ଧି ଲାଭ କରିଥିଲେ। ତାଙ୍କ ଭାଷଣ ଦେବାର ପ୍ରଚଣ୍ଡ ଶକ୍ତି ତାଙ୍କୁ ଜଣେ ଶ୍ରେଷ୍ଠ ବାଗ୍ମୀର ସମ୍ମାନ ଦେଇଛି।

ସେ ତାଙ୍କର କର୍ମମୟ ଜୀବନ ଭିତରେ କେନ୍ଦ୍ରାପଡ଼ା ଲୋକାଲ ବୋର୍ଡର ସଭାପତି ଓ ମ୍ୟୁନିସିପାଲିଟିର କାଉନ୍‌ସିଲର୍ ଭାବେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ

କରିଥିଲେ । ୧୯୨୪ରେ କାଉନ୍ସିଲର୍ ହୋଇ ୧୯୩୬ରେ ଜଣେ ବିଧାୟକ ଭାବେ ନିର୍ବାଚିତ ହେବାପରେ ପାରଳା ମହାରାଜାଙ୍କ ନେତୃତ୍ୱରେ ଗଠିତ ଓଡ଼ିଶାର ମନ୍ତ୍ରିମଣ୍ଡଳରେ ଅର୍ଥ ବିଭାଗର ପାର୍ଲିଆମେଣ୍ଟାରୀ ସେକ୍ରେଟାରୀ ଭାବେ ଅଧିଷ୍ଠିତ ହୋଇଥିଲେ । ୧୯୫୭ରେ ବଡଚଣା ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୋଇ ରାଜ୍ୟ ବିଧାନସଭାର ଉପବାଚସ୍ପତି ହେବାର ଗୌରବ ଅର୍ଜନ କରିଥିଲେ ସେ । ଏକାଧାରରେ ନିର୍ଭୀକତା, ବାଗ୍ମୀତା, ପ୍ରତ୍ୟୁତ୍ପନ୍ନମତିତା ତଥା ହାସ୍ୟରସ ପରିବେଷଣରେ ସେ ଥିଲେ ଅନୁପମ ବ୍ୟକ୍ତିତ୍ୱ ।

ଶ୍ରୀଯୁକ୍ତ ମଙ୍ଗରାଜ ବିଚ୍ଛିନ୍ନାଞ୍ଚଳର ମିଶ୍ରଣ ପାଇଁ ମଧୁବାବୁ ଏବଂ ଗୋପବନ୍ଧୁଙ୍କ ସହ ମିଶି ମେଦିନୀପୁର ଏବଂ ଅନ୍ୟାନ୍ୟ ଅଞ୍ଚଳରେ ବ୍ୟାପକ କାର୍ଯ୍ୟ କରିଥିଲେ । ସେ ଉତ୍କଳ ସମ୍ମିଳନୀର ଜଣେ ଯେ ସକ୍ରିୟ ସଦସ୍ୟ ଥିଲେ ତା ନୁହେଁ; ଉତ୍କଳ ସମ୍ମିଳନୀର ସଂଗଠନକୁ ଶକ୍ତିଶାଳୀ କରି ଗଢ଼ିତୋଳିବାରେ ତାଙ୍କର ଭୂମିକା ଥିଲା ଢେର୍ ବହୁତ । ସେହି ମହାନ ବ୍ୟକ୍ତିଙ୍କର ୧୯୬୪ ଏପ୍ରିଲ୍ ମାସ ୬ ତାରିଖ ରାତି ୨ଟା ସମୟରେ କଟକସ୍ଥିତ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡିକାଲ୍ କଲେଜ ଡାକ୍ତରଖାନାରେ ମୃତ୍ୟୁ ହୋଇଥିଲା । ଆଜି ଶ୍ରୀ ମଙ୍ଗରାଜ ନାହାନ୍ତି ସତ, ହେଲେ ତାଙ୍କର କାର୍ଯ୍ୟାବଳୀ ପାଇଁ ସେ ସମସ୍ତଙ୍କ ନିକଟରେ ନମସ୍ୟ ହୋଇ ରହିଛନ୍ତି ।

**ବାଚସ୍ପତି,**
**ଓଡ଼ିଶା ବିଧାନସଭା**

• • • •

ବ୍ରହ୍ମଚର୍ଯ୍ୟର ଅର୍ଥ ଏଠାରେ ମନରେ, ବଚନରେ ଓ କର୍ମରେ ଇନ୍ଦ୍ରିୟର ନିଗ୍ରହ ।

—ବାପୁଜୀ

ଯେପରି ଆମ୍ଭେ ଧର୍ମକୁ ଆଦର କରୁ ସେହିପରି ଅନ୍ୟ ଧର୍ମକୁ ଆଗ୍ରହ କରିବା ଉଚିତ । ମାତ୍ର ସହିଷ୍ଣୁତା ପର୍ଯ୍ୟାପ୍ତ ନୁହେଁ ।

—ବାପୁଜୀ

# ଜନନେତା ଯଦୁମଣି ମଙ୍ଗରାଜ

ବିଜୟ ମହାପାତ୍ର

'ଉତ୍‌ଥାନ ପାଦ' ଶବ୍ଦର ଅର୍ଥ-ଅଗରେ ଆଗକୁ ପାଦବଢାଇବା ପରେ ଆଉ ପଛକୁ ନ ଫେରିବା । ଏହାର ବାସ୍ତବ ରୂପାୟନ "ମହାଭାରତର ମହାରାଜ ଯୁଧିଷ୍ଠିର, ଯୁବରାଜ ସିଦ୍ଧାର୍ଥ ଓ ଯୁଗପୁରୁଷ ମହାତ୍ମା ଗାନ୍ଧୀଙ୍କ ଜୀବନରେ ସତ୍ୟାଶ୍ରୟୀ ଏହି ମହାମାନବଗଣ ଯାହା ନିଜ ଜୀବନରେ ପ୍ରତିପାଳନ କଲେ ତାହାହିଁ ଭାରତର ଐତିହ୍ୟ ଓ ଗୌରବ ।

ସ୍ୱାଧୀନତା ପାଇଁ ଆତ୍ମୋତ୍ସର୍ଗ କରିଥିବା ଏକ ଅନନ୍ୟ ବ୍ୟକ୍ତିତ୍ୱ ଯଦୁମଣି ମଂଗରାଜଙ୍କ ପାଇଁ "ଉତ୍‌ଥନ ପାଦ" ଶବ୍ଦଟି ଏକ ଯଥାର୍ଥ ପ୍ରୟୋଗ । ଏକ ସାଧାରଣ କୃଷକ ପରିବାରରେ ଜନ୍ମିଥିବା ଏହି ଯୋଗଜନ୍ମା ୧୯୨୧ ମସିହାରେ ଗାନ୍ଧୀଙ୍କ ପ୍ରେରଣାରେ ଜାତୀୟ ଆନ୍ଦୋଳନରେ ଝାସଦେଇ ୧୯୬୪ରେ ଶେଷନିଶ୍ୱାସ ତ୍ୟାଗ ପର୍ଯ୍ୟନ୍ତ ଆଉ ପଛକୁ ଫେରିନାହାନ୍ତି । ପୂର୍ଣ୍ଣ ସ୍ୱାଧୀନତା ପାଇଁ ଯେଉଁ ବଜ୍ର ଶପଥ ଦିନେ ଯଦୁମଣି ମଂଗରାଜକୁ ଏକ ଅଖ୍ୟାତ ପଲ୍ଲୀରୁ ନେଇଯାଇଥିଲା ସର୍ବଭାରତର ମୁକ୍ତିସଂଗ୍ରାମ ରଣଭୂମିକୁ ସେଠି ସେ ବହୁ କ୍ଷତାକ୍ତ ହୋଇଥିଲେ ସୁଦ୍ଧା ପଛକୁ ଫେରିନାହାନ୍ତି-ପଛକୁ ଫେରି କେବେ ଚାହିଁନାହାନ୍ତି-ସ୍ତ୍ରୀ ପୁତ୍ର ପରିଜନଙ୍କୁ । ଦିନ ପରେ ଦିନ ବଜ୍ର ଗମ୍ଭୀର ସାଲିସ୍ ବିହୀନ ସଂଗ୍ରାମର ନେତୃତ୍ୱ ନେଇଛନ୍ତି ଅବିଶ୍ରାନ୍ତଭାବେ । ତାଙ୍କର ଓଜସ୍ୱିନୀ ବାଗ୍ମିତାରେ-ହାସ୍ୟରସର ଅବତାରଣାରେ ସେ ଜନମାନସକୁ ରସାଇ, ମଜାଇ, ଫେଇଛନ୍ତି ସ୍ୱାଧୀନତା ସଂଗ୍ରାମର ସାରଥୀ ରୂପରେ ।

ଗୋଟିଏ ଜୀବନର କୋଟିଏ ବ୍ୟଥା ବେଦନାର ଭାର ବୋହି କ୍ଷମତାର ଅଳିନ୍ଦ ସ୍ପର୍ଶ କରିବା ତ ଦୂରର କଥା ସେ ନିଜର ପତ୍ନୀ ବିୟୋଗରେ ମଧ୍ୟ କାରାଗାରରେ କେବଳ ଅଶ୍ରୁତର୍ପଣ କରିଛନ୍ତି ।

ମଂଗରାଜ ଯଦୁମଣି ଥିଲେ ମଂଗରରାଜା । ସେ ଏ ଦେଶର ନୌକା ବାହିଛନ୍ତି, ନିଜର ନୌକା ବାହିଛନ୍ତି ପ୍ରତିକୂଳ ସ୍ରୋତରେ ଯେତେବେଳେ ଭଙ୍ଗାପଡିଛି ସେ ଚରାବାଲିରେ ପୋତିହୋଇ ମଧ୍ୟ ତାଙ୍କର ନିର୍ଭୀକତା ଛାଡିନାହାନ୍ତି । ସଦାବେଳେ ଯାହା ସତ୍ୟ ଯାହା ଉଚିତ୍ ତାହାହିଁ ତାଙ୍କର ଧେୟ । ସେ ବେଳର ବହୁ ସର୍ବଭାରତୀୟ ନେତୃତ୍ୱ ପଛରେ ଗୋଡାଣିଆମାନଙ୍କୁ ଚେତାଇ ଦେଇଛନ୍ତି ଛିନ୍ନମସ୍ତା ଉତ୍କଳ ଜନନୀର କଥା-ଉପାନ୍ତ ଅଞ୍ଚଳର ବ୍ୟଥା ବେଦନା ବିଜଡ଼ିତ ଲକ୍ଷ ଓଡ଼ିଆ ଭାଇଭଉଣୀଙ୍କ କଥା । ସେଥିପାଇଁ ଉତ୍କଳ ସମ୍ମିଳନୀ ମଂଚରେ ସେ ମାଗିଛନ୍ତି ମଞ୍ଜୁଷା, ତରଳା ଟେକ୍ସଟାଇଲ୍ ମେଦିନୀପୁର, ଷଡେଇକଳା ଖରସୁଆଁକୁ ଉତ୍କଳ ଜନନୀ ପାଇଁ । ଏଥିପାଇଁ ତାଙ୍କୁ କେତେବେଳେ ବା କାଠଗଡାରେ କେତେବେଳେ ବା ପଥପ୍ରାନ୍ତରେ ଅଲୋଡା ଜୀବଭାବରେ ସମକାଳୀନ କେନ୍ଦ୍ର ଗୋଡାଣିଆ ନେତୃତ୍ୱ ଠେଲିଦେଇଛି ନିର୍ମମ ଭାବରେ । ଯେଉଁ ସ୍ୱାଧୀନତା ପାଇଁ ଯଦୁମଣି ନିଜର ସୁଖସ୍ୱାଚ୍ଛନ୍ଦ୍ୟ ବଳି ଦେଇଥିଲେ ସେ ଆସିଲାବେଳକୁ ତାଙ୍କର ଭାଗ ନଥିଲା । ସ୍ୱାଧୀନ ଭାରତର ମାତ୍ର ୧୬ବର୍ଷ ମଧ୍ୟରେ ସେ ତାଙ୍କର ମହନୀୟତା ପ୍ରତିପାଦିତ କରିଛନ୍ତି ସଂସଦୀୟ ବ୍ୟାପାରରେ ଅର୍ଥବିଭାଗର ପାର୍ଲିଆମେଣ୍ଟାରୀ ସେକ୍ରେଟାରୀ ରୂପେ, ଉପବାଚସ୍ପତି ରୂପେ ।

ସେପ୍ଟେମ୍ବର ୯ତାରିଖ ୧୯୩୭ ବଜେଟ୍ ଆଲୋଚନା ପାର୍ଲିଆମେଣ୍ଟାରୀ ସେକ୍ରେଟାରୀ ରୂପେ ଉତ୍ତରଦେଇ ଯଦୁମଣିବାବୁ କହିଥିଲେ "ଆମେ ପ୍ରାଥମିକ ବାଧ୍ୟତାମୂଳକ ଶିକ୍ଷା ଚାହୁଁ କିନ୍ତୁ କେନ୍ଦ୍ରୀୟ ବାରଣ ଯେ ଆମେ ଅଧିକା ଟିକସ ବସାଇବୁ ନାହିଁ-ଟିକସବୋଝ ଲୋକଙ୍କର ସହିବା ଶକ୍ତିର ବାହାରେ" ତେଣୁ ସେଇସବୁ

ଧନୀକ ଜମିଦାର ଓ ବିପୁଳ ଭୂମ୍ୟାଧିକାରୀ ଯେଉଁମାନେ ଆଜି ମଧ୍ୟ ବର୍ଣ୍ଣାଢ୍ୟ ପରିପାଟିରେ ସଜ୍ଜିତ ହୋଇ ସୌଖୀନ ମଟର ଚଢି ବୁଲୁଛନ୍ତି ସେମାନେ ଥରେ ଗରିବ ଲୋକଙ୍କ କଥା ଭାବନ୍ତୁ "ଯୁଗପତ୍ ବିଳାସ ଭୋଗ ସାମଗ୍ରୀ ଧନରୁ କିଛି ଦରିଦ୍ର ଲୋକଙ୍କ ପାଇଁ ଦିଅନ୍ତୁ। ତେଣୁ ତାଙ୍କରି ଉପରେ କୃଷି ଆୟକର ବସାଇଲେ କେବଳ ବାଧ୍ୟତାମୂଳକ ପ୍ରାଥମିକ ଶିକ୍ଷା ପାଇଁ ଆମେ ସମ୍ବଳ ଜୁଟାଇ ପାରିବା"।

ସେହିଦିନ ପୁଣି ସରକାରୀକଳକୁ ଲକ୍ଷ୍ୟକରି ସେ କହିଥିଲେ "ଯେ ସେମାନେ ଏ ଦେଶର ବିରାଟ ହାତୀପଲ ଶିବଙ୍କର ଷଣ୍ଢ଼–ଏଠି ଯେତେ ଆଲୋଚନା ସମାଲୋଚନା କଲେ ମଧ୍ୟ ଆପଣମାନେ ତାଙ୍କର ମୋଟା ଦରମା ଛୁଇଁପାରିବେ ନାହିଁ। ମତେ ଆଶ୍ଚର୍ଯ୍ୟ ଲାଗୁଛି ସରକାର ସେମାନଙ୍କ ପ୍ରୋଭିଡେଣ୍ଟ ଫଣ୍ଡରୁ ଶତକଡା ସାଢେ ଗ୍ୱରିଭାଗ ଦେଲାପରେ ମଧ୍ୟ ଜୀବନବ୍ୟାପୀ ପେନ୍‌ସନ ଗଣୁଛନ୍ତି। ତେଣୁ ଏହାକୁ ତୁରନ୍ତ ବନ୍ଦ କରାଯାଉ ଓ ଏହି ସଂଖ୍ୟାଧିକ ଧଳାହାତୀ ବଂଶ ଗଣତିକରି ଅଧିକା ଲୋକଙ୍କୁ କାଟଛାଣ୍ଟ କରାଯାଉ"।

ଏଭଳି ରୋକ୍‌ଠୋକ୍ ସମାଲୋଚନା ଓ ଦିଗ୍‌ଦର୍ଶନ କେବଳ ଯଦୁମଣି ମଂଗରାଜଙ୍କ ପକ୍ଷେ ସମ୍ଭବ ଥିଲା– ଯିଏ ଥିଲେ ଅଗ୍ନିଗର୍ଭା ସତ୍ୟାନୁଶ୍ରୟୀ ଓ ଜନଗଣର ଦୁଃଖବେଦନାର ପ୍ରତୀକ, ଆଶାର ଆଲୋକ ଓ ପ୍ରଜ୍ୱଳିତ ବହ୍ନି। ଆଜିର ଏଇ ଆଜୀବନ ସଂଗ୍ରାମୀ ପ୍ରତିଭାଧରଙ୍କ ବ୍ୟକ୍ତିତ୍ୱ ସଂପର୍କରେ ମୋର ଏଇ ସ୍ୱଳ୍ପ ଉଲ୍ଲେଖ କେତେଧାଡିର ସ୍ମୃତି ଗ୍ୱରଣ ତାଙ୍କ ପ୍ରତି ଯଥାର୍ଥ ହେବ କି ନାହିଁ ଜାଣେନା; ମାତ୍ର ଚିନ୍ତାକରିବା କଥା ଏ ଜନମାନସର ଅଭୁଲା ସ୍ମୃତିସ୍ତମ୍ଭ ଯଦୁମଣିଙ୍କର ଅବଦାନ ପାଇଁ ପ୍ରତିଦାନରେ ଆମେ କେବଳ ଉତ୍ସବଟିଏ କରି ଆମେ ଆମ ଜାତୀୟ କର୍ତ୍ତବ୍ୟ ସଂପାଦନ କରିଛୁ ବୋଲି ଭାବିବା ଠିକ୍ ହେବତ?

ଗୋଟିଏ ପରିଚ୍ଛେଦ ଶେଷ ହୋଇଛି– ଦୀପ ଲିଭିଯାଉଛି–ଏକ ଉଜ୍ଜ୍ୱଳ ନକ୍ଷତ୍ର ନିଷ୍ପ୍ରଭ ହୋଇଛି। ଯିବାଲୋକ ତ ଫେରିଆସନ୍ତିନାହିଁ–ମାତ୍ର ବଞ୍ଚିରହେ ତାଙ୍କର ଅବଦାନ ଓ ଜୀବନାଦର୍ଶ। ତାକୁଇ ପାଥେୟ କରି ପରବର୍ତ୍ତୀ ଶ୍ରଦ୍ଧାସୁମନ ଅର୍ପଣକରି ପରବର୍ତ୍ତୀ ବଂଶଧର ନିଜ ଜୀବନ ଗଢିବାର ଦୃଷ୍ଟାନ୍ତ ପାଇଥାନ୍ତି।

ଯଦୁମଣି ନାହାନ୍ତି ! ଆଜି–କିନ୍ତୁ ସେ ଯେଉଁ ଯଦୁକୂଳର ମଣି ଥିଲେ ସେ ଯଦୁକୂଳ ଆଜି ଖଣ୍ଡବିଖଣ୍ଡିତ କ୍ଷମତାର ନାଗପାଶରେ। ମୁଁ ମୋ କୈଶୋରରେ ତାଙ୍କର ଜ୍ୱାଳାମୁଖୀ ଉଦ୍‌ଗରଣ ମାତ୍ର ଦୁଇବାର ଶୁଣିଛି–ମୋ ଜନ୍ମଭୂଇଁରେ ଏମିତି ଯୋଗଜନ୍ମା ଯେ ଜନ୍ମିଥିଲେ ତାହାହିଁ ମୋର ଗର୍ବ, ମୋର ଗୌରବ–ସେଇ ମୋର ସ୍ମୃତି ଗ୍ୱରଣ।

**ଜଳସେଚନ ଓ ସଂସଦୀୟ ବ୍ୟାପାର ମନ୍ତ୍ରୀ**

**ସଭାପତି**
**ଅଭ୍ୟର୍ଥନା ସମିତି**

• • • •

# ଏକ ଅବିସ୍ମରଣୀୟ ବ୍ୟକ୍ତିତ୍ୱ

ପ୍ରଦୀପ୍ତ କିଶୋର ଦାସ

ସ୍ୱର୍ଗତ ଯଦୁମଣି ମଙ୍ଗରାଜଙ୍କ ସହିତ ମୋର ପ୍ରଥମ ସାକ୍ଷାତ ହୁଏ ୧୯୫୩ ରେ ଅତି ଅପ୍ରତ୍ୟାଶିତ ଭାବରେ। କେନ୍ଦ୍ରାପଡ଼ା ସହରରେ ଓଡ଼ିଶାର ପ୍ରଥମ ଝୋଟଗ୍ରାହୀ ସମ୍ମିଳନୀ ହେଉଥାଏ ସ୍ୱର୍ଗତ ସାରଙ୍ଗଧର ଦାସଙ୍କ ସଭାପତିତ୍ୱରେ। ମୁଁ ଅଭ୍ୟର୍ଥନା ସମିତିର ସଂପାଦକ। ହଠାତ୍ ସଭାମଞ୍ଚ ପାଖରେ ମଙ୍ଗରାଜବାବୁଙ୍କ ଆବିର୍ଭାବ ସବୁ ଉଦ୍ୟୋକ୍ତାଙ୍କୁ ଅଡୁଆରେ ପକାଇଦେଲା। ତାଙ୍କର ପ୍ରଥମ ବାକ୍ୟ– "ଆରେ, ଏ ଝୋଟ ସଭା ନା ଭୋଟ୍ ସଭା ?" ପଛରେ କିଛି ସତ୍ୟତା ଥିଲା ନିଶ୍ଚୟ। ସମ୍ମିଳନୀ ପାଇଁ ତାଙ୍କୁ ନିମନ୍ତ୍ରଣ କରାଯାଇନଥିଲା। ଆଗକୁ ଉପନିର୍ବାଚନର ସମ୍ଭାବନା ଥାଏ। ଆମେ ଉଦ୍ୟୋକ୍ତା ମାନେ ସମସ୍ତେ ଥିଲୁ ପ୍ରଜାସୋସାଲିଷ୍ଟ ପାର୍ଟିର ଲୋକ ବା ତା'ର ସମର୍ଥକ।

୧୯୫୧ –୫୨ ପ୍ରଥମ ସାଧାରଣ ନିର୍ବାଚନରେ କେନ୍ଦ୍ରାପଡ଼ା ବିଧାନସଭା ନିର୍ବାଚନମଣ୍ଡଳୀରୁ କଂଗ୍ରେସ ପ୍ରାର୍ଥୀ ସ୍ୱର୍ଗତ ଦୀନବନ୍ଧୁ ସାହୁ ନିର୍ବାଚିତ ହୋଇଥାନ୍ତି। ତାଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା କରି ମଙ୍ଗରାଜବାବୁ ଓ ସୋସାଲିଷ୍ଟ ପାର୍ଟିର ପ୍ରାର୍ଥୀ ସ୍ୱର୍ଗତ ଡାକ୍ତର ସରୋଜକାନ୍ତ କାନୁନ୍‌ଗୋ ହାରିଯାଇଥାନ୍ତି। ମଙ୍ଗରାଜବାବୁ ପଣ୍ଡିତ ନୀଳକଣ୍ଠ ଦାଶ, ପଣ୍ଡିତ ଗୋଦାବରୀଶ ପ୍ରଭୃତିଙ୍କ ସହିତ ସ୍ୱାଧୀନ ଜନସଂଘ ନାମରେ ଏକ ଦଳ ଗଢିଥାନ୍ତି। ଭାରତୀୟ ଜାତୀୟ କଂଗ୍ରେସ ସହିତ ସେମାନଙ୍କର ସଂପର୍କ ୧୯୪୨ ପୂର୍ବରୁ ଛିନ୍ନ ହୋଇଯାଇଥାଏ। ତାହା ପୂର୍ବରୁ ନେତାଜୀ ସୁଭାଷ ବୋଷଙ୍କ ଫରୱାର୍ଡ୍ ବ୍ଲକ ସହିତ ସେମାନେ ନିକଟତର ହୋଇଯାଇଥା'ନ୍ତି।

ଦୀନବନ୍ଧୁବାବୁଙ୍କ ନିର୍ବାଚନର ବୈଧତା ବିରୁଦ୍ଧରେ ନିର୍ବାଚନ ମକଦ୍ଦମା କରି ମଙ୍ଗରାଜବାବୁ ନିର୍ବାଚନ ଟ୍ରିବୁନାଲରେ ସେତେବେଳକୁ ସମ୍ଭବତଃ ଜିତିଥାନ୍ତି। ଦୀନବନ୍ଧୁବାବୁଙ୍କ ସଭ୍ୟପଦ ରଦ୍ଦ ହେବା ସଙ୍ଗେ ସଙ୍ଗେ ସେ ନିର୍ବାଚନ ଲଢିବାକୁ ଅଯୋଗ୍ୟ ହୋଇଯାଇଥା'ନ୍ତି। ଆଗକୁ ଉପନିର୍ବାଚନ ହେବାକୁ ଥାଏ। ତେଣୁ ସମ୍ମିଳନୀରେ ଅନିମନ୍ତ୍ରିତ ଭାବରେ ଆସି ତାଙ୍କର ସ୍ୱଭାବସୁଲଭ ବ୍ୟଙ୍ଗୋକ୍ତି ଜରିଆରେ ଅପ୍ରିୟ ସତ୍ୟଟି ପ୍ରକାଶ ସମସ୍ତଙ୍କୁ କରିବା ଅପ୍ରତିଭ କରିଦେବାକୁ ସ୍ୱାଭାବିକ।

ଏହି ଘଟଣାର କେତେମାସ ପରେ ପୁଣି ଭେଟାଭେଟି ହେଲା କେନ୍ଦ୍ରାପଡ଼ା ଉପନିର୍ବାଚନରେ। କଂଗ୍ରେସ ପ୍ରାର୍ଥୀ ଥା'ନ୍ତି ପୁରୁଷୋତ୍ତମ ନାୟକ। ମଙ୍ଗରାଜବାବୁ ଏବଂ ପ୍ରଜାସୋସାଲିଷ୍ଟ ପାର୍ଟିର ପ୍ରାର୍ଥୀ ଧ୍ରୁବଚରଣ ସାହୁ, ଆଡ୍‌ଭୋକେଟ ଏଥିରେ ପ୍ରତିଦ୍ୱନ୍ଦ୍ୱିତା କରୁଥାନ୍ତି। ମୁଁ ଥାଏ ପ୍ରଜାସୋସାଲିଷ୍ଟ ପାର୍ଟିର ଜଣେ ନିର୍ବାଚନ ପ୍ରଚାରକ। ତେଣୁ ଉଭୟଙ୍କ ଶିବିର ଥାଏ ଅଲଗା। ଝୋଟଗ୍ରାହୀ ସମ୍ମିଳନୀରେ ସେ ଯେଉଁ ଭାଷଣ ଦେଇଥିଲେ ତାହା ଶୁଣିବା ପରେ ତାଙ୍କ ନିର୍ବାଚନ ସଭାର ବକ୍ତବ୍ୟ ଶୁଣିବାର ଆଗ୍ରହ ଥିଲେ ମଧ୍ୟ ସଭାକୁ ଯାଇହୁଏନା; ଅନ୍ୟମାନଙ୍କଠାରୁ ଭାଷଣର କିଛିତ ସୂଚନା ମିଳୁଥାଏ। ଆଗ୍ରହ ସମ୍ବରଣ କରିନପାରି ଦୂରରୁ ଥରେ ଅଧେ ଶୁଣିଛି। ପ୍ରତିପକ୍ଷ ପ୍ରତି ବ୍ୟଙ୍ଗ ଓ ପରିହାସ ଛଳରେ ନିଜର ମତପ୍ରକାଶ କରିବାରେ ତାଙ୍କର ଏକ ସ୍ୱତନ୍ତ୍ରତା ଥିଲା। ଯେପରି ଭାଷା ଓ ଯେପରି ଭଙ୍ଗୀରେ ସେ ତାହା ପ୍ରକାଶ କରୁଥିଲେ ଅତ୍ୟନ୍ତ ଆମୋଦଦାୟକ ଥିଲା। ବ୍ୟଙ୍ଗୋକ୍ତି ଓ ପରିହାସ ତାଙ୍କ ବକ୍ତବ୍ୟକୁ ସରସ କରୁଥିଲା। କେବଳ ପ୍ରତିପକ୍ଷମାନେ ନୁହନ୍ତି ବନ୍ଧୁ ଓ ପ୍ରିୟଜନମାନେ ମଧ୍ୟ ଏହାର ଶରବ୍ୟ ହେଉଥିଲେ। ଭାଷାର ସରସତା ଥିଲା ତାଙ୍କ ଜୀବନର ଏକ ଅବିଚ୍ଛେଦ୍ୟ ଅଙ୍ଗ।

୧୯୫୭ ନିର୍ବାଚନରେ କଂଗ୍ରେସ ଦଳର ପ୍ରାର୍ଥୀ ଭାବରେ ବଡ଼ଚଣା ନିର୍ବାଚନମଣ୍ଡଳୀରୁ ନିର୍ବାଚିତ ହୋଇ ଓଡ଼ିଶା ବିଧାନସଭାର ଉପବାଚସ୍ପତି ହେବା

ପରେ ପୁଣି ଦେଖାସାକ୍ଷାତର ସୁଯୋଗ ମିଳିଲା। ଅଧିକାଂଶ ସମୟରେ ତାଙ୍କୁ ବାଚସ୍ପତି ଆସନରେ ରହିବାକୁ ପଡୁଥିଲା। ତାଙ୍କ ଉପସ୍ଥିତ ବିଧାନସଭାର ନୀରସ ପରିବେଶକୁ ସର୍ବଦା ସରସ କରିଥାଏ। ସଭ୍ୟମାନଙ୍କ ବକ୍ତବ୍ୟ ସମୟରେ ତାଙ୍କର ସ୍ୱଭାବୋଚିତ ମଧୁର ମନ୍ତବ୍ୟ ବେଶ୍ ଆମୋଦଦାୟକ ହୋଇଥାଏ।

ବୟସରେ ସେ ମୋର ପିତୃତୁଲ୍ୟ। ମୋର ବାପା ତାଙ୍କର ସହପାଠୀ ଥିଲେ ବୋଲି ସେ ଥରେଅଧେ ମତେ କହିଥିବାରୁ ଶୁଣିଛି। ଅବଶ୍ୟ କେବେ କେଉଁଠି ସେମାନେ ଏକାଠି ପାଠ ପଢୁଥିଲେ ସେକଥା ତାଙ୍କୁ ପଚାରି ପାରିନାହିଁ। ବୟସ ଓ ପିଢିର ପାର୍ଥକ୍ୟକୁ ଟିକିଏହେଲେ ବିଗ୍ରହ ନକରି ସେ ଅତି ସ୍ୱାଭାବିକ ଭାବରେ ଟିକାଟିପ୍ପଣୀ କରି ମନକୁ ହାଲୁକା କରି ଦେଉଥିଲେ। ଜୀବନର ଶେଷ ପର୍ଯ୍ୟନ୍ତ ସେ ତାଙ୍କର ଏହି ସ୍ୱଭାବ ବଜାୟ ରଖିଥିଲେ।

ତାଙ୍କ ଜୀବନର ଅଧିକତର ମହନୀୟ ଦିଗଟିର ପ୍ରକଟ ହୁଏ ୧୯୨୦-୨୧ ବେଳୁ। ବିରାଟ ସାମ୍ରାଜ୍ୟର ଅଧିକାରୀ ବ୍ରିଟିଶ ସରକାର ବିରୁଦ୍ଧରେ ମହାତ୍ମା ଗାନ୍ଧୀଙ୍କ ଯୁଦ୍ଧର ଘୋଷଣା ଅସହଯୋଗ ଆନ୍ଦୋଳନ ମାଧ୍ୟମରେ। ଯୁଦ୍ଧ ହେବ, କିନ୍ତୁ ବିନା ଅସ୍ତ୍ରରେ। ସାରା ଦୁନିଆଁର ଆଖିକୁ ଏହା ଯେତେ ଉଦ୍ଭଟ ଓ ଅବାସ୍ତବ ମନେ ହେଉଥାଏ ନା କାହିଁକି ଏ ଦେଶର ଅନେକ ଯୁବକଯୁବତୀ ଆଗକୁ ପଛକୁ ନଗ୍ରହି ଏହି ସଂଗ୍ରାମର ନିଆଁରେ ଝାସଦେଲେ; ଏକ ନୂଆ ଇତିହାସ ଆରମ୍ଭ କରିଦେଲେ। ସେମାନଙ୍କ ଭିତରେ ତରୁଣ ଯଦୁମଣି ନିଜର ସ୍ଥାନ ବାଛି ନେଇଥିଲେ। ଓଡ଼ିଶାରେ ତାଙ୍କ ଭଳି ଅଳ୍ପ କେତେଜଣ ଶିକ୍ଷିତ ଯୁବକ ଏହି ବିପଜ୍ଜନକ ପନ୍ଥାର ପଥିକ ହୋଇଥିଲେ।

୧୯୨୧ ପରେ ଆସିଲା ୧୯୩୦ର ବ୍ୟାପକ ଗଣଆନ୍ଦୋଳନ। ଜେଲ, ଜୋରିମାନା ଲାଠିଗୁଳିରେ ତାହା ଦବିଲା ନାହିଁ, ବଢିଲା। ମୁକ୍ତି ସଂଗ୍ରାମର ପଥ ପ୍ରଶସ୍ତ କିନ୍ତୁ; କଣ୍ଟକିତ ହେଲେ ମଧ୍ୟ ଯଦୁମଣି ମଙ୍ଗରାଜଙ୍କ ପରି ଯେଉଁମାନେ ନିଜର ସୁଖସ୍ୱାଚ୍ଛନ୍ଦ୍ୟ ଓ ଭବିଷ୍ୟତକୁ ଏହି ଯାତ୍ରାପଥର ଷ୍ଟିମ୍ ରୋଲର ତଳେ ସମର୍ପି ଦେଇଥିଲେ ସେମାନଙ୍କ ଭୂମିକା, ଅଳ୍ପ କଥାରେ କହିଲେ, ଅତି ମହୀୟସୀ। ଏହି ଆତ୍ମବଳୀ-ସର୍ବସ୍ୱ ଉତ୍କଳମଣି ଗୋପବନ୍ଧୁ, ପଣ୍ଡିତ ନୀଳକଣ୍ଠ ଦାଶ, ପଣ୍ଡିତ ଗୋଦାବରୀଶ ମିଶ୍ର, ଗୋପବନ୍ଧୁ ଚୌଧୁରୀ, ହରେକୃଷ୍ଣ ମହତାବ ପ୍ରମୁଖ ଜନନାୟକମାନଙ୍କର ସହଯାତ୍ରୀ ହୋଇ ସେ ପରବର୍ତ୍ତୀ ଯୁଗପାଇଁ ଆଲୋକସ୍ତମ୍ଭ ହୋଇଯାଇଥିଲେ।

୧୮୫୭ର ସିପାହୀ ବିଦ୍ରୋହକୁ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ ବୋଲି କୁହାଯାଏ। ୧୮୧୭ ମସିହାରେ ଓଡ଼ିଶାର ପାଇକ ବିଦ୍ରୋହ ଭଳି ଆଞ୍ଚଳିକ ଖଣ୍ଡ ଯୁଦ୍ଧଗୁଡ଼ିକ ମଧ୍ୟ ଏହି ପର୍ଯ୍ୟାୟର ଅନ୍ତର୍ଭୁକ୍ତ। ସେହିସବୁ ସଂଗ୍ରାମ ଯେ ଅତି ସାହସିକ ଓ ବିପଜ୍ଜନକ କାର୍ଯ୍ୟ ଏଥିରେ ସନ୍ଦେହ ନାହିଁ। କିନ୍ତୁ ସେହି ଯୁଦ୍ଧ ପଛରେ ବ୍ୟକ୍ତିଗତ ଅଭିଳାଷର ଭୂମିକାକୁ ଅସ୍ୱୀକାର କରିହେବ ନାହିଁ। ବାହାଦୂରଶାହ ଜାଫରଙ୍କଠାରୁ ଆରମ୍ଭକରି ରାଣୀ ଲକ୍ଷ୍ମୀବାଈ, ବକ୍ସି ଜଗବନ୍ଧୁ ପ୍ରମୁଖ ରଥୀ, ମହାରଥୀମାନଙ୍କର ରାଜ୍ୟ, କ୍ଷମତା, ଧନସଂପତ୍ତି, ପ୍ରତିଷ୍ଠା ଫେରିପାଇବାର ଅଭୀପ୍ସା ପ୍ରେରଣା ଉତ୍ସସ୍ୱରୂପ କାର୍ଯ୍ୟ କରୁଥିଲା ବୋଲି କୁହାଯାଇପାରେ। କିନ୍ତୁ ଯେଉଁ ଯୁଦ୍ଧରେ ଯଦୁମଣି ମଙ୍ଗରାଜ ଓ ତାଙ୍କ ଭଳି ଅନ୍ୟମାନେ ରଥୀ ବା ସୈନିକ ହୋଇଥିଲେ ସେଥିରେ ବ୍ୟକ୍ତିଗତ ଭାବରେ କାହାର କିଛି ପାଇବାର ନଥିଲା, ବରଂ ସବୁ ହରାଇବାର ସନ୍ଦେଶ ଥିଲା, ଧନ ସମ୍ପତ୍ତି, ସୁଖସମ୍ଭୋଗ ଏପରିକି ଜୀବନ ମଧ୍ୟ ହରାଇବାର ପରିଣାମ ଥିଲା ଏହି ସଂଗ୍ରାମର ପଛରେ। ଦଧିଚୀର ଅସ୍ଥିରେ ଦାନବ ଶକ୍ତିର ପରାଭବ ହେବ- ପୁରାଣର ଏହି ଆଦର୍ଶକୁ ରୂପ ଦେବାପାଇଁ ଏହି ମହା ସଂଗ୍ରାମର ସୂତ୍ରପାତ। ଯେଉଁମାନେ ସେହି ଯୁଦ୍ଧଯାତ୍ରା ନାୟକ ହୋଇଥିଲେ ସେମାନେ ଦେଶର ଓ ଜାତିର ନମସ୍ୟ।

ପରବର୍ତ୍ତୀ କାଳରେ, ବିଶେଷ କରି ସ୍ୱାଧୀନତା ପରେ ରାଜନୀତି ମଞ୍ଚରେ ଦ୍ୱନ୍ଦ୍ୱ ସଂଘଟିତ ହୋଇ ସ୍ୱାଧୀନତା ସଂଗ୍ରାମୀମାନଙ୍କର ଭୂମିକା ଅନେକ ସମୟରେ ବିବାଦୀୟ ହୋଇଯାଇଛି। ଏଥିରୁ ସ୍ୱର୍ଗତ ଯଦୁମଣି ମଙ୍ଗରାଜ ବାଦ୍ ଯାଇନାହାନ୍ତି। ତଥାପି ଦେଶମାତୃକା ଲାଗି ସେମାନଙ୍କର ଅବଦାନ ଏକ ଅପରିବର୍ତ୍ତନୀୟ ଏବଂ ଐତିହାସିକ ସତ୍ୟ ହୋଇ ରହିଯାଇଛି। ସେମାନେ ଏ ଦେଶର ଏ ଜାତିର ସର୍ବଦା ନମସ୍ୟ ହୋଇ ରହିବେ।

• • • •

# ଅଭୁଲା ସ୍ମୃତି

## ଶତ୍ରୁଘ୍ନ ନାଥ

ସେଦିନ ରବିବାର, କଲେଜ ଛୁଟି । ସକାଳ ଆଠଟାରୁ ଦଶଟାଯାଏ ସମୂହ ଶ୍ରମଯଜ୍ଞ । ସମାଜ ସେବାରେ ସମର୍ପିତ କାର୍ଯ୍ୟକ୍ରମ । ଉତ୍ପାଦନ ବଢ଼ିବ । ବ୍ୟକ୍ତି ଆତ୍ମନିର୍ଭରଶୀଳ ହେବ ଓ ଗୋଷ୍ଠୀ ସ୍ୱୟଂସଂପୂର୍ଣ୍ଣ ହେବ । ସମାଜପ୍ରତି ବ୍ୟକ୍ତିର ଆନୁଗତ୍ୟ ପ୍ରକାଶିବ ।

ଅନୁଗୋଳ ମୌଳିକ ଶିକ୍ଷା ଶିକ୍ଷକ ତାଲିମ ଭବନ । ୧୯୫୫-୫୬ ମସିହାର ନଭେମ୍ବର ଶେଷ ବା ଡିସେମ୍ବର ପ୍ରଥମ ସପ୍ତାହ । ଶୀତ ପଡ଼ି ଆସୁଥାଏ । ସେ ବେଳର ଅନୁଗୁଳିଆ ହାଡ଼ଭଙ୍ଗା ଶୀତପରି ଜୋର୍‌ଦାର ହୋଇନଥାଏ । ତାଲିମ୍ ଭବନରେ ଉତ୍ତରପୂର୍ବ କୋଣରେ ଅଠାଏ ଜମି, ସେଥିରେ ଛନଛନିଆ ଚିନାବାଦାମ କୋଡ଼ାଯିବ । ଚେର ଛିଡିବନାହିଁ । ମୂଥା, ଦୂବ ଉପୁଡ଼ିଯିବ । ଶିକ୍ଷାର୍ଥୀ ସମସ୍ତେ, ପିଅନ ଠାରୁ ପ୍ରିନ୍‌ସ୍‌ପାଲଯାଏ । ହାତରେ କାଙ୍କ । ଝାଳ ଗମି ଆସୁଛି । ଜଣେ ନବାଗତ ଅତିଥି ପଶିଯାଇଛନ୍ତି । ଆଣ୍ଠୁଲୁଚା ଖଦୀ ଓ ଦେହରେ ଫତେଇ । ସେ ବି କାମରେ ମଜବୁର୍ ।

ଏ ହେଉଛନ୍ତି ସେତେବେଳର ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀ । ସେ ଆମ ସମସ୍ତଙ୍କ ବାପି । କଲେଜକୁ ମୁଖ୍ୟମନ୍ତ୍ରୀଙ୍କ ଟୁର୍ ପ୍ରୋଗ୍ରାମ ଆସିନାହିଁ । ବାଜିରାଉତ ଛାତ୍ରାବାସରେ ଠିଆ ଠିଆ ବିଶ୍ରାମ । ଗଡ଼ିପଡ଼ିଛନ୍ତି କଲେଜ ପରିସରକୁ, ନାହିଁ ସାଜସଜ୍‌ଜା, ନାହିଁ ଆଗପଛ ପୋଲିସ ପହରା । ଏପରି ଜଣେ ବିରଳ ମୁଖ୍ୟମନ୍ତ୍ରୀ ଓ ଗାଳିଚିନ୍ତାର ଭକ୍ତ ।

କାମ ସରିଛି । କଲେଜ କୃଷିମନ୍ତ୍ରୀଙ୍କ ହିସାବ ନିକାଶ ଓ ମୂଲ୍ୟାୟନ । ଆମେ ଗ୍ରଲିଲୁ ମଧ୍ୟାହ୍ନ ଭୋଜନ ପାଇଁ । ଆମ ସଭିଙ୍କର ଏକ ଭାବ, ଏକ ଭାବନା, ଏକ ଚିନ୍ତା, ଏକ ଚେତନା । କେହି ବଡ ନୁହନ୍ତି କିମ୍ବା କେହି ସାନ ନୁହନ୍ତି । ସେଠି ଫିଅର ବା ଫେଭାରର ପ୍ରଶ୍ନ ନାହିଁ । ପ୍ରଟୋକୋଲ ନାହିଁ । ଅଛି ସମତା ଓ ମମତା, କଲେଜର ଏଗାର ଏକର ଜମି ମଝିରେ ଡିଭିଜନାଲ ଫରେଷ୍ଟ ଅଫିସରଙ୍କ ପୁରୁଣା ବଙ୍ଗଳା ଓ ସେଠି ଆମ ନୂଆ କଲେଜର ଦପ୍ତର । ମଝିରେ ଯିବୁ, ଆମ ସଫଳତାରେ ଛାତି ଫୁଲିବ ଓ ବିଫଳତା ପାଇଁ ବାଟ ମିଳିବ । ଶୁକୁଣୀ ଆଗରେ ଗର୍ଭଯନ୍ତ୍ରଣା ଲୁଗ୍ରଯାଏ କି ? ତିନିଟା ହେବ । ପାହାଚ ପାର ହୋଇ ଉଠିବା ମାତ୍ରେ ଆମ ଆଗରୁ ଏକାକୀ ଆସନ୍ତି ଜଣେ ବ୍ୟକ୍ତି । ଦେଖିବା ମାତ୍ରେ ଦୁହିଁଙ୍କର ନିବିଡ଼ ଆଲିଙ୍ଗନ ଯାହାର ପଟାନ୍ତର ନାହିଁ । କୌଣସି କଳା ଓ କ୍ୟାମେରା ଏହି ଆଲିଙ୍ଗନର ନିବିଡ଼ତାକୁ ଦେଖାଇ ପାରିନାହିଁ । କେହି ଜାଣିପାରିବେ ନାହିଁ ଯେ ସେ ଦୁହେଁ ରାଜନୀତିରେ ଭଗାରି, ବିପକ୍ଷର ଲୋକ । କିନ୍ତୁ ଏହା ନିଶ୍ଚିତ ଜଣାଯିବ ଯେ ସେମାନେ ଭାଇ ଥିଲେ, ଭାଇ ଅଛନ୍ତି, ଭାଇ ରହିବେ । ସହୋଦର ମଧ୍ୟରେ ଏପରି ହେବ ନାହିଁ, ଜଣେ ଅନ୍ୟକୁ କହୁଛନ୍ତି, "ତୁମେ କୁଆଡେ ?" ଅନ୍ୟ ଜଣକ କହୁଛନ୍ତି, "ତୁମେ କୁଆଡ଼େ ?" ଦୁଇଟିଯାକ ପ୍ରଶ୍ନ, ଉତ୍ତର ରହିଛି ହୃଦୟର ସ୍ପନ୍ଦନରେ ।

ଏ ଜଣକ ହେଉଛନ୍ତି ଶ୍ରୀ ଯଦୁମଣି ମଙ୍ଗରାଜ । ଦିଲ୍ଲୀରେ ଥିବା ତାଙ୍କ ପୁଅ ଶ୍ରୀ ବିଜୟ କେତନ ମଙ୍ଗରାଜ ବାପାଙ୍କୁ ଦେବାପାଇଁ ଗୋଟିଏ ପାକେଟ୍ ପଠାଇଥାନ୍ତି । ଏହାକୁ ନେଇଯିବାକୁ ଆସିଛନ୍ତି ଶ୍ରୀଯୁକ୍ତ ମଙ୍ଗରାଜ । ଅଧ୍ୟକ୍ଷ କିନ୍ତୁ ସନ୍ତପିତ । ସରକାରୀ କଲେଜକୁ ସରକାରଙ୍କ ବିରୋଧୀ ଯଦୁମଣିବାବୁ ଆସିଛନ୍ତି କିପରି ? କିନ୍ତୁ ଦୁଇବନ୍ଧୁ ଭେଟିଛନ୍ତି । ସତେ ଯେପରି ହଜିଲା ବଳଦ ଖୋଜିଲାଠାଇଁ । ଶିକ୍ଷାର୍ଥୀମାନେ

ଏହି ଅପୂର୍ବ ମିଳନରେ ଭାବବିହ୍ୱଳ । ଏପରି ହୋଇପାରେ କି ? ଅଧ୍ୟକ୍ଷ, ଅଧ୍ୟାପକ ଯେ ପ୍ରମାଦଗ୍ରସ୍ତ ।

ଯଦୁମଣିବାବୁ ଓ ନବବାବୁ ହାତ ଧରାଧରି । ଗ୍ଭଲିଛନ୍ତି ଭୋଜନ ସ୍ଥାନକୁ । ଆନନ୍ଦର ସୁଅ ଛୁଟିଛି । ଗୁରୁ ଛାତ୍ରମାନେ ଅବାକ୍ । ସେମାନଙ୍କ ମୁଣ୍ଡରେ ପଶୁନାହିଁ । ହୃଦୟ ପୂରି ଉଠୁଛି । ଯେ ରାଜନୀତିରେ ଶତ୍ରୁ, ଜଣେ ଅନ୍ୟ ଜଣଙ୍କ ବିରୋଧୀ, ସେମାନେ କଅଣ ଏପରି କୁଣ୍ଢାକୁଣ୍ଢି ଓ ଧରାଧରି । ନାହିଁ ନଥିବା ଭାବପ୍ରୀତି । ଆଜି ଏପରି ହେବକି ? ଯଦି ହୁଅନ୍ତା, ତେବେ.....

ବସିପଡ଼ିଲେ । କଲେଜର ଖାଦ୍ୟମନ୍ତ୍ରୀ ଶାନ୍ତି କହିବାରୁ ସବୁ ଚୁପ୍‌ଗ୍ଭପ୍ ପତ୍ର ପଡ଼ିଲା । ପରଷାଗଲା । "ଘେନିବା ଆଗରୁ ସଦା ମୋ ନିତ୍ୟ ଭକ୍ଷ୍ୟ....." ମନ୍ତ୍ର ବୋଲାଗଲା । ହାତ ଗ୍ଭଲିଲା । ପିଲାଙ୍କ ରନ୍ଧା, ସମୂହ ଭୋଜନ । ବାଛବିଗ୍ଭର ନାହିଁ । ଭୋଜନ ସରିବା ଉପରେ, ଅତିଥି ଶ୍ରୀ ମଙ୍ଗରାଜ ଅସମ୍ଭାଳ । ଭାତ ତିଅଣ ତାଙ୍କୁ ଅସମ୍ଭାଳ କରିନାହିଁ, ଭାବର ଭୋଜନ ତାଙ୍କୁ ବାଇ କରିଛି । ବହୁ ନୀରବତାକୁ ଚୁର୍‌ମାର କରି ହସର ଢେଉ ଛୁଟାଇ ଦେଇଛନ୍ତି । ଅସମ୍ଭବ କୋଳାହଳକୁ ସେ ସ୍ତମ୍ଭୀଭୂତ କରିନେଇଛନ୍ତି । ସହସ୍ର ସହସ୍ର ଶ୍ରୋତାଙ୍କୁ ସେ ମନ୍ତ୍ରମୁଗ୍ଧ କରିଛନ୍ତି । ଏହି ଗାରେଡିର ସେ ଗୁଣିଆ । ଆଜି କଅଣ ସେ ଡରିବେ? କାହାକୁ ଡର ? କହିଲେ, ଗପଟିଏ କହୁଛି । ଥରେ ଭଗବାନ ଶ୍ରୀରାମ ଭୋଜି କରିଥାନ୍ତି । ଦେବତାମାନେ ଭୋଜନରେ ବସିଥାନ୍ତି । ହଠାତ୍ ଶ୍ରୀରାମ ବିଷଣ୍ଣ ଦେଖାଗଲେ, ଭାଳେଣି ପଡ଼ିଗଲା, କିଏ ବା ପ୍ରଭୁଙ୍କୁ ପଗ୍ଭରେ ? ଭକ୍ତପ୍ରବର ହନୁମାନ ଆଗେଇ ଆସିଲେ । ଏ ଦାସାନୁଦାସ ପ୍ରଭୁଙ୍କ ଆଜ୍ଞା ପାଇଁ ଆସିଛି । ଆଜ୍ଞା ପାଇଲେ ସେ ସବୁ କିଛି କରିବ । ଏ ଅଧମ ଜାଣୁଛି, ଡାଲିର ଅଭାବ ପଡିଛି । ଜୟ ଶ୍ରୀରାମ, କହି ହନୁମାନ ଉପରକୁ ଡେଇଁପଡ଼ିଲେ । ବାଁ ହାତରେ ବିରାଟ ହଣ୍ଡା ଓ ଡାହାଣରେ ଅଣକ ଧରି ଜଣକ ପରେ ଜଣେ ଦେବତାଙ୍କ ଆଗରେ ଧଡ଼୍‌କରି ବସିଯାଇ କହିଲେ, "ଡା...ଲିଃ, ଡା....ଲିଃ," ଏହା ଶୁଣି ଦେବତାମାନେ ପାଟିରେ ଓ ହାତରେ ନାହିଁ କଲେ । ଶେଷରେ ଭକ୍ତଶ୍ରେଷ୍ଠ ହନୁ ପ୍ରଭୁଙ୍କ ଛାମୁରେ ହାଜର ହେଲେ ଓ ପ୍ରଣାମ କଲେ । ଏହା ଶୁଣି ବାପିଙ୍କ ସମେତ ଗୁରୁଛାତ୍ରମାନେ ପେଟଫଟା ହସରେ ଢଳିପଡିଲେ ।

ଧନ୍ୟ ଧନ୍ୟ । ବେଶ୍ କୋ-ରିଲେସନ । ସ୍ୱାଭାବିକ ଓ ସୁନ୍ଦର । ଦୁଇ ଅତିଥିଙ୍କ ଆଲିଙ୍ଗନକୁ ମନେପକାଇ କେହି କହିଲେ, କୋଟିଏ ପଦରେ ଯାହା ହୋଇପାରେ ନାହିଁ, ଗୋଟିଏ ଉଦାହରଣରେ ତାହା ହୋଇଛି । ଏବେ ବି ଲୋକ ଅନାଅନି ହେଉଛନ୍ତି । କାହାକୁହିଁ କରୁଛନ୍ତି, ରାଜନୀତିର ଏହି ସାର୍ଥକ ପୁରୁଷ ଯଦୁମଣି, ଯେ ଓଜସ୍ୱିତା ସହିତ ହାସ୍ୟରସର ଫୁଟ ନେଉଥିଲେ, ସେ କଅଣ ଏ ଭୂଇଁକୁ ବାହୁଡିବେ କି ?"

ଅଧ୍ୟାପକ
୬୮୯, ଶହୀଦ ନଗର
ଭୁବନେଶ୍ୱର-୭

• • • •

# ମହାନ୍ ସନ୍ତାନ ଯଦୁମଣି

ଆଶିଷ ମହାପାତ୍ର

ଓଡ଼ିଶାର ଅନେକ ଯେଉଁ ବରପୁତ୍ରମାନେ ବିସ୍ମୃତିର ଗର୍ଭରେ ଲୀନ ହେବାକୁ ଯାଉଛନ୍ତି, ସେମାନଙ୍କ ମଧ୍ୟରେ ବରିଷ୍ଠ ସ୍ୱାଧୀନତା ସଂଗ୍ରାମୀ, ଏକଦା ଓଡ଼ିଶା ରାଜନୀତିର ଅନ୍ୟତମ ସୂତ୍ରଧର, ବିଧାନସଭାର ପ୍ରାକ୍ତନ ଉପବାଚସ୍ପତି ବାଗ୍ମୀପ୍ରବର ସ୍ୱର୍ଗତ ଯଦୁମଣି ମଙ୍ଗରାଜ ହେଉଛନ୍ତି ଅନ୍ୟତମ। ନିଜର ବିସ୍ତୃତ ରାଜନୈତିକ ଜୀବନର କ୍ୟାନ୍‌ଭାସ୍ ଭିତରେ କେତେ ଉଠାପକା, ନେପଥ୍ୟରେ କେତେ ଛାଇ-ଆଲୁଅ ସଂଗ୍ରାମରେ କ୍ଷତ ବିକ୍ଷତ ଯଦୁମଣି ମଙ୍ଗରାଜ ଥିଲେ ବହୁ ଗୁଣରାଶିର ସମାହାରରେ ଜଣେ ବିଶିଷ୍ଟ ଓଡ଼ିଆ, ଯେ କି ଛିନ୍ନମସ୍ତା, ଛିନ୍ନ ଅବୟବ ଉତ୍କଳ ଜନନୀର ଏକୀକରଣ ପାଇଁ ଓ ତାର ଶ୍ରୀବୃଦ୍ଧି ପାଇଁ ଆପ୍ରାଣ ସଂଗ୍ରାମ ଚଳାଇଛନ୍ତି। ସେତେବେଳର କେନ୍ଦ୍ରାପଡ଼ାକୁ ଯାଇଥିବା ରାସ୍ତା ଥିଲା ଖମା ଖାଲଭରା ଓ ତେଣୁ ସେଠାକୁ ସେକାଳର "ଡିଆସିଲି ପେଡି ବସ୍ ଗଲାବେଳକୁ ଉଠାପକା ପ୍ରଚୁର ହୁଏ ଓ କଥା ଛଳରେ ଗର୍ଭବତୀ ନାରୀର ସନ୍ତାନ ଜନ୍ମ ଏହି ବସ୍‌ରେ ହୁଏ ବୋଲି ପ୍ରବାଦ ଅଛି।" ମୋ ଜୀବନ ଠିକ୍ ଏହି କେନ୍ଦ୍ରାପଡା ଉଠାପକା ରାସ୍ତା ପରି କେହି କହିଥିଲେ ବି ଲୋକହାସ୍ୟର ଛଟାରେ ଯଦୁମଣି ମଙ୍ଗରାଜ। ମୁହଁରେ , ସ୍ମିତ ହାସ୍ୟର ଛଟା ଓ ବିଡିର ନିଆଁ, କେବେ ତାଙ୍କୁ ଛାଡିନଥିଲା। ତାଙ୍କର ପ୍ରଚଣ୍ଡ ବାଗ୍ମୀତା ପାଇଁ ସେ ଥିଲେ ଅନନ୍ୟସାଧାରଣ । ସାଗର ଉର୍ମିର ଲହରି ପରି ଭାଷାର ଲହର, ଏକ ଧାତବ କଣ୍ଠରୁ ତାଙ୍କରି ଭାଷିଆସେ ଜଳଦ୍ ଗମ୍ଭୀର ଭାଷଣ। ମହାଭାରତରେ ବୀର ଭୀମସେନ ବାଉନ୍‌ଭାର ଗଦାଧରି କୁରୁକ୍ଷେତ୍ର-ରଣକ୍ଷେତ୍ରରେ ମାତିଉଠିବା ପରି ମଙ୍ଗରାଜେ ମାତିଉଠନ୍ତି ଭାଷଣର ସଂଗ୍ରାମରେ। ମାଇକ୍ ହେଲେ ହେବ, ନହେଲେ ହେବ। ସୀମା ଆନ୍ଦୋଳନରେ ଓଡିଶାର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତଯାଏ ସେ ଶୁଣାଇଥିଲେ ଓଡ଼ିଶା ମାତାକୁ ତାର ଅବୟବ ଅଞ୍ଚଳର ଏକ କରିବାର ସଂକଳ୍ପ ଘୋଷଣା। କେତେ ଦୃପ୍ତ ଥିଲା ତାଙ୍କର ସେ ଆହ୍ୱାନ !

ଏହି ଶତାବ୍ଦୀର ଅର୍ଦ୍ଧ-ତୃତୀୟ ଦଶକରୁ ଜାତୀୟ ସ୍ୱାଧୀନତା ସଂଗ୍ରାମ ଓ ଦେଶମିଶ୍ରଣ ଆନ୍ଦୋଳନରେ ଯୋଗଦେଇ ସ୍ୱର୍ଗତ ଯଦୁମଣି ପ୍ରତ୍ୟେକଟିରେ ନିଜର ଅମୂଲ୍ୟ ପଦାଙ୍କ ରଖିଯାଇଛନ୍ତି। ମହାନ୍ କବି ଗୋଦାବରୀଶ ମିଶ୍ରଙ୍କ ସାଙ୍ଗରେ ସିଂହଭୂମି ଓ ମେଦିନାପୁର ପ୍ରଭୃତି ଉପାନ୍ତ ଅଞ୍ଚଳକୁ ଯାଇ ସେ ଅର୍ଦ୍ଧନିଦ୍ରିତ ଓଡିଆ ଭାଇ ଭଉଣୀମାନଙ୍କୁ ଜଗାଇଛନ୍ତି। ଶେଷକୁ କେନ୍ଦ୍ର ରାଜନୀତିର ଗୃପରେ କିଛି ହୋଇନପାରିଥିବାବେଳେ ସେ ଭଗ୍ନ ମନୋରଥ ହୋଇ ଫେରି ଆସିଛନ୍ତି । ମାତ୍ର ପୁଣି ଆଶାର ଆଲୋକବର୍ତ୍ତିକା ଜଳିଉଠିଛି ତାଙ୍କର ମନ ଓ ପ୍ରାଣରେ। ୧୯୫୬ ରେ ହୋଇଥିବା ଐତିହାସିକ ସୀମା ଆନ୍ଦୋଳନରେ ତାଙ୍କର ରକ୍ତକୁ ଟକ୍‌ମକ୍ କରି ଫୁଟାଉଥିବା ଓଜସ୍ୱିନୀ ଭାଷଣର କିଛି ସେତେବେଳର ସମ୍ବାଦପତ୍ରରେ ବାହାରିଥିବ, ତାକୁ ଦେଖିଲେ ମଙ୍ଗରାଜଙ୍କ ଭାଷଣର ବିଶେଷତ୍ୱ ଜଣାପଡିବ। କେନ୍ଦ୍ରାପଡାରୁ ବାରମ୍ବାର ନିର୍ବାଚନ ଯୁଦ୍ଧରେ ପରାଜୟ ତାଙ୍କର ମନୋବଳକୁ ହଟାଇପାରି ନଥିଲା। ଦୀନବନ୍ଧୁ ସାହୁଙ୍କ ସହିତ ସଂଗ୍ରାମରେ ବ୍ୟକ୍ତିଗତ କିଛି ନଥିଲା ତାଙ୍କର।

ବ୍ରିଟିଶ୍ ଶାସନରେ ଓଡ଼ିଶାରେ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ପ୍ରଧାନମନ୍ତ୍ରିତ୍ୱରେ ପଣ୍ଡିତ ଗୋଦାବରୀଶଙ୍କ ମନ୍ତ୍ରିତ୍ୱ ଗ୍ରହଣ ଏବଂ ସେଥିରେ ଆଜୀବନ ସ୍ୱାଧୀନତା ସଂଗ୍ରାମୀ ଯଦୁମଣି

ମଙ୍ଗରାଜଙ୍କ ପାର୍ଲାମେଣ୍ଟାରୀ ସେକ୍ରେଟାରୀ ଭାବେ ଯୋଗଦାନର ମହତ୍ତ୍ୱପୂର୍ଣ୍ଣ ପର୍ଯ୍ୟାୟ ସମ୍ବନ୍ଧରେ ଏ ପର୍ଯ୍ୟନ୍ତ ଯଥାର୍ଥ ମୂଲ୍ୟାୟନ ହୋଇପାରିନି କେବଳ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠା ଏହି ଗୋଟିଏ ବିଷୟକୁ ନେଇ ପ୍ରଶଂସା ହେଉଛି । ପାରଳା ନୃପତିଙ୍କୁ ଅନ୍ତରାଳରେ ରଖି ଗୋଦାବରୀଶ ଯଦୁମଣି ଓ ବାହାରେ ପଣ୍ଡିତ ନୀଳକଣ୍ଠ ମହାଯୁଦ୍ଧର ସେହି ଘନଘଟାମୟ ମୁହୂର୍ତ୍ତରେ ଓଡ଼ିଶା ଭଳି ଏକ ସମୁଦ୍ରକୂଳିଆ ପ୍ରାନ୍ତକୁ ନେତାଜୀ ସୁଭାଷଚନ୍ଦ୍ରଙ୍କ ଜାତୀୟ ସେନାନୀ–ଆଜାଦ୍ ହିନ୍ଦ୍ ଫୌଜ ପାଇଁ ତିଆର୍ କରି ରଖିଥିଲେ ବୋଲି ଅନେକ ଖବର ପ୍ରକାଶ ପାଉଛି । ସେଥିର ଅନ୍ୟ ଯୋଗସୂତ୍ରଙ୍କର ନାମ ମଧ୍ୟ ପ୍ରକାଶ ପାଉଛି । ଯଦୁମଣି କାହିଁକି କିପରି ଏ ସରକାର ସହିତ ସାମିଲ ହୋଇଥିଲେ, ତାର ଗଭୀର ରହସ୍ୟର ଗ୍ରନ୍ଥିମୋଚନ ହୁଏତ ହୋଇପାରନ୍ତା, ଯଦି ସେ ଘନଘୋର କାଳର ଇତିହାସର ଅନ୍ତରହସ୍ୟ ପ୍ରକାଶିତ ହୁଅନ୍ତା । ମାତ୍ର ତାହା ହୋଇପାରିନାହିଁ । ତତ୍କାଳୀନ କଂଗ୍ରେସ ଭିତରେ ଗୁଟ୍‌ବାଦିରେ ଏକ ସରଳ, ଅମାୟିକ ଓ ନିରୋଳା ମଣିଷ ଯଦୁମଣି ହୁଏତ ଅଣନିଶ୍ୱାସୀ ହୋଇପଡିଥିଲେ । ମାତ୍ର ତା ଭିତରେ ତାଙ୍କର ଜନଜାଗରଣ ପର୍ବଭାଷଣ ମାଧ୍ୟମରେ ଜାତିକୁ ଜଗାଇବାର ପ୍ରଚେଷ୍ଟା କିଛି ଊଣା ହୋଇନଥିଲା । ଓଡ଼ିଶାର ଗୌରବ, ଐତିହ୍ୟ ଓ ପରଂପରାର ଉଦ୍‌ବୋଧନୀ ଥିଲା ସେ ଭାଷଣ । କଟକର ଟାଉନ୍‌ହଲ, ଶ୍ରୀରାମଚନ୍ଦ୍ର ଭବନ ଓ ଗୌରୀଶଙ୍କର ପାର୍କ, ଓ ପୁରୀର ସିଂହଦ୍ୱାର ସେସବୁ ସ୍ମରଣୀୟ ଅସ୍ମରଣୀୟ ବହୁ କାହାଣୀର ମୂକସାକ୍ଷୀ ୧୯୫୬ ର ସୀମା ଆନ୍ଦୋଳନରେ ବିପ୍ଳବୀ ସାମ୍ୟବାଦୀ କବି ମନମୋହନ ମିଶ୍ରଙ୍କ ସହିତ ସେ ଥିଲେ ଏକ ମନର ସବୁଠାରୁ ଶକ୍ତିଶାଳୀ ବକ୍ତା । ସେ ଊନବିଂଶ ଶତାବ୍ଦୀ ଓ ଆଦ୍ୟ ବିଂଶ ଶତାବ୍ଦୀର ବିଶିଷ୍ଟ ପ୍ରାଚୀନ ବକ୍ତା ବିପିନ ଚନ୍ଦ୍ର ପାଲ, ବିଲାତର ଲୟେଡ୍ ଜର୍ଜ ବା ଚର୍ଚ୍ଚିଲଙ୍କ ଭାଷଣର ଶୈଳୀକୁ ବୋଧେ ଆୟତ୍ତ କରିଥିଲେ । ବିଭିନ୍ନ ଜନସଭା ଓ ଉତ୍କଳ ସମ୍ମିଳନୀ ମଣ୍ଡପରେ ସେ ଭାଷଣ ମୁଁ ଶୁଣିଛି ।

ବାରମ୍ବାର ନିର୍ବାଚନରେ ପରାସ୍ତ ହେବା ପରେ ୧୯୫୭ରେ ମଙ୍ଗରାଜେ ଯେତେବେଳେ ବଡଚଣାରୁ କଂଗ୍ରେସ ପ୍ରାର୍ଥୀରୂପେ ନିର୍ବାଚିତ ହୋଇ ଓଡ଼ିଶା ବିଧାନସଭାର ଉପବାଚସ୍ପତି ହେଲେ (ପଣ୍ଡିତ ନୀଳକଣ୍ଠ ଥିଲେ ବାଚସ୍ପତି) ସେତେବେଳେ ତାଙ୍କ ମନରେ ସୃଷ୍ଟି ହୋଇଥିବା ଗଭୀର କ୍ଷେଦ ଓ ଗ୍ଲାନି, ଯେ ତାଙ୍କର ନିକଟ ସଂପର୍କରେ ଆସିଛି ସେ ଜାଣିପାରିଥିବ । ଏତେ ଆଶାବାଦୀ ମଣିଷ ଶ୍ରୀଯୁକ୍ତ ମଙ୍ଗରାଜ, ଶେଷକୁ ଗଭୀର ନିରାଶା ଓ ଅପ୍ରତ୍ୟୟରେ ବୁଡିରହିଥିଲେ । ନିଜ ବିଷୟରେ ନୁହେଁ, ଏ ଜାତି, ଦେଶ ଓ ବିଶେଷତଃ ଓଡ଼ିଶା ବିଷୟରେ ଆସିଥିଲା ତାଙ୍କର ଏ ଭାବ । ଥରେ ଏକ ଶୋକସଭାରେ ମୋର ଉପସ୍ଥିତିରେ ସେ କହିଥିଲେ ଯେ ଏ ଜାତି "ପୂଜ୍ୟର ପୂଜା କରିବା ଭୁଲିଯାଇଛି । ସେଠୁ ଏକ ସତ ଗପ କହିଲେ ସେ । ସେ ଉପବାଚସ୍ପତି ଥିବାବେଳେ ନିମାପଡ଼ା କମ୍ୟୁନିଷ୍ଟ ବିଧାୟକ ଓ ବରିଷ୍ଠ କୃଷୀନେତା ମୋହନ ଦାସଙ୍କ ଘରେ ଆତିଥ୍ୟ ସ୍ୱୀକାର କରିଥିଲେ । ଆଇଲାବେଳେ ମଙ୍ଗରାଜେ ଲଙ୍କାମାରିଚ ଖୋଜିଲେ । ମୋହନ ଦାସ ଲଙ୍କା ମୋଟେ ଖାଆନ୍ତିନି ତେବେ ତାଙ୍କ ପୁଅକୁ ମୋହନବାବୁ କହିଲେ, ବାପାରେ, ବାରିପଟେ ଯେଉଁଠି ଇଟା ଗଦା ହୋଇଛି, ସେଠି ଗୋଟେ ଲଙ୍କାମାରିଚ ଗଛରୁ ଗୋଟେ ଯୋଡେ ଲଙ୍କା ଆଣ । ରହସ୍ୟପ୍ରିୟ ଯଦୁମଣିବାବୁ କହିଲେ, "ମୋହନବାବୁ କ'ଣ ଘରଦ୍ୱାର ତିଆରି କରିବେ କି ?" ମୋହନବାବୁ କହିଲେ ନାହିଁରେ ! ଏ ଦେଶରେ ତ କେହି ଜାତିର ମହତ୍ ଲୋକର ସ୍ମୃତି ରଖୁନି । ମୋ ଭଳି କମ୍ୟୁନିଷ୍ଟର କିଏ ବା ସ୍ମୃତି ରଖିବ ? ତେଣୁ ଭାବୁଚି ମଲାପୂର୍ବରୁ ମୋ ନିଜ ପାଇଁ ଏକ ଛୋଟ ସମାଧି ମନ୍ଦିର ଗଢିଯିବି ମୃତ୍ୟୁର ବହୁ ପୂର୍ବରୁ । ସତରେ ମୋହନବାବୁ ଏପରି କହିଥିଲେ କି ନାହିଁ, କି ହାସ୍ୟରେ କହିଥିଲେ, କେହି ବୁଝିନି । ମାତ୍ର ମଙ୍ଗରାଜେ କ'ଣ କହିଲେ ଜାଣନ୍ତି ? କହିଲେ, ମୁଁ ମୋ ପାଇଁ ଏକ ଛୋଟ ସମାଧି ମନ୍ଦିର ନିଜେ ତିଆରି କରିବି ଓ ତାର ନିମ୍ନଦେଶରେ ଏକ କୋରଡ ବା ଭୂମିତଳ ଆସ୍ଥାନ ରଖିବି । ଯେତେବେଳେ ଶେଷ ସମୟ ଆସିଯିବ, ମୁଁ ସେଠାକୁ ଯାଇ ଦୁଆରଟି କିଳିଦେଇ ସମାଧି ନେଇଯିବି । ପରିହାସ, ମାତ୍ର କେତେ କ୍ରୂର ପରିହାସ, ଆମ ଜାତି ପାଇଁ ! ଏବେ ଏ ଜାତି ଏଥିରୁ ଶିଖିବ କି ?

ଆମେ ଯେଉଁମାନେ ଶେଷ ଜୀବନରେ ଯଦୁମଣି ମଙ୍ଗରାଜଙ୍କ ସାନ୍ନିଧ୍ୟରେ ଆସିଥିଲୁ, ଶୁଣିଛୁ ତାଙ୍କର ବିଭିନ୍ନ ପ୍ରଶ୍ନ ଉପରେ ତୀବ୍ର ପରିହାସ ଓ ହସର ଲହରୀ । ମୃତ୍ୟୁ ପୂର୍ବରୁ ଦୁରାରୋଗ୍ୟ ବ୍ୟାଧିରେ ପୀଡ଼ିତ ଦେଶଭକ୍ତ କଟକ ବଡଡାକ୍ତରଖାନା ନର୍ସିଂହୋମ୍‌ରେ ଥାଆନ୍ତି। ଅପେକ୍ଷାକୃତ ସୁସ୍ଥ ଥିବା ଅବସ୍ଥାରେ ସକାଳୁ ଲୁଙ୍ଗି ଉପରେ ପଞ୍ଜାବି, ଜହରକୋଟ ପିନ୍ଧି ସେ ଆଖପାଖ ବେହେରା କ୍ୟାବିନ୍ ପାଖେ ଏପଟ ସେପଟ ବୁଲନ୍ତି। ମୁଁ ଦିନେ ଦିନେ ଯାଏ। ବିଡ଼ି ଖାଇବାକୁ ମନ। ଛୋଟପିଲାଙ୍କ ଭଳି ବିଡ଼ି ମାଗନ୍ତି। ଆମେ ବାରଣ କରୁ। ଚୁପ୍‌ହୋଇ ଅଧୋମୁଖରେ ବସନ୍ତି। ଦିନେ କହିଲେ "ଆମର ସେ ବାସନ୍ତୀ-ଚୈତର ଦିନ ସରିଯାଇଛି। ପତ୍ରଝଡା ଦେଇଛି ମୋ ଜୀବନ ବୃକ୍ଷ। ପୁଣି କହନ୍ତି "ମୁଁ କ'ଣ ସେ ଝଡା ଶୁଖିଲା ପତ୍ରଟିଏ କିରେ ?" କିଏ କହିଲା ଯେ ଆପଣ "ସୁଗନ୍ଧରାଜ"। ମଙ୍ଗରାଜେ କହିଲେ "ତୁ ଗୋଟେ ଖୋସାମତିଆ ! ତା'ପରେ କହିଲେ, ନାହିଁରେ ମୋ'ଠି କ'ଣ ଅଛି ଯେ ମୋତେ କେହି ଖୋସାମତ କରିବ। ତୁ ମୋ ମନକୁ ବଦଳାଇବା ପାଇଁ କରିଚୁ-- ମୋ କଥା ଧରିବୁନି। ତାଙ୍କର ଦେହ ଆଉ ବୋଲ ମାନୁ ନଥିଲା।

ମୁଁ ଅନେକଥର ଏହି ବାଗ୍ମୀବରଙ୍କ ସହ ପ୍ରବଳ ତର୍କରେ ମାତିଛି। ସେ ଥିଲେ ଭୂସଂସ୍କାରର ବିରୋଧୀ। ଆମେ କହୁଥିଲୁ "ଆପଣ ଗୃଷୀକୂଳରେ ଜନ୍ମ ହୋଇ କୁହାକ୍ ଲବିର ଲୋକ ଗୃଷୀ ସ୍ୱାର୍ଥର ପରିପନ୍ଥୀ । ସେ କହିଲେ ନାହିଁରେ "ଆଇନର ଏ ଜଟିଳତା ମୁଁ ବୁଝିପାରୁନି। ଯେ ଚଷିବ ସେ ଖାଉ। ମୋହନ ଦାସ ମୋତେ ତୁମର ଆଭିମୁଖ୍ୟ ବୁଝେଇଦେଇଛି। ଜୀବନର ଶେଷକାଳରେ ସେ ବୁଝିପାରିଥିଲେ ଯେ ସେ ସାରା ଜୀବନ ପ୍ରବଞ୍ଚିତ ଓ ଅନ୍ୟଦ୍ୱାରା ବ୍ୟବହୃତ ହୋଇ ଶେଷକୁ ଅସାର ହୋଇପଡିଛନ୍ତି ବୋଲି। ମାତ୍ର ଯଦୁମଣି ମଙ୍ଗରାଜଙ୍କର ମହାନ୍ ନାମକୁ ନୂତନ ଓଡ଼ିଶାର ଇତିହାସରୁ, ସ୍ୱାଧୀନତା ସଂଗ୍ରାମ ଓ ଦେଶ ମିଶ୍ରଣର ଆନ୍ଦୋଳନର ଦୃଷ୍ଟିରୁ କେହି ଉଠାଇ ଦେଇପାରିବ ନାହିଁ, ତାଙ୍କର ବାଗ୍ମୀତା, ଦେଶପ୍ରେମ, ହାସ୍ୟ-ପରିହାସ, ଆମ ପାଇଁ ଭାଇଗିରା, ଦରଦ ଓ ସ୍ନେହ ତାଙ୍କ ସଂସ୍ପର୍ଶରେ ଆସିଥିବା ପ୍ରତ୍ୟେକ ମଣିଷର ସ୍ମୃତିକୋଣରେ ରହିବ ଚିରଦିନ ପାଇଁ, ତାର ଶେଷ ନିଶ୍ୱାସ ପର୍ଯ୍ୟନ୍ତ।

ଡି ୧୧/୧, ୟୁନିଟ୍-୯ ଫ୍ଲାଟ୍
ଭୁବନେଶ୍ୱର-୨

• • •

# ଯଦୁମଣି ବାବୁ– କୋଟିକରେ ସେ ଗୋଟିଏ

ବାଙ୍କ ବିହାରୀ ଦାସ

ଯଦୁମଣି ମଂଗରାଜ ବଞ୍ଚିଥିଲେ ଶହେ ବର୍ଷରେ ପହଞ୍ଚନ୍ତେଣି। କାଳସ୍ରୋତରେ ବହୁତ ଲୋକ ଆସୁଛନ୍ତି, ଯାଉଛନ୍ତି; କିଂତୁ କେତେକ ଯୁଗଜନ୍ମା ଲୋକ ଜନ୍ମହୋଇ ଯେଉଁ ଲୀଳା ଖେଳିଯାଇଥାନ୍ତି, ତାହା ଭୁଲିବା ସହଜ ହୁଏନାହିଁ। ସମୟର ବେଳାଭୂମିରେ ସେମାନେ ତାଙ୍କର ପାଦଚିହ୍ନ ଛାଡ଼ିଦେଇ ଯାଇଥାନ୍ତି ଉତ୍ତରବଂଶ ପାଇଁ। ଓଡ଼ିଶା ଭୂଇଁରେ ଜନ୍ମ ହୋଇଥିବା ସେହିପରି ଅଳ୍ପ କେତେଜଣଙ୍କ ମଧ୍ୟରେ ଥିଲେ ସ୍ୱର୍ଗତ ଯଦୁମଣି ମଂଗରାଜ।

ତାଙ୍କ କଥା ଲେଖିବାକୁ କଲମ ଧରିବା ବେଳକୁ ଜୀବନର ସ୍ମୃତିରାଜ୍ୟରେ ଏତେକଥା ଭାସିଯାଉଛି ଯେ ସେସବୁକୁ କଲମ ମୁନରେ ବାନ୍ଧିରଖିବା ସହଜ କଥା ନୁହେଁ। ସମୟର ଚଳଚ୍ଚିତ୍ର ପରଦାରେ ଗଡ଼ିଗଡ଼ିକା ଗ୍ଳିଯାଉଛି ସେସବୁ ଘଟଣା।

ଆମେ ଯେତେବେଳେ ଗାଁ ସ୍କୁଲରେ ପଢୁଥାଉଁ, ସେତେବେଳେ ଯୁବକମାନଙ୍କ ଆଗରେ ଦୁଇଜଣ ଦେଶପ୍ରେମୀ ଓ ଯୁବନେତାଙ୍କ କଥା ସବୁବେଳେ ଶୁଣୁଥାଉଁ। ଜଣେ ଯଦୁମଣି ମଂଗରାଜ ଓ ଆଉ ଜଣେ ରାଜକୃଷ୍ଣ ବୋଷ। ଏମାନେ ବକ୍ତୃତା ଦେଇ ଲୋକଙ୍କୁ ମନ୍ତ୍ରମୁଗ୍ଧ କରୁଥିଲେ ଏବଂ ଯୁବରକ୍ତକୁ ତତାଇ ଦେଉଥିଲେ ବ୍ରିଟିଶ ସରକାର ବିରୁଦ୍ଧରେ। କିନ୍ତୁ ମଙ୍ଗରାଜଙ୍କ ବକ୍ତୃତା ଅନନ୍ୟସାଧାରଣ। ଯେତିକି ତତାଉଥିଲେ, ସେତିକି ହସାଇ ହସାଇ ଶ୍ରୋତାମାନଙ୍କୁ ମୁଗ୍ଧ କରୁଥିଲେ। ମଙ୍ଗରାଜ ଆସୁଛନ୍ତି, କଂଗ୍ରେସ କଥା କହିବେ, ଖବର ମିଳିଗଲେ, ତାଙ୍କ ସଭାରେ ଲୋକଭିଡ଼ ଜମିଯାଏ। ଲୋକଙ୍କୁ ହସାଇବା ଏବଂ ବିରୋଧୀମାନଙ୍କୁ ତାଚ୍ଛଲ୍ୟ କରି କହିବାର ପଟୁତା ଅନନ୍ୟସାଧାରଣ। କିଂତୁ ବ୍ୟଙ୍ଗକରି କହିଲେ ହେଁ, ତାରି ଭିତରେ କୌଣସି ରକମର ଘୃଣାଭାବ ନଥିଲା। ସେଥିପାଇଁ ସେ ସମସ୍ତଙ୍କ ମଧ୍ୟରେ ପ୍ରିୟପାତ୍ର ଥିଲେ।

ସବୁଠାରୁ ବଡ଼ କଥା ଥିଲା, ସେ ବୟସ୍କ ଲୋକଙ୍କ ପ୍ରତି ଯେପରି ସୌହାର୍ଦ୍ଦ୍ୟପୂର୍ଣ୍ଣ ବ୍ୟବହାର ଦେଖାଉଥିଲେ, ସେହିପରି କନିଷ୍ଠମାନଙ୍କ ପ୍ରତି ମଧ୍ୟ ସମାନ ବ୍ୟବହାର ଦେଖାଉଥିଲେ। ବୟସର ତାରତମ୍ୟ ଟିକିଏ ହେଲେ ତାଙ୍କର ଅମାୟିକ ବ୍ୟବହାରକୁ ଦୂଷିତ କରିପାରୁ ନଥିଲେ। ଏପରି ଗୁଣ ଖୁବ୍ କମ୍ ଲୋକଙ୍କ ଭିତରେ ଦେଖାଯାଏ। ଏହାହିଁ ତାଙ୍କର ମଣିଷ ପଣିଆର ବିଶିଷ୍ଟତା।

ଆଉ ଗୋଟିଏ ବଡ଼ ଗୁଣ ଥିଲା ଯେ ଦେଶପ୍ରତି ଯେତିକି ଦେଶପ୍ରୀତି ଥିଲା, ଓଡ଼ିଶା ରାଜ୍ୟ, ଓଡ଼ିଆଙ୍କ ସ୍ୱାର୍ଥ ପ୍ରତି ସେତିକି ଅନୁରକ୍ତି ଥିଲା। ଜାତୀୟତା ଏବଂ ପ୍ରାଦେଶିକତା, ଏ ମିଥ୍ୟାରେ କୌଣସି ପ୍ରକାର ସମନ୍ୱୟର ଅଭାବ, ତାଙ୍କ ଜୀବନରେ ପ୍ରତିଫଳିତ ହୋଇନାହିଁ। ଉତ୍କଟ ଜାତୀୟଭାବ ଓ ଉତ୍କଟ ପ୍ରଦେଶ ପ୍ରୀତି ଏକସଂଗରେ ତାଙ୍କ ଜୀବନର ଆଦର୍ଶ ଥିଲା। ପ୍ରଥମ ମହାଯୁଦ୍ଧର ପରବର୍ତ୍ତୀ କାଳରେ ଓଡ଼ିଶା ପ୍ରଦେଶକୁ ସ୍ୱତନ୍ତ୍ର କରିବା, ଓଡ଼ିଆ ସଂସ୍କୃତିକୁ ପରିପୁଷ୍ଟ କରିବାପାଇଁ ଯେଉଁ କେତେଜଣ ଅକ୍ଳାନ୍ତ ଉଦ୍ୟମ କରିଥିଲେ, ତାଙ୍କ ମଧ୍ୟରେ ସ୍ୱର୍ଗତ ମଙ୍ଗରାଜ ମଧ୍ୟ ଜଣେ।

୧୯୩୬ ମସିହାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା। ପ୍ରଥମ କଂଗ୍ରେସ ମନ୍ତ୍ରିମଣ୍ଡଳ ସ୍ୱର୍ଗତ ବିଶ୍ୱନାଥ ଦାଶଙ୍କ ପ୍ରଧାନମନ୍ତ୍ରୀତ୍ୱରେ ଗଠିତ ହେଲା। ସେଥିରେ ସେ ପାର୍ଲାମେଣ୍ଟାରୀ ସେକ୍ରେଟେରୀ ହେଲେ। ସେତେବେଳେ ମନ୍ତ୍ରୀଙ୍କ ତଳକୁ ରାଷ୍ଟ୍ରମନ୍ତ୍ରୀ ବା ଉପମନ୍ତ୍ରୀ ପଦବୀ ନଥିଲା। ସେତେବେଳକାର

ତିନିଜଣିଆ ମନ୍ତ୍ରିମଣ୍ଡଳରେ ଯେଉଁ ଦୁଇ ଜଣଙ୍କୁ ପାର୍ଲାମେଣ୍ଟାରୀ ସେକ୍ରେଟେରୀ କରାଯାଇଥିଲା, ଯୁବକ ଯଦୁମଣି ତନ୍ମଧ୍ୟରୁ ଜଣେ ।

ନୂତନ କରି ଓଡ଼ିଶାର ଷାଠିଏ ଜଣ ସଦସ୍ୟ ବିଶିଷ୍ଟ ବିଧାନ ସଭାର ସଦସ୍ୟ ଓ ପାର୍ଲାମେଣ୍ଟାରୀ ସେକ୍ରେଟେରୀ ଥାଇ ତାଙ୍କର ନିଷ୍ଠା ଓ କାର୍ଯ୍ୟଦ୍ୱାରା ସେ ଓଡ଼ିଶାବାସୀଙ୍କ ପ୍ରୀତିଭାଜନ ହୋଇଥିଲେ । ଓଡ଼ିଶା ବିଧାନସଭାର ବୈଠକ କଟକ ରେଭେନ୍ସା କଲେଜ ହଲରେ ହେଉଥାଏ । ୧୯୩୯ ସାଲରେ ମୁଁ କଲେଜରେ ନାମ ଲେଖାଇବା ପରେ ବରାବର କଲେଜ ହଲ୍‌ରେ ବିଧାନସଭାର ବୈଠକ ଦେଖିବାକୁ ଓ ବିଭିନ୍ନ ସଦସ୍ୟଙ୍କ ଭାଷଣ ଶୁଣିବାକୁ ଯାଏଁ । ଛାତ୍ରମାନଙ୍କର ସେ ଆକର୍ଷଣର ପାତ୍ର ଥାଆନ୍ତି । ତାଙ୍କର ବ୍ୟଙ୍ଗାତ୍ମକ, ଅଥଚ ଜ୍ୱାଳାମୟୀ ବକ୍ତୃତା ହିଁ ଆମକୁ ଖୁବ୍ ଆକର୍ଷଣ କରୁଥାଏ ।

ସେହି ସମୟରେ ଓଡ଼ିଶା ରାଜନୀତିରେ, ବିଶେଷତଃ କଂଗ୍ରେସ ରାଜନୀତିରେ ଦ୍ୱନ୍ଦ୍ୱ ଆରମ୍ଭ ହେଲା । କଂଗ୍ରେସରୁ ଅଲଗା ହୋଇ ସୁଭାଷ ବୋଷଙ୍କ ନେତୃତ୍ୱରେ ଫରୱାର୍ଡ ବ୍ଲକ୍ ଗଠିତ ହେଲା । ଓଡ଼ିଶାରେ ଏହାର ନେତୃତ୍ୱ ନେଇଥିଲେ ନୀଳକଣ୍ଠ ଦାଶ ଓ ଯଦୁମଣି ମଂଗରାଜ । ସେମାନଙ୍କ ନିମନ୍ତ୍ରଣରେ ସୁଭାଷ ବୋଷ କଟକ ଆସିଥିଲେ । ମ୍ୟୁନିସିପାଲିଟି ପଡ଼ିଆରେ ବିରାଟ ସମ୍ମିଳନୀ ଓ ସାଧାରଣସଭା ହୋଇଥିଲା । କଟକର ଜାତୀୟବାଦୀ ଯୁବ ଓ ଛାତ୍ର ସଂପ୍ରଦାୟ ଏଥିରେ ଅଗ୍ରଣୀ ଭୂମିକା ନେଇଥିଲେ । ସେହି ଅବସରରେ କଟକ ସହରରେ ଯେଉଁ ବିରାଟ ଶୋଭାମୟ ଶୋଭାଯାତ୍ରା ହୋଇଥିଲା, ସେଥିରେ ସୁଭାଷ ବୋଷଙ୍କୁ ଏକ ସୁଶୋଭିତ ହାତୀରେ ବସାଇ କଟକ ସହରର ମୁଖ୍ୟ ରାସ୍ତାରେ ବୁଲାଇଥିଲେ । ଏହାର ନେତୃତ୍ୱ ନେଇଥିଲେ ନୀଳକଣ୍ଠବାବୁଙ୍କ ସହିତ ଯଦୁମଣି ମଂଗରାଜ । କଂଗ୍ରେସ ଦଳରେ ସେତେବେଳେ ଯେଉଁମାନେ କଂଗ୍ରେସ୍ ନେତୃତ୍ୱ ବିରୁଦ୍ଧରେ ବିଦ୍ରୋହ କରିଥିଲେ, ତନ୍ମଧ୍ୟରେ ଓଡ଼ିଶାରେ ମଂଗରାଜ ଥିଲେ ଅଗ୍ରଗଣ୍ୟ ।

୧୯୫୪-୫୫ ସାଲରେ ରାଜ୍ୟ ପୁନର୍ଗଠନ କମିଶନ ରିପୋର୍ଟ ଦେଲେ । ଓଡ଼ିଶା ସରକାରଙ୍କ ସମେତ ଓଡ଼ିଶାବାସୀ ସେହି କମିଶନ ଆଗରେ ସାକ୍ଷ୍ୟ ଦେଇଥିଲେ ଯେ ଷଢ଼େଇକଳା ଓ ଖରସୁଆଁ ସମେତ ଅନ୍ୟାନ୍ୟ ବିଚ୍ଛିନ୍ନାଞ୍ଚଳ ଓଡ଼ିଶାରେ ଅନ୍ତର୍ଭୁକ୍ତ କରାଯାଉ । ଏହି ଦାବିକୁ ରାଜ୍ୟ ପୁନର୍ଗଠନ କମିଶନ ଅଗ୍ରାହ୍ୟ କରିଦେଲେ । ଫଳରେ ଓଡ଼ିଶାସାରା ଜନ ଅସନ୍ତୋଷ ବ୍ୟାପିଗଲା । ରେଳଚଳାଚଳ ବାଧାପ୍ରାପ୍ତ ହେଲା ଓ ସ୍କୁଲ କଲେଜରେ ଧର୍ମଘଟ ହେବା ସହିତ ଦୋକାନବଜାର ବନ୍ଦହେଲା । ଗୁଳିକାଣ୍ଡରେ ବେଙ୍କପାଣିର ମୃତ୍ୟୁହେଲା । ଦିନକୁଦିନ ଏହି ଜନ ଆନ୍ଦୋଳନ ତୀବ୍ରତର ହେଲା । ମଂଗରାଜ ଏହି ଆନ୍ଦୋଳନର ଅଗ୍ରଭାଗରେ ମଧ୍ୟ ଥିଲେ । ମୋର ମନେଅଛି କଲିକତାର ପ୍ରବାସୀ ଓଡ଼ିଆମାନେ ସେହି ସମୟରେ ଏକ ବିରାଟ ସମ୍ମିଳନୀ କରିଥିଲେ, ଠିକ୍ ୧୯୫୬ ସାଲ ନିର୍ବାଚନ ପୂର୍ବରୁ । ସେହି ସମ୍ମିଳନୀକୁ ଅତିଥି ହୋଇ ଯଦୁମଣିବାବୁଙ୍କୁ ପଠା ହୋଇଥିଲା । ଯେଉଁମାନେ ଏ ଆନ୍ଦୋଳନ କରାଉଥିଲେ ସେମାନେ ସ୍ଥିର କରିଥିଲେ ଯେ କେନ୍ଦ୍ରସରକାରଙ୍କର ଏହି ଗୁରୁତର ଅନ୍ୟାୟ ବିରୁଦ୍ଧରେ କଂଗ୍ରେସ ଦଳକୁ ଓଡ଼ିଶାରେ ପରାଜିତ କରିବାକୁ ହେବ । ଆନ୍ଦୋଳନର ଆଦ୍ୟଭାଗରେ ଓଡ଼ିଶାର କଂଗ୍ରେସ ଲୋକଙ୍କର ପୂର୍ଣ୍ଣ ସମର୍ଥନ ଥିଲା, କିନ୍ତୁ ପରେ ସେମାନେ ଆଉ ସକ୍ରିୟ ନଥିଲେ ।

କଲିକତାର ଏହି ବିରାଟ ସମ୍ମିଳନୀରେ ମଂଗରାଜ ବଜ୍ରଗମ୍ଭୀର ସ୍ୱରରେ କଂଗ୍ରେସକୁ ପରାଜିତ କରିବାକୁ ପ୍ରବାସୀ ଓଡ଼ିଆ ଲୋକଙ୍କୁ ଆହ୍ୱାନ ଦେଲେ ଯେ ଓଡ଼ିଶାର ସ୍ୱାର୍ଥରକ୍ଷା ପାଇଁ ଓଡ଼ିଶାରେ କଂଗ୍ରେସକୁ ପରାଜିତ କରିବାକୁ ପ୍ରବାସୀ ଓଡ଼ିଆମାନେ ନିଜ ଅଂଚଳକୁ ଯାଇ କେନ୍ଦ୍ରର କଂଗ୍ରେସ ସରକାର ବିରୁଦ୍ଧରେ ନିର୍ବାଚନରେ ସକ୍ରିୟ ଭାଗ ନିଅନ୍ତୁ । ଯେଉଁମାନେ ଯାଇପାରିବେ ନାହିଁ, ସେମାନଙ୍କ ପାଇଁ ସେ ସେହି ଜନସଭାରେ ଏକ କାର୍ଯ୍ୟକ୍ରମ ଘୋଷଣା କଲେ, ଯାହାକି ପ୍ରତ୍ୟେକ ପ୍ରବାସୀ ଓଡ଼ିଆ ତାହାକୁ କାର୍ଯ୍ୟକାରୀ କରିପାରିବ । ତାହାହେଲେ ପ୍ରତ୍ୟେକ ଓଡ଼ିଆଭାଇ ତାଙ୍କ ଗ୍ରାମବାସୀ ଓ ବନ୍ଧୁବାନ୍ଧବ ଏବଂ ମା ଭଉଣୀଙ୍କ ପାଖକୁ ଏକ ପତ୍ର ଲେଖିବ ଓଡ଼ିଶା ପ୍ରତି ଅନ୍ୟାୟ କରିଥିବା କଂଗ୍ରେସ ଦଳକୁ ନିର୍ବାଚନରେ

ପ୍ରୟାସ କର । ସେହି କାର୍ଯ୍ୟକ୍ରମ ଅନୁସାରେ ହଜାର ହଜାର ପ୍ରବାସୀ ଓଡ଼ିଆଙ୍କ ପତ୍ର ଓଡ଼ିଶାର ବହୁ ଗ୍ରାମକୁ ଆସିଥିଲା । ସେ ନିର୍ବାଚନରେ ଏହାର ପ୍ରଭାବ କମ୍ ପଡ଼ିନଥିଲା ।

ଯଦୁମଣିବାବୁଙ୍କ ବ୍ୟକ୍ତିତ୍ୱ ବହୁ କ୍ଷେତ୍ରରେ ରେଖାପାତ କରିଛି । ପ୍ରମୁଖ ସ୍ୱାଧୀନତା ସଂଗ୍ରାମୀ, ଅସାଧାରଣ ତ୍ୟାଗୀ ହିସାବରେ ତାଙ୍କର ଖ୍ୟାତି ରହିଛି ଓ ରହିଥିବ । କିନ୍ତୁ ବିଧାନସଭାରେ ତାଙ୍କର କୃତିତ୍ୱ ଓ ବିଧାନସଭାର ଉପାଧ୍ୟକ୍ଷ ହିସାବରେ ବିଧାନସଭା ପରିଚାଳନାରେ ତାଙ୍କର ପଟୁତା, ଅବିସ୍ମରଣୀୟ । ବିଧାନସଭାରେ ତାଙ୍କ ସହିତ କାର୍ଯ୍ୟ କରିବାର ସୌଭାଗ୍ୟ ମୋର ଜୁଟିଛି । ତାଙ୍କର ଅମାୟିକ ବ୍ୟବହାର ବୟସ ନିର୍ବିଶେଷରେ ତାଙ୍କୁ ଜନପ୍ରିୟ କରିଥିଲା ଏବଂ ସମସ୍ତଙ୍କୁ ସେ ନିଜର କରିପାରିଥିଲେ । ଏପରି ବ୍ୟକ୍ତିତ୍ୱ କୋଟିକରେ ଗୋଟିଏ ମିଳିବା କଷ୍ଟକର । ରାଜନୀତି, ସମାଜନୀତି, ଦେଶପ୍ରେମ, ଓଡ଼ିଆପ୍ରୀତି ସବୁ କ୍ଷେତ୍ରରେ ନିଜର ଗୁଣ ଓ ପ୍ରତିଭାର ପରିଚୟ ଦେଇଥିବା ଲୋକ ବହୁତ ବିରଳ । ବର୍ତ୍ତମାନକାଳରେ ଦୁଷ୍ପ୍ରାପ୍ୟ । ବିଂଶ ଶତାବ୍ଦୀର ଏକ ବିରାଟ ଭାଗରେ ସେ ସିଂହଭଳି ଆଚରଣ ଦର୍ଶାଇ ତାଙ୍କର ଇହଲୀଳା ସମାପ୍ତ କରି ପରିବାର ଓ ଦେଶବାସୀଙ୍କୁ ଝୁରିବାକୁ ଛାଡ଼ିଦେଇ ଚାଲିଯାଇଛନ୍ତି ।

୧୪୯,ଏକାମ୍ର ହାଉସିଂ କଲୋନୀ
ୟୁନିଟ୍-୨, ଭୁବନେଶ୍ୱର-୯

• • • •

*ଯଦି ଆମେ ସତ୍ ଜୀବନଯାପନ କରିବାକୁ ଚାହିଁବା, ଆମକୁ ମନ ଭିତରର ଅଳସୁଆମୀକୁ ତ୍ୟାଗ କରିବାକୁ ପଡ଼ିବ ଏବଂ ଭଲ ଚିନ୍ତା କରିବାକୁ ପଡ଼ିବ । ତା' ହେଲେ ଯାଇ ଆମର ଜୀବନଧାରା ସରଳ ହୋଇପାରିବ ।*

-ମହାତ୍ମାଗାନ୍ଧୀ

# ସଂଗ୍ରାମୀ ଯଦୁମଣି

ନୀଳମଣି ରାଉତରାୟ

ସ୍ୱାଧୀନତା ସଂଗ୍ରାମର ପ୍ରାରମ୍ଭରେ ମହାତ୍ମା ଗାନ୍ଧୀଙ୍କ ଅସହଯୋଗ ଆନ୍ଦୋଳନ ଡାକରାରେ ଓଡ଼ିଶାରେ ଯେଉଁ କେତେ ଜଣ ଯୁବକ କଲେଜ ଶିକ୍ଷା ବର୍ଜନ କରି ଆନ୍ଦୋଳନରେ ଝାସ ଦେଇଥିଲେ ସେମାନଙ୍କ ମଧ୍ୟରେ ସ୍ୱର୍ଗୀୟ ଯଦୁମଣି ମଙ୍ଗରାଜ ଜଣେ ଅଗ୍ରଣୀ ହିସାବରେ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିପାରିଥିଲେ । ପରାଧୀନତାରୁ ଦେଶକୁ ମୁକ୍ତ କରିବା ପାଇଁ ଇଂରେଜ ସରକାରଙ୍କ ବିରୁଦ୍ଧରେ ଲଢ଼ିବା ଲାଗି ଗାନ୍ଧିଜୀଙ୍କ ବାର୍ତ୍ତା ତାଙ୍କ ହୃଦୟକୁ ଗଭୀର ଭାବରେ ସ୍ପର୍ଶ କରିଥିଲା । ସେ ଅତ୍ୟନ୍ତ ଅସ୍ଥିର ହୋଇପଡିଥିଲେ । ତେଣୁ କଲେଜରେ ଅଧ୍ୟୟନ କରିବା ତାଙ୍କ ପକ୍ଷରେ ସମ୍ଭବ ହୋଇନଥିଲା ।

ସମଗ୍ର ଓଡ଼ିଶାରେ ବୁଲି ଶ୍ରୀଯୁକ୍ତ ଯଦୁମଣି ମଙ୍ଗରାଜ କଂଗ୍ରେସର ଅସହଯୋଗ ବାର୍ତ୍ତା ଲୋକଙ୍କ ଭିତରେ ପ୍ରଚାର କରିଥିଲେ ଏବଂ ବ୍ରିଟିଶ୍ ସରକାରଙ୍କ ସହିତ କୌଣସି ପ୍ରକାର ସହଯୋଗ ନ କରିବା ପାଇଁ ଲୋକଙ୍କୁ ଜାଗ୍ରତ କରାଇଥିଲେ । ସେତେବେଳେ ଓଡ଼ିଶାର ଦୁଇଜଣ ତେଜସ୍ୱୀ ବକ୍ତା ହିସାବରେ ପରିଚିତ ଥିଲେ । ଜଣେ ହେଲେ ସ୍ୱର୍ଗୀୟ ଯଦୁମଣି ମଙ୍ଗରାଜ ଓ ଅନ୍ୟ ଜଣକ ଥିଲେ ସ୍ୱର୍ଗୀୟ ରାଜକୃଷ୍ଣ ବୋଷ୍ । ଯଦୁମଣିବାବୁ ଦୁର୍ଦ୍ଦାନ୍ତ ଭାବରେ ଜଣେ ନିର୍ଭୀକ ତେଜସ୍ୱୀ ବକ୍ତା ଥିଲେ । ତାଙ୍କ ବକ୍ତୃତା ଶୁଣିଲାକ୍ଷଣି ଲୋକଙ୍କ ରକ୍ତ ଗରମ ହୋଇଯାଉଥିଲା ଓ ସେମାନଙ୍କ ମଧ୍ୟରେ ସରକାର ବିରୋଧୀ ମନଭାବ ଜାଗ୍ରତ ହେଉଥିଲା । ସେ ଯେଉଁ ସଭାକୁ ଯାଉଥିଲେ ଯଦୁମଣିବାବୁ ଭାଷଣ ଦେବା କଥା ପ୍ରଚାର ହେବା ମାତ୍ରେ ସେଠାକୁ ଲୋକଙ୍କ ସୁଅ ଛୁଟେ । ଗାମ୍ଭୀର୍ଯ୍ୟପୂର୍ଣ୍ଣ ଭାଷଣ ଓ ପରିସର ମଧ୍ୟରେ ତାଙ୍କର ହାସ୍ୟୋଦ୍ଦୀପକର କୌତୁକିଆ କଥା ଶୁଣିବା ପାଇଁ ଲୋକମାନେ ବିଶେଷ ଭାବରେ ଆଗ୍ରହ ପ୍ରକାଶ କରୁଥିଲେ । ଓଡ଼ିଶାର ସର୍ବତ୍ର ରାଜନୈତିକ ସଭାସମିତିରେ ତାଙ୍କ ଉପସ୍ଥିତି ପାଇଁ ବିଶେଷ ଭାବରେ ଦାବୀ ହେଉଥିଲା । ସେ ଯେଉଁଠିକୁ ଯାଉଥିଲେ ସରକାରଙ୍କ ବିରୋଧରେ ସେଠାରେ ନିଆଁ ଲଗାଇଦେଇ ଆସୁଥିଲେ । ଛାତ୍ରମାନଙ୍କ ଭିତରେ ଯଦୁମଣିବାବୁଙ୍କ ପ୍ରଭାବ ଖୁବ୍ ଥିଲା ଏବଂ ତାଙ୍କ କଥାରେ ଛାତ୍ରମାନେ ଖୁବ୍ ଉତ୍ସାହିତ ହେଉଥିଲେ । ତାଙ୍କର ସରକାରୀ ବିରୋଧୀ ଭାଷଣ ପାଇଁ ସେ ବହୁବାର ଜେଲଦଣ୍ଡ ଭୋଗିଥିଲେ ।

ଜଣେ ନେତା ହିସାବରେ ଲୋକଙ୍କ ମଧ୍ୟରେ ସର୍ବଭାରତୀୟ ଦୃଷ୍ଟିକୋଣରୁ କଂଗ୍ରେସ ପାଇଁ କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ବିଚ୍ଛିନ୍ନ ଭାବରେ ଖଣ୍ଡବିଖଣ୍ଡିତ ହୋଇ ପଡିଥିବା ଓଡ଼ିଆ ଭାଷାଭାଷୀ ଅଂଚଳକୁ ଏକତ୍ରୀକରଣ ଉଦ୍ଦେଶ୍ୟରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ଦାବି ପ୍ରତି ସେ ବିଶେଷ ସଜାଗ ଥିଲେ । କଂଗ୍ରେସର ବହୁ ନେତା ଏଥିପ୍ରତି ଉଦାସୀନ ଥିଲାବେଳେ ସେ ସକ୍ରିୟ ଭାବରେ ସ୍ୱତନ୍ତ୍ର ପ୍ରଦେଶ ଦାବି ଆନ୍ଦୋଳନ ସହିତ ନିଜକୁ ସାମିଲ କରିପାରୁଥିଲେ । ଏ ଦିଗରେ ଯଦୁମଣିବାବୁ ପଣ୍ଡିତ ନୀଳକଣ୍ଠ ଦାସଙ୍କ ପରାମର୍ଶ ଅନୁସାରେ କାର୍ଯ୍ୟ କରୁଥିଲେ । ସ୍ୱତନ୍ତ୍ର ଓଡ଼ିଆ ପ୍ରଦେଶ ଗଠନ ଆନ୍ଦୋଳନର ନେତାକୁଳ ବୃଦ୍ଧ ମଧୁସୂଦନ ଦାଶଙ୍କ ସଂପର୍କରେ ଯଦୁମଣିବାବୁ ଆସିଥିଲେ ଏବଂ ତାଙ୍କ କାର୍ଯ୍ୟରେ ସେ ସହଯୋଗ କରୁଥିଲେ ।

ସ୍ୱତନ୍ତ୍ର ଓଡ଼ିଶା ଗଠନ ପରେ ୧୯୩୫ ମସିହା ଭାରତ ଶାସନ ବିଧାନ ଆଇନ୍ ଅନୁସାରେ ୧୯୩୭ ମସିହାରେ ପ୍ରଦେଶ ବ୍ୟବସ୍ଥା ସଭାଗୁଡିକର ପ୍ରଥମ ନିର୍ବାଚନ ହେବା କଥା ଇଂରେଜ ସରକାର ଘୋଷଣା କରିଥିଲେ । ସେହି ଅନୁସାରେ ଛଅଟି ଜିଲ୍ଲାକୁ ନେଇ

ଗଠିତ ହୋଇଥିବା ଓଡ଼ିଶା ପ୍ରଦେଶରେ ମଧ୍ୟ ନିର୍ବାଚନ ହୋଇଥିଲା । ସେତେବେଳେ ବିଧାନସଭାର ମୋଟ ସଭ୍ୟ ସଂଖ୍ୟା ୯୦ ଥିଲା । କଂଗ୍ରେସ ପକ୍ଷରୁ ନିର୍ବାଚନରେ ଭାଗନେବା ପାଇଁ ନିଖିଳ ଭାରତୀୟ କଂଗ୍ରେସ କମିଟି ପକ୍ଷରୁ ଘୋଷଣା କରାଯାଇଥିଲା । ଓଡ଼ିଶା ପ୍ରଦେଶରେ କଂଗ୍ରେସ ନିର୍ବାଚନରେ ଲଢ଼ିବା ପାଇଁ ସ୍ଥିର କରିଥିଲା ଏବଂ ଏହି ନିର୍ବାଚନ ପରିଚାଳନା ଦାୟିତ୍ୱ ସ୍ୱର୍ଗୀୟ ନୀଳକଣ୍ଠ ଦାଶଙ୍କ ଉପରେ ନ୍ୟସ୍ତ କରାଯାଇ ଥିଲା । ସ୍ୱର୍ଗୀୟ ଯଦୁମଣି ମଙ୍ଗରାଜ ଓଡ଼ିଶା ବିଧାନସଭା ପାଇଁ କେନ୍ଦ୍ରାପଡ଼ା ନିର୍ବାଚନ ମଣ୍ଡଳୀରୁ ପ୍ରାର୍ଥୀ ହୋଇ ବିପୁଳ ଜନସମର୍ଥନରେ ନିର୍ବାଚିତ ହୋଇଥିଲେ । ଏହି ନିର୍ବାଚନ ସମୟରେ ସ୍ୱର୍ଗୀୟ ପଣ୍ଡିତ ଜବାହରଲାଲ ନେହେରୁ କଂଗ୍ରେସ ପାଇଁ ନିର୍ବାଚନ ପ୍ରଚାର ଉଦ୍ଦେଶ୍ୟରେ ଓଡ଼ିଶା ଆସିଥିଲେ ଏବଂ ସ୍ୱର୍ଗୀୟ ଯଦୁମଣି ମଙ୍ଗରାଜଙ୍କୁ ସଙ୍ଗରେ ନେଇ କେନ୍ଦ୍ରାପଡ଼ା ଯାଇଥିଲେ ।

ଏହି ନିର୍ବାଚନରେ କଂଗ୍ରେସ ବହୁ ଆସନ ଦଖଲ କରି ସଂଖ୍ୟାଗରିଷ୍ଠ ହୋଇଥିଲା । ସ୍ୱର୍ଗୀୟ ବିଶ୍ୱନାଥ ଦାଶଙ୍କ ନେତୃତ୍ୱରେ ତିନିଜଣିଆ ମନ୍ତ୍ରିମଣ୍ଡଳ ଗଠନ କରାଯାଇଥିଲା । ତାଙ୍କ ବ୍ୟତୀତ ଅନ୍ୟ ଦୁଇଜଣ ମନ୍ତ୍ରୀ ହେଲେ ସ୍ୱର୍ଗୀୟ ନିତ୍ୟାନନ୍ଦ କାନୁନ୍‌ଗୋ ଓ ସ୍ୱର୍ଗୀୟ ବୋଧରାମ ଦୁବେ । ଉକ୍ତ ମନ୍ତ୍ରିମଣ୍ଡଳରେ ସ୍ୱର୍ଗୀୟ ଯଦୁମଣି ମଙ୍ଗରାଜ ଜଣେ ପ୍ରଭାବଶାଳୀ ପାର୍ଲାମେଣ୍ଟାରୀ ସେକ୍ରେଟେରୀ ହିସାବରେ ନିଯୁକ୍ତି ପାଇଥିଲେ ଏବଂ ତାଙ୍କ ଛଡ଼ା ସ୍ୱର୍ଗୀୟ ରାଜକୃଷ୍ଣ ବୋଷ ଓ ସ୍ୱର୍ଗୀୟ ଜଗନ୍ନାଥ ମିଶ୍ର ମଧ୍ୟ ପାର୍ଲାମେଣ୍ଟାରୀ ସେକ୍ରେଟାରୀ ରୂପେ ନିଯୁକ୍ତି ପାଇଥିଲେ । ସେତେବେଳେ ଏ ପ୍ରକାର ନିଯୁକ୍ତି କୁହାବୋଲା ଦ୍ୱାରା ହେଉନଥିଲା । ପ୍ରଭାବ ଓ କାର୍ଯ୍ୟଦକ୍ଷତା ବିଚାର କରି ତାହା କରାଯାଉଥିଲା । ସେହି ଦୃଷ୍ଟିରୁ ଯଦୁମଣିବାବୁଙ୍କୁ ଉପେକ୍ଷା କରିବା ସମ୍ଭବ ନଥିଲା । ବିଧାନସଭାରେ ତାଙ୍କର କାର୍ଯ୍ୟ ପ୍ରଶଂସନୀୟ ହେବା ସଙ୍ଗେ ସଙ୍ଗେ ବକ୍ତୃତା ଚିତ୍ତାକର୍ଷକ ଥିଲା । ସେତେବେଳେ କଟକର ରେଭେନ୍‌ସା କଲେଜର ହଲରେ ବିଧାନସଭା ବୈଠକ ବସୁଥିଲା । ବିଧାନସଭାରେ ଯଦୁମଣିବାବୁଙ୍କ ଭାଷଣ ଶୁଣିବା ପାଇଁ ବହୁ ଛାତ୍ର ଦର୍ଶକ ଗ୍ୟାଲେରିକୁ ଆସି ଭିଡ଼ କରୁଥିଲେ ।

ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଭାରତରେ ଯେଉଁ ସ୍ୱାଧୀନତା ଆନ୍ଦୋଳନ ହୋଇଥିଲା ତାହାର ଇତିହାସକୁ ମୁଖ୍ୟତଃ ତିନି ଭାଗରେ ବିଭକ୍ତ କରାଯାଇଥାଏ । ପ୍ରଥମ ଭାଗ ହେଉଛି ଅସହଯୋଗ ଆନ୍ଦୋଳନ ଦ୍ୱିତୀୟରେ ଲବଣ ସତ୍ୟାଗ୍ରହ ଓ ତୃତୀୟରେ ଭାରତ ଛାଡ଼– ଆନ୍ଦୋଳନ । ସ୍ୱର୍ଗୀୟ ଯଦୁମଣି ମଙ୍ଗରାଜ ପ୍ରଥମ ଦୁଇଟି ଆନ୍ଦୋଳନ ସହିତ ଓତପ୍ରୋତ ଭାବରେ ଜଡ଼ିତଥିଲେ ସେଥିପାଇଁ ତାଙ୍କର ବିପ୍ଳବରେ ସେ ସକ୍ରିୟ ଭାବରେ ଭାଗ ନେଇପାରି ନଥିଲେ । କଂଗ୍ରେସର ତତ୍‌କାଳୀନ ଗୋଷ୍ଠୀକନ୍ଦଳ ଏହାର ପ୍ରଧାନ କାରଣ । ଓଡ଼ିଶା କଂଗ୍ରେସରେ ସେତେବେଳେ ମୁଖ୍ୟତଃ ଦୁଇଟି ଗୋଷ୍ଠୀ ଥିଲା । ସ୍ୱର୍ଗୀୟ ବିଶ୍ୱନାଥ ଦାଶ, ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ -ଏବଂ ନିତ୍ୟାନନ୍ଦ କାନୁନ୍‌ଗୋ ପ୍ରଭୃତି ଗୋଟିଏ ଦଳରେ ଥିବାବେଳେ ଅନ୍ୟ ଦଳରେ ଥିଲେ ସ୍ୱର୍ଗୀୟ ପଣ୍ଡିତ ନୀଳକଣ୍ଠ ଦାଶ, ଗୋଦାବରୀଶ ମିଶ୍ର, ଓ ଯଦୁମଣି ମଙ୍ଗରାଜ ପ୍ରଭୃତି । କଂଗ୍ରେସର ଏହି ଦୁଇ ଗୋଷ୍ଠୀ ଭିତରେ ବିବାଦ ଅତ୍ୟନ୍ତ ଉକ୍‌ଟ ହୋଇଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧକୁ ବିରୋଧ କରି ବିଶ୍ୱନାଥ ଦାଶ ମନ୍ତ୍ରିମଣ୍ଡଳ ଇସ୍ତଫା ଦେଇ ଇଂରେଜ ସରକାରଙ୍କ ବିରୋଧରେ କାର୍ଯ୍ୟ କରିବା ପାଇଁ ପଦକ୍ଷେପ ନେଲାବେଳେ ପଣ୍ଡିତ ନୀଳକଣ୍ଠ ଦାଶଙ୍କ ସହିତ ଯଦୁମଣିବାବୁ ସେଥିରୁ ଦୂରେଇଗଲେ । ତେଣୁ ଅଗଷ୍ଟ ବିପ୍ଳବରେ ବିପ୍ଳବୀ ଶ୍ରୀ ଯଦୁମଣି ମଙ୍ଗରାଜ ନେତୃତ୍ୱ ନେବାରୁ ବଞ୍ଚିତ ହୋଇଥିଲେ ।

ଶ୍ରୀ ବିଶ୍ୱନାଥ ଦାଶଙ୍କ ମନ୍ତ୍ରିମଣ୍ଡଳର ଇସ୍ତଫା ପରେ ପାରଳାଖେମୁଣ୍ଡି ମହାରାଜା ମନ୍ତ୍ରିମଣ୍ଡଳ ଗଠନ କରିଥିଲେ । ସେତେବେଳେ ସ୍ୱର୍ଗୀୟ ମଙ୍ଗରାଜ ସମେତ ନୀଳକଣ୍ଠ ଦାଶ ଓ ଗୋଦାବରୀଶ ମିଶ୍ର ଉକ୍ତ ମନ୍ତ୍ରିମଣ୍ଡଳ ସହିତ ସହଯୋଗ କରିଥିଲେ ।

ନେତାଜୀ ସୁଭାଷ ଚନ୍ଦ୍ର ବୋଷ କଂଗ୍ରେସରୁ ବହିଷ୍କୃତ ହୋଇ ଫରୁଆର୍ଡ ବ୍ଳକ୍ ନାମରେ ଗୋଟିଏ ନୂତନ ଦଳ ଗଠନ କରିଥିଲେ । ଓଡ଼ିଶାରେ ଫରୁଆର୍ଡ ବ୍ଳକ ଶାଖା ଗଠନ କରି ସେଥିରେ ସାହାଯ୍ୟ କରିବା ପାଇଁ ନେତାଜୀ ଯଦୁମଣି ବାବୁଙ୍କ ସାହାଯ୍ୟ ଲୋଡ଼ିଥିଲେ । ସୁଭାଷବାବୁ ସେତେବେଳେ ଓଡ଼ିଶା ଆସିଥିଲେ ଓ ଯଦୁମଣିବାବୁଙ୍କ ସାହାଯ୍ୟରେ ବିଭିନ୍ନ ସ୍ଥାନରେ ସଭାସମିତି

କରିଥିଲେ । କଟକ ସଭାରେ ଯଦୁମଣିବାବୁ ସୁଭାଷ ବୋଷଙ୍କ ସମ୍ବନ୍ଧରେ ଏକ-ଓଜସ୍ୱିନୀ ଭାଷଣ ଦେଇଥିଲେ ।

ସ୍ୱାଧୀନତାପ୍ରାପ୍ତିପରେ ପ୍ରଥମ ଅବସ୍ଥାରେ ସ୍ୱର୍ଗୀୟ ମଙ୍ଗରାଜ କଂଗ୍ରେସ ବିରୋଧରେ ନିର୍ବାଚନରେ ଲଢିଥିଲେ । ମାତ୍ର କୃତକାର୍ଯ୍ୟ ହୋଇନଥିଲେ । ମୋର ମନେଅଛି କେନ୍ଦ୍ରାପଡା ନିର୍ବାଚନ ମଣ୍ଡଳୀର ଉପନିର୍ବାଚନ କଥା । ଯଦୁମଣିବାବୁଙ୍କ ଆଗତ ନିର୍ବାଚନ ମକଦ୍ଦମାରେ ସ୍ୱର୍ଗୀୟ ଦୀନବଂଧୁ ସାହୁଙ୍କ ନିର୍ବାଚନ ଅସିଦ୍ଧ ହେବାରୁ ସେଠାରେ ଉପନିର୍ବାଚନ ହୋଇଥିଲା । ଏହି ଉପନିର୍ବାଚନରେ କଂଗ୍ରେସ ପ୍ରାର୍ଥୀ ଶ୍ରୀ ପୁରୁଷୋତ୍ତମ ନାୟକଙ୍କ ବିରୋଧରେ ସ୍ୱର୍ଗୀୟ ମଙ୍ଗରାଜ ପ୍ରାର୍ଥୀ ହୋଇଥିଲେ । ମାତ୍ର ଅଳ୍ପ ଭୋଟରେ ପରାସ୍ତ ହୋଇଥିଲେ । ଯଦୁମଣିବାବୁଙ୍କ ସହିତ ମୋର ସଂପର୍କ ଖୁବ୍ ଭଲ ଥିଲା । ସେ ମୋତେ ଖୁବ୍ ଭଲ ପାଉଥିଲେ । କିନ୍ତୁ ଏହି ନିର୍ବାଚନରେ କଂଗ୍ରେସ ପକ୍ଷରୁ ନିର୍ବାଚନ ଦାୟିତ୍ୱ ମୋ ଉପରେ ଦିଆଯାଇଥିଲା । ସେତେବେଳେ ମୁଁ ଦେଖିଛି ଯଦୁମଣିବାବୁଙ୍କୁ ଲୋକେ କିପରି ଭଲ ପାଉଥିଲେ । ଗୋଟିଏ ଗୋଟିଏ ଗ୍ରାମକୁ ଯଦୁମଣିଙ୍କ ଦୁର୍ଗ ବୋଲି ଘୋଷଣା କରାଯାଇଥିଲା ଏବଂ ସେହି ଗ୍ରାମରେ କଂଗ୍ରେସ ପାଇଁ ପ୍ରଚାର କରାଇ ଦିଆଯାଉ ନଥିଲା । ମୋର ମନେଅଛି ଇନ୍ଦୁପୁର ନିକଟରେ ନିକେରେଇ ଗୋଟିଏ ଗାଁ ଅଛି । ମୁଁ ଦିନେ କଂଗ୍ରେସର ପ୍ରାର୍ଥୀ ପାଇଁ ସମର୍ଥନ ଲୋଡିବା ସେହି ଗାଁକୁ ଯାଇଥିଲି । ସେହି ଗାଁଟି ସାରା ପ୍ରାୟ ସମସ୍ତେ ଯଦୁମଣିବାବୁଙ୍କ ପ୍ରତି ଅନୁରକ୍ତ ଥିଲେ । ଗାଁକୁ ପ୍ରବେଶ କରିବାକ୍ଷଣି ମୋ ଗାଡିକୁ ଅଟକାଇଲେ । ସକାଳୁ ସଂଧ୍ୟା ପର୍ଯ୍ୟନ୍ତ କିଛି ନଖାଇ ଜଣକ ଦାଣ୍ଡପିଣ୍ଡାରେ ମୁଁ ବସିରହିଲି । ଯଦୁମଣିବାବୁଙ୍କ ସହିତ ମୋର କିପରି ସଂପର୍କ ସେ କଥା ସେମାନଙ୍କୁ ବୁଝାଇଲି । ଶେଷରେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ସେଠାରେ ପହଞ୍ଚି ସେମାନଙ୍କ ଗହଣରୁ ମୋତେ ଆଣିଥିଲେ । ତା' ପରଦିନ ଇନ୍ଦୁପୁରଠାରେ ଯଦୁମଣି ବାବୁଙ୍କ ସହିତ ମୋର ଦେଖା ହେଲା ଏବଂ ନିକେରେଇ ଘଟଣା ଜାଣି ସେ ବିଶେଷ ଦୁଃଖିତ ହୋଇଥିଲେ ଏବଂ ସେ ଗାଁ ଲୋକଙ୍କୁ ଡାକି ଭର୍ତ୍ସନା କରିଥିଲେ ।

୧୯୫୭ ମସିହାରେ ଯଦୁମଣିବାବୁ ପଣ୍ଡିତ ନୀଳକଣ୍ଠ ଦାଶଙ୍କ ସହିତ କଂଗ୍ରେସକୁ ଫେରିଆସିଥିଲେ । ବଡଚଣା ନିର୍ବାଚନ ମଣ୍ଡଳୀରୁ କଂଗ୍ରେସ ପ୍ରାର୍ଥୀ କରାଯାଇଥିଲା ଏବଂ ସେ ବିପୁଳ ଜନ ସମର୍ଥନ ପାଇଁ ନିର୍ବାଚନରେ ଜୟଲାଭ କରିଥିଲେ । ନୀଳକଣ୍ଠବାବୁ ଓ ଯଦୁମଣିବାବୁ ବିଧାନସଭାର ଯଥାକ୍ରମେ ବାଚସ୍ପତି ଓ ଉପବାଚସ୍ପତି ରୂପେ ନିର୍ବାଚିତ ହୋଇଥିଲେ । ଶାରୀରିକ ଦୁର୍ବଳତା ହେତୁ ବାଚସ୍ପତି ନୀଳକଣ୍ଠ ଦାଶ ଅନେକ ସମୟରେ ଅନୁପସ୍ଥିତ ରହୁଥିଲେ । ତେଣୁ ବିଧାନସଭାର ସମସ୍ତ କାର୍ଯ୍ୟ ଉପବାଚସ୍ପତି ମଙ୍ଗରାଜବାବୁଙ୍କ ଉପରେ ପଡୁଥିଲା । ଯଦୁମଣିବାବୁ ଉକ୍ତ କାର୍ଯ୍ୟକୁ ସୁଗ୍ରୁରୂପେ କରୁଥିଲେ ।

ଲୋକ ହିସାବରେ ସ୍ୱର୍ଗୀୟ ଯଦୁମଣି ମଙ୍ଗରାଜ ଜଣେ ଉତ୍କୃଷ୍ଟ ବ୍ୟକ୍ତି ଥିଲେ । ସେ ଅତ୍ୟନ୍ତ ମେଳାପି ଥିଲେ । ବହୁ ଲୋକଙ୍କ ଗହଳରେ ଥିଲେ ମଧ୍ୟ ଯଦୁମଣିବାବୁ ଦୂରକୁ ଫୁଟିଉଠନ୍ତି କାରଣ ସବୁବେଳେ କୌତୁକିଆ କଥା କହି ଲୋକଙ୍କୁ ହସାଇ ରଖୁଥିଲେ । ସେ ଖଣ୍ଡାୟତ ଥିବାରୁ ଜାତିର ଉନ୍ନତି ପାଇଁ ଖୁବ୍ ବ୍ୟସ୍ତ ହେଉଥିଲେ । ଖଣ୍ଡାୟତ ଓ କ୍ଷତ୍ରିୟ ମହାସଭାର ସେ ଜଣେ ବଳିଷ୍ଠ ପୃଷ୍ଠପୋଷକ ଥିଲେ ।

**ପୂର୍ବତନ ଉପ ମୁଖ୍ୟମନ୍ତ୍ରୀ**
**କଟକ ରୋଡ୍**
**ଭୁବନେଶ୍ୱର**

• • • •

# ଯୋଦ୍ଧା ଯଦୁମଣି

## ଗଂଗାଧର ପାଇକରାୟ

ସ୍ୱର୍ଗୀୟ ଯଦୁମଣି ମଙ୍ଗରାଜଂକର ଓଡ଼ିଶାର ରାଜନୈତିକ କ୍ଷେତ୍ରରେ ଓ ସ୍ୱାଧୀନତା ଆନ୍ଦୋଳନରେ ଅତୁଳନୀୟ ଦାନ ଥିଲା । ସ୍ୱାଧୀନତା ଆନ୍ଦୋଳନକୁ ଜୋର୍‌ଦାର କରିବାପାଇଁ ଓଡ଼ିଶାର ବିଭିନ୍ନ ସ୍ଥାନରେ ଯେଉଁ ବକ୍ତୃତାମାନ ଦେଇଛନ୍ତି ତାହା ଚିରସ୍ମରଣୀୟ ହୋଇ ରହିବ । ତାଂକର ଓଜସ୍ୱିନୀ ବକ୍ତୃତାଦ୍ୱାରା ବହୁ କୃଷକ, ଶ୍ରମିକ, ଛାତ୍ର ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇଥିଲେ । ସେ ୧୯୫୨ ମସିହାରୁ ଓଡ଼ିଶା ବିଧାନସଭାରେ ଉପବାଚସ୍ପତି ଭାବରେ ରହି ଯେଭଳି ଶୃଙ୍ଖଳାର ସହ ଚଳାଇଥିଲେ ତାହା ମଧ୍ୟ ଓଡ଼ିଶା ଇତିହାସରେ ଅତୁଳନୀୟ ଅଟେ । ସେ ସମୟରେ ଓଡ଼ିଶା ବିଧାନସଭାରେ ସ୍ୱର୍ଗୀୟ ନନ୍ଦକିଶୋର ଦାସ ବାଚସ୍ପତି ଥିଲେ । ସେ ଅତି ଉଚ୍ଚକୋଟୀର ଲୋକ ଥିଲେ । ସେତେବେଳେ ବିଧାନସଭାରେ ଖୁବ୍ ଧୁରନ୍ଧର ଆଇନଜ୍ଞମାନେ ସଭ୍ୟ ଥିଲେ ଯଥା–ପଣ୍ଡିତ ନୀଳକଣ୍ଠ ଦାଶ, ଶ୍ରଦ୍ଧାକର ସୂପକାର, ପଣ୍ଡିତ ଗୋଦାବରୀଶ ମିଶ୍ର, ଦିବାକର ପଟ୍ଟନାୟକ ପ୍ରଭୃତି ଦକ୍ଷ ସଭ୍ୟମାନେ ବିରୋଧୀ ଦଳରେ ଥିବାବେଳେ ସରକାରୀ ଦଳରେ ନବକୃଷ୍ଣ ଚୌଧୁରୀ, ଦୀନବଂଧୁ ସାହୁ, ବିଜୟାନନ୍ଦ ପଟ୍ଟନାୟକ, ବୀରେନ୍ ମିତ୍ର ପ୍ରଭୃତି ଦକ୍ଷ ରାଜନୀତିଜ୍ଞମାନେ ଥିଲେ । ଯେଭଳି ଭାବରେ ବିଧାନସଭା ମଧ୍ୟରେ ଆଇନ୍ ଓ ବଜେଟ୍ ଚର୍ଚ୍ଚା ହେଉଥିଲା ସେଥିରୁ ଯେଉଁ ସମସ୍ୟାମାନ ସାରା ଗୃହରେ ଗରମ ଅବସ୍ଥା ଉପୁଜାଉଥିଲା, ତାହାକୁ ସମ୍ଭାଳିଥିଲେ ସ୍ୱର୍ଗୀୟ ମଙ୍ଗରାଜ । କାରଣ ଯଦୁମଣି ମଙ୍ଗରାଜ ଥିଲେ ଦକ୍ଷ ଆଇନଜ୍ଞ ଓ ସୁବକ୍ତା । ତାଂକଭଳି ବକ୍ତା ଓଡ଼ିଶାରେ ବିରଳ । ବିଧାନସଭା ମଧ୍ୟରେ ଦକ୍ଷ ବ୍ୟବସ୍ଥାପକମାନଂକର ଗରମାଗରମ ଲାଗିଥିବାବେଳେ ସେ ଯେଭଳି ଦକ୍ଷତାର ସହ ସେସବୁ ସମ୍ଭାଳୁଥିଲେ ତାହା ଓଡ଼ିଶା ତଥା ଭାରତବର୍ଷରେ ବିରଳ । ତାଂକର ତ୍ୟାଗ ବକ୍ତୃତା ଚିରକାଳ ଓଡ଼ିଶାରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ।

ଖାରବେଳ ନଗର
ଭୁବନେଶ୍ୱର–୧

# ବାଗ୍ମୀପ୍ରବର ଯଦୁମଣି ମଙ୍ଗରାଜ (୧୮୯୬-୧୯୬୪)

## ଅଧ୍ୟାପକ ପଠାଣି ପଟ୍ଟନାୟକ

ପରାଧୀନ ଓଡ଼ିଶାରେ କୁହାଯାଉଥିଲା, ଇଂରେଜ ଶାସନ ଏପରି କଠୋର ଥିଲା ଯେ ଗୋଟିଏ ତୁଠରେ ବାଘ ଓ ଛେଳିଛୁଆ ଏକାଠି ପାଣି ପିଉଥିଲେ। ଏଥିରୁ ଓଡ଼ିଶାର ଜନଜୀବନ କିପରି ବିପର୍ଯ୍ୟୟର ସମ୍ମୁଖୀନ ହୋଇଥିଲା ତାହା ସହଜରେ ଅନୁମିତ ହୋଇଥାଏ। ଜନସାଧାରଣ, ଦରିଦ୍ର, ଲାଞ୍ଛିତ, ଏବଂ ଭୀତତ୍ରସ୍ତ ଅବସ୍ଥାରେ ରହିଥିଲେ। ବିଦେଶୀ ଶାସନର ଶୋଷଣ, ଉତ୍ପୀଡ଼ନ ଏବଂ ଚରମ ଦାରିଦ୍ର୍ୟର କଷଣ ମଧ୍ୟରେ ସାମାଜିକ ଜୀବନ ପରିଣତ ହୋଇଥିଲା ଅତ୍ୟନ୍ତ ଅଥର୍ବ ଏବଂ ଦଣ୍ଡନୀୟ। ହଜାର ହଜାର ମାଇଲ ସମୁଦ୍ରକୂଳରେ ଥାଇ ସୁଦ୍ଧା ଲୁଣ ମାରିବାର ଅଧିକାର ଆମର ନଥିଲା। ଆମ ତନ୍ତୀ କୁଳର ବୁଢ଼ାଆଙ୍ଗୁଠି କାଟିଦିଆଗଲା। ଏ ଦେଶର ତନ୍ତଚାଳନା ସ୍ୱପ୍ନପ୍ରାୟ ହୋଇଗଲା। ଲାଙ୍କାସାୟାର କଳବୁଣା ଲୁଗା, ଆମର ଲଜ୍ଜା ନିବାରଣରେ ସାହାଯ୍ୟ କରୁଥିଲା। ଡ଼ଣ୍ଡି ସହରରୁ ଝୋଟ ବୁଣା ଅଖା ନ ଆଣିଲେ ଆମେ ଚାଉଳ ରଖିପାରୁନଥିଲେ। ସାମାନ୍ୟ ପିନ୍‌କଣ୍ଟାଟିଏ ପାଇଁ ମଧ୍ୟ ଇଂଲଣ୍ଡ ଉପରେ ଭାରତକୁ ନିର୍ଭର କରିବାକୁ ପଡୁଥିଲା। ଅଶିକ୍ଷାର ଅମାଅନ୍ଧକାର ମଧ୍ୟରେ ଦେଶବାସୀ ଡ଼ହକବିକଳ ହେଉଥିଲାବେଳେ ନା ଥିଲା ସଚେତନତା, ନା ଥିଲା ଆତ୍ମମର୍ଯ୍ୟାଦାବୋଧ। ଏହିପରି ଏକ ଦୁର୍ଗତି ସମୟରେ ଏ ଦେଶର ମୁଷ୍ଟିମେୟ ଶିକ୍ଷିତ ଲୋକ ଦେଶକୁ ବିଦେଶୀ ଶୃଙ୍ଖଳରୁ ମୁକ୍ତ କରିବାପାଇଁ ଅଣ୍ଟାଭିଡ଼ି ବାହାରିଥିଲେ। ସେମାନଙ୍କର ସାହାସ, ଦେଶପ୍ରେମ ଏବଂ ଆତ୍ମତ୍ୟାଗର କାହାଣୀ ଆଜି ଇତିହାସରେ ଗୌରବମୟ ଅଧ୍ୟାୟ ହୋଇ ରହିଯାଇଅଛି। କାରଣ ଆମ ଦେଶର ଧନୀ, ଜମିଦାର, ସାଉକାର, ସରକାରୀ କର୍ମଚାରୀ ଏବଂ ଶିକ୍ଷିତ ଲୋକମାନେ ଅତ୍ୟନ୍ତ ସ୍ୱାର୍ଥପରବଶ ହୋଇ ଇଂରେଜ ସରକାରଙ୍କୁ ସନ୍ତୁଷ୍ଟ ରଖୁଥିଲେ। ଯେଉଁମାନେ ଏହି କାଳରେ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଲେ, ସେମାନେ ସରକାରୀ ଚାକିରି ଓ ପାଠପଢ଼ା ଛାଡ଼ିଲେ, ଜେଲ୍‌ର ଆବଦ୍ଧ ପ୍ରାଚୀର ମଧ୍ୟରେ ନାନା ଅତ୍ୟାଚାରର ଶିକାର ହେଲେ ସେମାନଙ୍କର ଜମିବାଡ଼ି ଉଚ୍ଛେଦ କରିଦିଆଗଲା। ଦେଶ ମୁକ୍ତିପାଇଁ ସେମାନେ ଚରମ ତ୍ୟାଗ ସ୍ୱୀକାର କରିବାକୁ ପ୍ରସ୍ତୁତ ହୋଇ ଆସିଲେ। ସେମାନଙ୍କର ପାରିବାରିକ ଜୀବନ ତଳିତଳାନ୍ତ ହୋଇଗଲା। ତତ୍‌କାଳୀନ ଓଡ଼ିଶାର ସ୍ୱାଧୀନତା ସଂଗ୍ରାମରେ ଜଣେ ମହାନ ଯୋଦ୍ଧା ଥିଲେ ଯଦୁମଣି ମଙ୍ଗରାଜ। ଅତ୍ୟନ୍ତ ଦୁଃଖର କଥା ଯେ ତାଙ୍କର ସ୍ୱାଧୀନତା ସଂଗ୍ରାମକାଳୀନ ଦୁଃସାହିକ ଜୀବନ କାହାଣୀ ଆଜି ପର୍ଯ୍ୟନ୍ତ ଲିପିବଦ୍ଧ ହୋଇପାରିନାହିଁ। ବର୍ତ୍ତମାନର ତରୁଣ ସଂପ୍ରଦାୟ ତାଂକ ବିଷୟରେ କିଛି ଜାଣିବାର ସୁଯୋଗ ପାଉନାହାନ୍ତି।

ସେତେବେଳେ ମାଇକ୍ରୋଫୋନର ବ୍ୟବହାର ଜଣା ନଥିଲା। ଅଥଚ ହଜାର ହଜାର ଅଶିକ୍ଷିତ ଦେଶବାସୀଙ୍କୁ ଉଦ୍ବୁଦ୍ଧିତ କରିବାକୁ ହେବ। ସ୍ୱାଧୀନତାର ମନ୍ତ୍ରରେ ଦୀକ୍ଷିତ କରିବାକୁ ପଡ଼ିବ। ସେମାନଙ୍କ କାନରେ ଦେଶବିଦେଶର ସ୍ୱାଧୀନତା ସଂଗ୍ରାମର କାହାଣୀ ଶୁଣାଇବା ଆବଶ୍ୟକ। ଏହା କିପରି ସମ୍ଭବ ହେବ ? ଦେଶର ଲୋକେ ଏକାଠି ହୋଇ ଆଲୋଚନା କରିବାକୁ ସାହାସ କରିନାହାନ୍ତି। ଦେଶ ପାଇଁ ସମାଜ ପାଇଁ ଚିନ୍ତା କରିବାର ଆବଶ୍ୟକତା ସେମାନେ ଜାଣନ୍ତି

ନାହିଁ । ସମାଜ ଜୀବନରେ ଜାଗରଣ ନାହିଁ । ଦେଶରେ ସାଧାରଣ ଜୀବନ ଆରମ୍ଭ ହୋଇନାହିଁ । ଚତୁର୍ଦ୍ଦିଗରେ କେବଳ ଅମାଅନ୍ଧକାର ଓ ଆତ୍ମବିସ୍ମୃତ ଜୀବନର ବିକଳ ପରିବେଶ । ଏହି ପ୍ରକାର ଜନଜୀବନକୁ ଜାଗ୍ରତ କରିବାପାଇଁ ଯେଉଁ କେତେଜଣ ସିଂହପରି ପ୍ରବଳ ପରାକ୍ରାନ୍ତ ହୋଇ ବାହାରିଥିଲେ, ସେ କାଳରେ ସେମାନଙ୍କ ସଂଖ୍ୟା ଥିଲା ଅଙ୍ଗୁଳିମେୟ । ସେତେବେଳେ ବକ୍ତୃତା ଦେବାର ଶକ୍ତି ରାଜନୈତିକ ନେତୃତ୍ୱର ଏକ ବଡ଼ ପ୍ରମାଣ ଥିଲା । ଏହା ସହିତ ଜଡ଼ିତ ହୋଇଥିଲା ଜାତିପାଇଁ ଆତ୍ମତ୍ୟାଗ ଓ ବିଦେଶ ଶାସନ ତନ୍ତ୍ରର କଷଣକୁ ମୁକାବିଲା କରିବାର ଅନିର୍ବଚନୀୟ ସାହସ ଓ ଉଚ୍ଚାକାଙ୍‌କ୍ଷା । ଯଦୁମଣି ଏହିପରି ଜଣେ ମହାନ ପ୍ରତିଭାଧର ବ୍ୟକ୍ତିତ୍ୱ ଥିଲେ ।

୧୮୯୪ ସାଲ ଜାନୁଆରୀ ପହିଲା ତାରିଖରେ ବର୍ତ୍ତମାନ କେନ୍ଦ୍ରାପଡ଼ା ଜିଲ୍ଲାର କରିଲୋ ଗ୍ରାମରେ ଏକ ମଧ୍ୟବିତ୍ତ ପରିବାରରେ ଯଦୁମଣି ଜନ୍ମଗ୍ରହଣ କରିଥିଲେ । ସେ ଥିଲେ ଆବାଲ୍ୟ ମେଧାବୀ ଏବଂ ଚତୁର । ଯେ କୌଣସି ଦୁଃସାହସିକ କାର୍ଯ୍ୟ କରିବାକୁ ସେ ସାଙ୍ଗମେଳରେ ପ୍ରଥମେ ଅଗ୍ରସର ହେଉଥିଲେ । ଆମର କାବ୍ୟଯୁଗର ସାହିତ୍ୟରଥୀ ଯଦୁମଣି ଥିଲେ ହାସ୍ୟରସିକ ଓ କବି । ଯଦୁମଣିଙ୍କ ହାସ୍ୟ ପ୍ରବଚନ ଓଡ଼ିଶାର ଘରେ ଘରେ ପରିଚିତ । ସେ ଯଦୁମଣିଙ୍କ ନାମକୁ ସାର୍ଥକ କରି ଆମର ଜନନେତା ଯଦୁମଣି ମଧ୍ୟ ଥିଲେ ପ୍ରଚଣ୍ଡ ହାସ୍ୟରସିକ । ନିଜର ଅତୁଳି ବାଗାଡ଼ମ୍ବର ଜରିଆରେ ସେ ହଜାର ହଜାର ଲୋକଙ୍କୁ କେବଳ ମନ୍ତ୍ରମୁଗ୍ଧ କରି ଦେଉନଥିଲେ, ସେମାନଙ୍କୁ ମତାଇ, ତତାଇ ଉନ୍ମାଦିତ କରି ଦେଉଥିଲେ । ଯଦୁମଣି ଭାଷାରେ ଓ ଭାଷଣରେ କି ଯାଦୁକରୀ ପ୍ରରୋଚନା ଥିଲା କେଜାଣି, ଶୁଣିବା ଲୋକ ଏକପ୍ରକାର ବିହ୍ୱଳିତ ଏବଂ ଉଦ୍‌ଭ୍ରାନ୍ତ ହୋଇଯାଉଥିଲେ ।

ଯଦୁମଣି ପ୍ରଥମ ଶ୍ରେଣୀରେ ମାଟ୍ରିକ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ତା ପରେ ସେ ହେଲେ ରେଭେନ୍‌ସା କଲେଜରେ ବିଜ୍ଞାନ ଶ୍ରେଣୀର ଛାତ୍ର । ସେତେବେଳେ ଓଡ଼ିଶାରେ ଗୋଟିଏ ବୋଲି ମହାବିଦ୍ୟାଳୟ ଏବଂ ଉଚ୍ଚଶିକ୍ଷକଙ୍କ ସଂଖ୍ୟା ଅତ୍ୟନ୍ତ ଅଳ୍ପ । ଏହି ପରିପ୍ରେକ୍ଷିରେ ଯେଉଁମାନଙ୍କର ଉଚ୍ଚ କଲେଜ ଡ଼ିଗ୍ରୀ ହାସଲ କରିବାର ସୁଯୋଗ ଥିଲା, ସେମାନେ ଇଂରେଜ ସରକାରଙ୍କ ଦପ୍ତରରେ ଉଚ୍ଚବେତନଭୋଗୀ ହୋଇ ସମ୍ମାନ ଓ କ୍ଷମତା ଉପଭୋଗ କରିବାପାଇଁ କୌଣସି ଅସୁବିଧା ନଥିଲା । ଯଦୁମଣି ଇଚ୍ଛା କରିଥିଲେ ଉଚ୍ଚବେତନଭୋଗୀ ହୋଇ ସୁଖସମ୍ଭୋଗକୁ ସ୍ୱାଗତ କରିପାରିଥାଆନ୍ତେ ମାତ୍ର ଅସହଯୋଗ ଆନ୍ଦୋଳନର ଆହ୍ୱାନ ତାଙ୍କୁ ପାଗଳ କରିଦେଲା ।

୧୯୨୦ ବେଳକୁ ଭାରତର ରାଜନୀତିକ ରଙ୍ଗମଞ୍ଚରେ ମୋହନଦାସ କରମଚାନ୍ଦ ଗାନ୍ଧୀ ଜଣେ ମହାନ୍ ଜାତୀୟ ନେତା ଭାବରେ ସ୍ୱୀକୃତ ହୋଇଥାଆନ୍ତି । ସେତେବେଳେ ଓଡ଼ିଶାରେ ଜାତୀୟ ଆନ୍ଦୋଳନର କର୍ଣ୍ଣଧାର ହେଉଛନ୍ତି ଉତ୍କଳମଣି ଗୋପବନ୍ଧୁ ଦାସ । ଏହି ସମୟରେ କଟକର ବାଖରାବାଦରେ ଭାରତୀମନ୍ଦିର ନାମରେ ଏକ ପାଠାଗାର ଖୋଲିଥାଏ । ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ନିତ୍ୟାନନ୍ଦ କାନୁନ୍‌ଗୋ, ଭାଗିରଥୀ ମହାପାତ୍ର ପ୍ରଭୃତି କେତେଜଣ ଉଚ୍ଚଶିକ୍ଷିତ ଉତ୍ସାହୀ ଯୁବକ ଏହି ଅନୁଷ୍ଠାନ ସହିତ ସଂପୃକ୍ତ ଥାଇ ଦେଶପାଇଁ କିଛି କରିବାପାଇଁ ବ୍ରତ ଗ୍ରହଣ କରିଥା'ନ୍ତି । ସାରାଦେଶରେ ଅସହଯୋଗର ବାର୍ତ୍ତା ପ୍ରଚାର ହେଉଥାଏ । କାଠଯୋଡ଼ିନଦୀ ବାଲିରେ ମୁକ୍ତ ଆକାଶତଳେ ଏକ ବିଶାଳ ଜନସଭାରେ ଗୋପବନ୍ଧୁ ଅସହଯୋଗର ମର୍ମ ବୁଝାଇ ଦେଶବାସୀଙ୍କୁ ଭାରତର ମୁକ୍ତିଆନ୍ଦୋଳନରେ ଝାସ ଦେବାପାଇଁ ଆହ୍ୱାନ ଦେଉଥାନ୍ତି । ତାଙ୍କର ବାର୍ତ୍ତା ଥିଲା ବିଦେଶୀ ସାମ୍ରାଜ୍ୟବାଦୀ ଇଂରେଜ ସରକାରଙ୍କ ସହିତ ସମସ୍ତ ପ୍ରକାରେ ଅସହଯୋଗ କର, ସରକାରୀ ଚାକିରି ଏବଂ ଶିକ୍ଷାୟତନ ଛାଡ଼ିଦିଅ । ଏହି ଆହ୍ୱାନରେ ଅନୁପ୍ରାଣିତ ହୋଇ ଯଦୁମଣି କଲେଜ ପଢ଼ା ଛାଡ଼ିଦେଲେ । ତାଙ୍କ ସହିତ ଏହି ସଂଗ୍ରାମରେ ଯୋଗଦେଲେ କଲେଜ ଛାତ୍ର ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ରାଜକୃଷ୍ଣ ବୋଷ, ନାରାୟଣ ବୀରବର ସାମନ୍ତ, କରୁଣାକର ପାଣିଗ୍ରାହୀ, ବଂଶୀଧର ମିଶ୍ର ପ୍ରଭୃତି ବହୁ

ଦେଶପ୍ରେମୀ ଯୁବକ । ଯଦୁମଣି ସାହେବୀ ପୋଷାକ ନିଆଁରେ ପକାଇଦେଇ ଖଦଡ଼ ପିନ୍ଧିଲେ । ସ୍ୱରାଜ୍ୟର ବାର୍ତ୍ତା ପ୍ରଚାର କରି ପୋଲିସ ଲାଠିମାଡ଼ର ଶିକାର ହେଲେ, ଜେଲ୍‌ରେ ବର୍ଷ ବର୍ଷ କାଳ ଘଣା ପେଲିଲେ, କତା ବାଡାଇଲେ । ତଥାପି ସେ ହାରିଲେ ନାହିଁ । ପରିବାର ଅବହେଳିତ ହେଲେ । ନାନା ଦୁର୍ଗତି ମଧ୍ୟରେ ପରିବାରର ଲୋକମାନେ କଷ୍ଟ ପାଉଥାଆନ୍ତି । ଅସହଯୋଗୀ ଯଦୁମଣିଙ୍କୁ ତାହା ବିଚଳିତ କରିପାରିଲା ନାହିଁ । 'କର ବା ମର' ଏହି ପଣ ଅନୁରୋଧ ଦେଶମାତାର କଲ୍ୟାଣ ପାଇଁ ସେ ତ୍ରିରଙ୍ଗ ପତାକା ଧରି ଅଗ୍ରସର ହେଲେ । ଆଉ ପଛକୁ ଫେରି ଚାହିଁଲେ ନାହିଁ । ଯଦୁମଣି ଯୁବମାନସର ଆଲୋକବର୍ତ୍ତିକା ।

ଏହି ସମୟରେ ବିହାର, ଓଡ଼ିଶା ମନ୍ତ୍ରିପରିଷଦର ଉତ୍କଳଗୌରବ ମଧୁସୂଦନ ଜଣେ ମନ୍ତ୍ରୀଭାବରେ ଯୋଗଦାନ କଲେ । ମଧୁବାବୁ ଜାତୀୟ ଆନ୍ଦୋଳନ ସହିତ ସାମିଲ ହୋଇନଥିଲେ ଓଡ଼ିଶାପ୍ରଦେଶ ମିଳିବ ନାହିଁ । ପ୍ରଥମେ ସ୍ୱତନ୍ତ୍ର ପ୍ରଦେଶ, ତା ପରେ ସ୍ୱାଧୀନତା ଆନ୍ଦୋଳନ । ଉତ୍କଳମଣି ଗୋପବନ୍ଧୁ କିନ୍ତୁ ସ୍ୱାଧୀନତା ସଂଗ୍ରାମକୁ ପ୍ରଥମ ସ୍ଥାନ ଦେଲେ । ତାଙ୍କରି ନେତୃତ୍ୱରେ ଓଡ଼ିଶାର ସଂଗ୍ରାମୀ ଯୁବକମାନେ ମନେକଲେ ଯେ ମଧୁବାବୁ ବୁଢାକାଳରେ ମନ୍ତ୍ରିତ୍ୱ ଲୋଭରେ ଭାସିଗଲେ । ସରକାରୀ କଳରେ ରହି ସେ ସ୍ୱାଧୀନ ମତବ୍ୟକ୍ତ କରିପାରିବେ ନାହିଁ । ମଧୁବାବୁଙ୍କ ମନ୍ତ୍ରିତ୍ୱ ଗ୍ରହଣ ବିରୁଦ୍ଧରେ ଯୁବକମାନେ ସମଗ୍ର ଓଡ଼ିଶାରେ ବିଦ୍ରୋହ କରି ନିନ୍ଦାବାଦ କଲେ । କଟକ ଏବଂ ପୁରୀରେ ମଧୁବାବୁଙ୍କ ସ୍ୱାଗତ ସମ୍ବର୍ଦ୍ଧନା କରିବାପାଇଁ ସଭାର ଆୟୋଜନ ପସରଫାଟିଗଲା । ଏହି ଆନ୍ଦୋଳନର ଅଗ୍ରଭାଗରେ ଥିଲେ ଯଦୁମଣି ମଙ୍ଗରାଜ । ସେ କାଳରେ ପୁରୁଷସିଂହ ମଧୁବାବୁଙ୍କ ବିରୁଦ୍ଧରେ କିଛି କହିବା ଅତ୍ୟନ୍ତ ଦୁଃସାହସିକ କାର୍ଯ୍ୟ ଥିଲା । "ଅଶୀବର୍ଷରେ ମଧୁବାବୁ ଚାକିରିଆ" ବୋଲି ପ୍ରଚାରପତ୍ର ଚାରିଆଡ଼େ ବିତରଣ କରାଗଲା । ସତେ ଯେପରି ଏତେକାଳ ଧରି ଓଡ଼ିଶାରେ ନେତୃତ୍ୱ ପ୍ରଦାନ କରିଥିବା ମି. ଦାସଙ୍କୁ ଯୁବକମାନେ ପ୍ରତ୍ୟାଖ୍ୟାନ କରିଦେଲେ ।

ସେ ହେଉଛି ୧୯୨୨ ମସିହାର କଥା । କନିକା ଏକ ଜମିଦାରୀ ହେଲେହେଁ ସେଠାରେ ନିରଙ୍କୁଶ ଗଡ଼ଜାତି ଅତ୍ୟାଚାର ଚାଲିଥାଏ । କନିକାର ପ୍ରଜାମାନେ ଅତିଷ୍ଠ ହୋଇଯାଇଥାଆନ୍ତି । କନିକାର ତତ୍‌କାଳୀନ ରାଜା ଇଂରେଜ ସରକାରଙ୍କର ଅତ୍ୟନ୍ତ ପ୍ରିୟ ଥିବାରୁ କନିକାର ପ୍ରଜାମାନେ ନ୍ୟାୟ ପାଇବା ଆଦୌ ସମ୍ଭବ ନଥାଏ । ପ୍ରଜାମାନେ ନାନାଭାବରେ ନିର୍ଯାତିତ ହେଉଥିଲେ । ଚଉଷଠି ପ୍ରକାର କର ଆଦାୟ କରାଯାଉଥିଲା ଏବଂ ବେଠିବେଗାରୀ କରି ଲୋକମାନେ ଅସହ୍ୟ କଷ୍ଟ ଭୋଗ କରୁଥିଲେ । ଯଦି କେହି ରାଜାଙ୍କ ବିରୁଦ୍ଧରେ ମତପ୍ରକାଶ କରୁଥିଲା, ରାଜାଙ୍କ ପିଆଦାମାନେ କଠୋର ଦଣ୍ଡ ଦେଉଥିଲେ । ସ୍ୱାମୀକୁ ବାନ୍ଧିପକାଇ ତାରି ଆଗରେ ସ୍ତ୍ରୀର ଇଜଜ୍‌ତ ନଷ୍ଟ କରାଯାଉଥିଲା । ମା ଝିଅ ଦୁହିଁଙ୍କୁ ଗୋଟିଏ ଘରେ ଲଙ୍ଗଳା କରି ସେମାନଙ୍କ ଉପରେ ପାଶବିକ ଅତ୍ୟାଚାର କରାଯାଉଥିଲା । ସୁନ୍ଦରୀ ଯୁବତୀମାନଙ୍କର ଆଦୌ ନିସ୍ତାର ନଥିଲା । ସେମାନଙ୍କୁ ବଳପ୍ରୟୋଗ କରି କଚେରିକୁ କିମ୍ବା ରାଜବାଟୀକୁ ଧରି ନିଆଯାଉଥିଲା ଲୋକେ ଭୟଭୀତ ହୋଇ ଝିଅମାନଙ୍କର ହାତ, ଗୋଡ଼ ଓ ମୁଣ୍ଡରେ ଚିତା କୁଟାଇ ସେମାନଙ୍କୁ ଅସୁନ୍ଦର କରିପକାଇବାକୁ ବାଧ୍ୟ ହେଉଥିଲେ । ପ୍ରଜାମାନେ ଦାଣ୍ଡଦୁଆରେ କାଠକବାଟ ଲଗାଇପାରୁ ନଥିଲେ ଓରା ଶେଣୀ ଘର କରି ପାରୁନଥିଲେ । ଗଛ ଓ ମାଛରେ ପ୍ରଜାମାନଙ୍କରେ ଅଧିକାର ନଥିଲା । ଗଛ କର, ମାଛ ମହୁ କର, ଚମଡ଼ାକର, ମାନସିକ ରଖି ପିଲାର ମସ୍ତକ ମୁଣ୍ଡନ କଲେ କର, ଅଣ୍ଡିରା ବାଛୁରୀ ଖାସୁ କଲେ କର ନବବଧୂ ଘରକୁ ଆଣିଲେ ମଧୁଶଯ୍ୟା କର ପ୍ରଭୃତି ୬୪ ପ୍ରକାର କର ଦେବାକୁ ପଡୁଥିଲା । କନିକାର ଶ୍ରୀ ଆନନ୍ଦଚନ୍ଦ୍ର ଜେନା ଏହି ସବୁ କଥା ବର୍ଣ୍ଣନା କରି ଏକ ବହି ଲେଖିଲେ "ଦୁଃଖିନୀ-କନିକା" । ଏହି ବହିକୁ ସରକାର ବାଜ୍ୟାପ୍ତ କରିଦେଲେ । ରାଜନିଗ୍ରହ ଭୟରେ ଆନନ୍ଦ ଚନ୍ଦ୍ର ରାତିଅଧରେ ଖରସ୍ରୋତା ନଦୀ ପାରିହୋଇ ଆଳି ଅଞ୍ଚଳକୁ ପଳାଇଗଲେ ଏବଂ କେନ୍ଦ୍ରାପଡ଼ା ଅଞ୍ଚଳରେ ନିର୍ବାସିତ ଜୀବନ ବିତାଉଥିଲେ

୨୦.୫.୧୯୨୨ ତାରିଖ ସମାଜରେ ଗୋପବନ୍ଧୁ କନିକା ଅତ୍ୟାଗ୍ରର କାହାଣୀ ପ୍ରକାଶ କଲେ । ପରେ "ବନ୍ଦୀର ଆତ୍ମକଥା"ରେ ଗୋପବନ୍ଧୁ କେତେ ବିକଳ ହୋଇ କନିକାର ଅତ୍ୟାଗ୍ରର କାହାଣୀ ବର୍ଣ୍ଣନା କରିଥିଲେ । ତାହା ଏହିପରି–

*ଦୁଃଖିନୀ କନିକା କରୁଣ କୁହାଟ,*
*ଲାଗେ ଯେହ୍ନେ ଭେଦି ବିଲ ବନ ପାଟ ।*
*ସାଳନ୍ଦୀ ସଲିଳେ ପ୍ରତିଧ୍ୱନି ତାନେ,*
*କୁଳିଶ ନିନାଦ ବାଜଇ ମୋ କାନେ ।*
*ଉତ୍ତର କନିକା ଚିର ପ୍ରତିବେଶୀ,*
*କନିକା ଦୁଃଖ କି କହିବି ବିଶେଷି ।*
*ଜାଣିଛ, ଶୁଣିଛ ସବୁ ବିତପାତ,*
*ପଡ଼ୋଶୀ ସେନେହେ ସହିଛି ଆଘାତ ।*
*ତ୍ରାସିତ କନିକା ପ୍ରଜାପତି ସଦା,*
*ରଖିଥିବ ଭାଇ ସୋଦର ଶରଧା ।*
*କନିକା ଯିବାକୁ ବାଟ ଉଦରଖ,*
*ଥାନ୍ତା ଯେବେ ମୋର ବିହଙ୍ଗମ ପକ୍ଷ ।*
*ଉଡ଼ିଯାଇ ଦେଖି ଆସିଥାନ୍ତି ଥରେ,*
*କନିକା ପ୍ରଜାଙ୍କୁ ରିକ୍ତ ଭଙ୍ଗା ଘରେ ।*
*ଆଉଁଶି ପିଠିର ପ୍ରହାର ପରାସ,*
*ହରି ପାଇଥାନ୍ତି ପରାଣେ ଆଶ୍ୱାସ ।*
*ପତରପୁରର ସର ସନ୍ନିଧାନେ,*
*ମଲା ପ୍ରଜାବେନି ଯହିଁ ଅଗ୍ନିବାଣେ ।*
*ନିରୀହ ନିର୍ଦ୍ଦୋଷ ପବିତ୍ର ଶୋଣିତ,*
*କରିଛି କନିକା ଭୂମି ଯହିଁ ସିକ୍ତ ।*
*ଯମଦୂତ ପ୍ରାୟେ କ୍ରୁର ରାଜଥାଟ,*
*ବୁଲନ୍ତି ଚୌଦିଗେ ଗ୍ରାମ ହାଟବାଟ ।*
*ଲୁଟନ୍ତି ପରଜା ଘର ବାଡ଼ି କ୍ଷେତ,*
*ମାରନ୍ତି ଗୁପୁଡ଼ା କାହାକୁ ବା ବେତ;*
*କୁଳାଙ୍ଗନା ପରେ ଘୋର ଆକ୍ରମଣ,*
*ବିକଳେ ବିଧୁରା କରଇ ରୋଦନ ।*
*କନିକାର ରାଜଧାନୀ ଚଉପାଶେ,*
*ପ୍ରେତ ଆତ୍ମା ବେନି ଉଡ଼ଇ ଆକାଶେ ।*
*ଶୁଭେ ଚଉଦିଗେ କାତର ଚିତ୍କାର,*
*ପଳାଏ ପରଜା ଛାଡ଼ି ଘରଦ୍ୱାର ।*
*ପଥେ ଗର୍ଭିଣୀର ଭୟେ ଗର୍ଭସ୍ରାବ,*
*ଉଠଇ ଗୋଗଷ୍ଠେ ବିକଟାଳ ରାବ ।*
*ମହା ବିପର୍ଯ୍ୟୟ ମହା ବିଭୀଷିକା,*
*କମ୍ପେ ମହାତଙ୍କେ ଦୁଃଖିନୀ କନିକା ।"*

ଜାତୀୟ କବି ବାଞ୍ଛାନିଧି ମହାନ୍ତିଙ୍କର କନିକା ଅତ୍ୟାଗ୍ରର ସଂପର୍କରେ ଗୀତଟିଏ ଏଠାରେ ଉଲ୍ଲେଖ କରାଯାଇପାରେ ।

*"କେତେଦିନ ଆଉ ଦୁଃଖିନୀ କନିକା*
*ଅନୀତି ଯାତନା ସହିବ,*
*ଦୁଃଖ ସହିବାକୁ ଦୁଃଖିନୀ ଲଲାଟେ*
*ଲିହିଥିଲା କିବା ଦଇବ ।*
*କର ଦେଇ ଦେଇ ସାରିଛି ସମ୍ବଳ*
*ମାଡ଼ ଖାଇ ଖାଇ ହରାଇଛି ବଳ ।*
*ଆହା ବୋଲିବାକୁ ସାହା କେହି ନାହିଁ*
*କାହା ଆଗେ ଦୁଃଖ କହିବ ।*
*ପଞ୍ଜାବ କାହାଣୀ ଶୁଣୁଥିଲ କାନେ*
*କନିକାର ଲୀଳା ଦେଖୁଛ ନୟନେ*
*ଶତ ଅତ୍ୟାଗ୍ରର କନିକାର ତୁଲେ*
*ପଞ୍ଜାବ କି ସରି ହୋଇବ ?*
*ତା ଦୁଃଖ ଫେଡ଼ିବା ପାଇଁ ଗୋପବନ୍ଧୁ*
*ଉତ୍କଳର ପ୍ରାଣ ଦୀନଜନ ବନ୍ଧୁ*
*ବରିନେଲେ ଦୀର୍ଘ କାରାଗାର ଦଣ୍ଡ*
*ନାହିଁ କେହି ଏହା ହେଜିବ ।"*

କନିକା ଅତ୍ୟାଗ୍ରର କାହାଣୀ 'ସମାଜ'ରେ ପ୍ରକାଶିତ ହେବାରୁ ଗୋପବନ୍ଧୁ ନାମରେ ମାନହାନି ମକଦ୍ଦମା ହେଲା । କନିକାରେ ୧୪୪ ଧାରା ଜାରି କରାଗଲା । କନିକା ଲୋକଙ୍କର ଦୁର୍ଦ୍ଦଶା ସହିନପାରି ଯୁବକ ନେତା ଯଦୁମଣି ଆଇନ ଅମାନ୍ୟ କରି ଜେଲ୍‌ଦଣ୍ଡ ଭୋଗ କଲେ । ତାଙ୍କ ସହିତ ଜେଲଦଣ୍ଡ ପାଇଲେ ଭାଗିରଥୀ ମହାପାତ୍ର, ଅଟଳବିହାରୀ ଆଗ୍ରାର୍ଯ୍ୟ, ଏକ୍ରାମ ରସୁଲ ଓ ପଣ୍ଡିତ ନୀଳକଣ୍ଠ । ଅସହଯୋଗ ଆନ୍ଦୋଳନଠାରୁ

କନିକାବିଷୟ ଅଧିକ ରାଜଦ୍ରୋହ ସୂଚକ ହୋଇଗଲା । ରାଜାଙ୍କର ଶତ ବାଧା ସତ୍ତ୍ୱେ ଯଦୁମଣି ମଙ୍ଗରାଜ, ବାବାଜୀ ରାମଦାସ, ମଧୁସୂଦନ ପଟ୍ଟନାୟକ, ଅଟଳ ବିହାରୀ ଆଗ୍ରର୍ଯ୍ୟ କନିକା ଇଲାକା ଭିତରେ ପ୍ରବେଶ କରି ଚରମ ଦେଶପ୍ରେମ ଏବଂ ଅପୂର୍ବ ସାହସିକତା ପରିଚୟ ଦେଇଥିଲେ ।

୧୯୨୧ ସାଲରେ ଗୋପବନ୍ଧୁଙ୍କ ନେତୃତ୍ୱରେ ବିଧିବଦ୍ଧ ଭାବରେ କଂଗ୍ରେସ ଅନୁଷ୍ଠାନ ଓଡ଼ିଶାରେ ଗଠନ କରାଗଲା । ବିଭିନ୍ନ ଅଂଚଳରେ କର୍ମୀ ସଂଗ୍ରହ କରିବା ପାଇଁ ଗୋପବନ୍ଧୁ ଓଡ଼ିଶାରେ ଭ୍ରମଣ କରିବାକୁ ଲାଗିଲେ । ଏପ୍ରିଲ ମାସ ବାର ତାରିଖରେ ଗୋପବନ୍ଧୁ କେନ୍ଦ୍ରାପଡ଼ାଠାରେ କଂଗ୍ରେସ ସଭାର ଆୟୋଜନ କରି ସ୍ୱଦେଶ ଆନ୍ଦୋଳନ ବିଷୟରେ ବୁଝାଇଥିଲେ । ତତ୍‌କାଳୀନ କେନ୍ଦ୍ରାପଡ଼ା ସବ୍‌ଡ଼ିଭିଜନର କଂଗ୍ରେସ ପ୍ରଚାର ଭାର ତରୁଣ ନେତା ଯଦୁମଣି ମଙ୍ଗରାଜଙ୍କ ଉପରେ ନ୍ୟସ୍ତ କରାଯାଇଥିଲା । ଯଦୁମଣିଙ୍କୁ ସହଯୋଗ କଲେ ସ୍ଥାନୀୟକର୍ମୀ ବାଞ୍ଛାନିଧି ମହାନ୍ତି ଏବଂ ଶ୍ରୀଧର ସାହୁ । କେନ୍ଦ୍ରାପଡ଼ା ଅଞ୍ଚଳରେ ଧୂମାତ୍ - ଇନ୍ଦୁପୁର ଗ୍ରାମ ଦୁଇଟି ଥିଲା ଯଦୁମଣି ମଙ୍ଗରାଜଙ୍କର ରାଜନୈତିକ ଜୀବନର ପ୍ରିୟ କର୍ମସ୍ଥଳୀ। ୧୯୨୧ ମସିହାଠାରୁ ୧୯୪୨ ସାଲ ଭାରତ ଛାଡ଼ ଆନ୍ଦୋଳନ ପର୍ଯ୍ୟନ୍ତ ଶ୍ରୀଯୁକ୍ତ ମଙ୍ଗରାଜ ଏହି ଗ୍ରାମକୁ ବାରମ୍ବାର ଆସିଛନ୍ତି ଏବଂ ନିଜର ଓଜସ୍ୱିନୀ ବାଣୀ ଓ ଉଦ୍ଦୀପନାମୟ ବକ୍ତୃତାରେ ଅଗଣିତ ଦେଶବାସୀଙ୍କୁ ଉତ୍ପାଦିତ କରିଦେଇଛନ୍ତି। ଗାନ୍ଧିଜୀଙ୍କ ପଦଯାତ୍ରା କାଳରେ ୧୯୩୪ ସାଲରେ ଗାନ୍ଧିଜୀ ଆସିଥିଲେ ଧୂମାତ୍ ଗାମକୁ। ଗାନ୍ଧିଜୀଙ୍କ ଆଗମନରେ ନବଜାଗରଣର ବାର୍ତ୍ତା ପୁରପଲ୍ଲୀରେ ତୋଫାନ ପରି ବ୍ୟାପ୍ତ ହେଉଥାଏ । ସେତେବେଳେ ସକ୍ରିୟ କଂଗ୍ରେସକର୍ମୀ ହିସାବରେ ଗାନ୍ଧିଜୀଙ୍କ ଗହଣରେ ଥିଲେ ଯଦୁମଣି ମଙ୍ଗରାଜ । ତାଙ୍କ ସହିତ ଥିଲେ ସୁନାମଧନ୍ୟ ବିନୋଦ କାନୁନ୍‌ଗୋ, ଜଗମୋହନ ରାଉତରାୟ, ନଟବର ଜଗଦେବ, ନାରାୟଣ ଚନ୍ଦ୍ର ଦାଶ ପ୍ରଭୃତି କଂଗ୍ରେସ କର୍ମୀଗଣ।

୧୯୩୦ ମସିହାରେ ଗାନ୍ଧିଜୀ ଆରମ୍ଭ କଲେ ଦେଶବ୍ୟାପୀ "ଲବଣ ସତ୍ୟାଗ୍ରହ" । ଗାନ୍ଧିଜୀ ସାବରମତୀ ଆଶ୍ରମରୁ ବାହାରି ଗୁଜରାଟର ଦାଣ୍ଡିଠାରେ ଏପ୍ରିଲମାସ ଛଅ ତାରିଖରେ ଲବଣ ଆଇନ ଭଙ୍ଗ କରିବେ ବୋଲି ସ୍ଥିର ହୋଇଥାଏ । ଏଣେ ଓଡ଼ିଶାରେ ବାଲେଶ୍ୱର ସଦର ଥାନାର ଇଞ୍ଚୁଡ଼ିରେ ଲବଣ ଆଇନ ଅମାନ୍ୟ କରିବାପାଇଁ ସ୍ଥିର କରାଗଲା, ପୁରପଲ୍ଲୀରେ ଏହି ସମ୍ବାଦ ବିଜୁଳିର ଝଲକ ପରି ଖେଳିଗଲା । ଆନ୍ଦୋଳନ ପାଇଁ ନିଷ୍ଠାପର ସତ୍ୟାଗ୍ରହୀ ଏବଂ କର୍ମୀ ଆବଶ୍ୟକ । ସଙ୍ଘ ବ୍ୟତୀରେକେ ଏହା କେବେହେଲେ ସମ୍ଭବ ନୁହେଁ। ଇଂରେଜ ସରକାର ଆନ୍ଦୋଳନକୁ ଦବାଇ ଦେବାପାଇଁ ସକଳ ପଦକ୍ଷେପ ଗ୍ରହଣ କଲେ । କଟକ ସହରରେ କୌଣସି ସଭାରେ ଭାଷଣ ନ ଦେବାପାଇଁ ଯଦୁମଣି ମଙ୍ଗରାଜଙ୍କ ଉପରେ ୧୪୪ ଧାରା ଜାରି କରାଗଲା । ତାଙ୍କ ସହିତ ଗୋପବନ୍ଧୁ ଚୌଧୁରୀ, ଭାଗିରଥୀ ମହାପାତ୍ର, ଅଟଳ ବିହାରୀ ଆଗ୍ରର୍ଯ୍ୟ, ପ୍ରାଣକୃଷ୍ଣ ପ୍ରତିହାରୀ, ନବକୃଷ୍ଣ ଚୌଧୁରୀ, ରାଜକୃଷ୍ଣ ବୋଷ ମଧ ଏହି ଆଇନର ଶିକାର ହେଲେ ।

ଦେଶର ସ୍ୱାଧୀନତା ସଂଗ୍ରାମରେ ଝାସଦେଇ ଯଦୁମଣି ଯେପରି ବହୁ କଷ୍ଟ ସ୍ୱୀକାର କରିଥିଲେ, ଓଡ଼ିଆଭାଷୀ ଅଂଚଳର ଏକତ୍ରିକରଣ ପାଇଁ ମଧ ତାଙ୍କର ଭୂମିକା ଥିଲା ଅତ୍ୟନ୍ତ ଉଲ୍ଲେଖଯୋଗ୍ୟ । ବିଚ୍ଛିନ୍ନ ଅଞ୍ଚଳରେ ଓଡ଼ିଆ ସଂସ୍କୃତି ଲୋପ ହୋଇଯାଉଥିଲା ଏବଂ ଶକ୍ତିଶାଳୀ ଓଡ଼ିଆଲୋକେ ମାତୃଭାଷା ଭୁଲିଯାଇ ନିଜକୁ ଓଡ଼ିଆ ବୋଲି ପରିଚୟ ଦେବାକୁ ଲଜ୍ଜା ଅନୁଭବ କରୁଥିଲେ । ଏହିପରି ଜଣେ ଓଡ଼ିଆ ବୀରଥିଲେ ମେଦିନୀପୁର ଅଞ୍ଚଳର ବାରିଷ୍ଟର ବୀରେନ୍ଦ୍ର ସାସମଲ । ତାଙ୍କର ଓଡ଼ିଆ ବିରୋଧୀଭାବ ଯୋଗୁ ବଙ୍ଗବାସୀ ତାଙ୍କୁ ଦେଶପ୍ରାଣ ଉପାଧିରେ ସମ୍ମାନିତ କରିଥିଲେ। ସେ କହୁଥିଲେ ମୋର ଗୋସେଇଁମା ଓଡିଆଣୀ ଥିଲେ ମୁଁ କିନ୍ତୁ ଓଡ଼ିଆ ହୋଇ ରହିନାହିଁ।" ଯଦୁମଣି ମେଦିନୀପୁରରେ ଓଡ଼ିଶା ମିଶ୍ରଣ ସପକ୍ଷରେ ପ୍ରଚାର କରି ଆନ୍ଦୋଳନ ଚଳାଇଲେ। ପ୍ରତିପକ୍ଷ ଗୁଣ୍ଡାମାନେ ତାଙ୍କୁ ଆକ୍ରମଣ କରି ମୁଣ୍ଡ ଫଟାଇଦେଲେ। ତଥାପି ଯଦୁମଣି ଓହରି ଆସି ନଥିଲେ। ଜୀବନର ଉତ୍ତରକାଳରେ ସ୍ୱାଧୀନ

ଭାରତରେ ୧୯୫୫ ସାଲରେ ଷଡେଇକଳା ଖରସୁଆଁ ଆନ୍ଦୋଳନରେ ଯଦୁମଣିଙ୍କର ନେତୃତ୍ୱ ଅବିସ୍ମରଣୀୟ। ସ୍ୱାଧୀନତା ପୂର୍ବକାଳରେ କଂଗ୍ରେସ ମନ୍ତ୍ରିମଣ୍ଡଳରେ ସେ କିଛିକାଳ ପାର୍ଲିଆମେଣ୍ଟାରୀ ସେକ୍ରେଟାରୀ ଥାଇ ନିଜର ପ୍ରଶାସନିକ ଦକ୍ଷତାର ପରିଚୟ ଦେଇଥିଲେ। ସ୍ୱାଧୀନତା ପରେ ମଧ୍ୟ କିଛିକାଳ ପାଇଁ ଓଡ଼ିଆ ବିଧାନସଭାର ଉପବାଚସ୍ପତି ଦାୟିତ୍ୱ ତୁଲାଇଥିଲେ।

ଯଦୁମଣି ମଙ୍ଗରାଜ ଥିଲେ ନିର୍ଭୀକ ନେତା ଓ ପ୍ରଚଣ୍ଡ ଦେଶପ୍ରେମୀ। କାପୁରୁଷ ପରି ଜୀବନଧାରଣ କରିବାକୁ ସେ ଘୃଣା କରୁଥିଲେ। ସେ ଥିଲେ ତରୁଣ ସମାଜର ପ୍ରେରଣା ଓ ଉତ୍ସାହର ବତିଖୁଣ୍ଟ। ୧୯୬୪ ମସିହା ଏପ୍ରିଲ ଦୁଇ ତାରିଖ ଦିନ ଏହି ସଂଗ୍ରାମ ବୀରପୁରୁଷ ଇହଲୀଳା ସାଙ୍ଗ କରିଥିଲେ। ଶୁଣାଯାଏ ଯେ ହଜାରୀବାଗ ଜେଲରେ କାରାବାସ କାଳରେ ସେ ଏକ ରାଜନୈତିକ ଉପନ୍ୟାସ ଲେଖିଥିଲେ। ସେ ନିଜ ବିଷୟରେ କିଛି ଲେଖିଥିଲେ କି ନାହିଁ, ଜଣାନାହିଁ। ତାଙ୍କ ସଂପର୍କରେ ଚିଠିପତ୍ର, ଏହି ରାଜନୈତିକ ଉପନ୍ୟାସ ଏବଂ ବିଧାନସଭା ଭିତରେ ଓ ବାହାରେ ତାଙ୍କ ପ୍ରଦତ୍ତ ଭାଷଣଗୁଡିକ ସଂଗ୍ରହ କରାଯାଇ ଯେବେ ପ୍ରକାଶିତ ହୁଅନ୍ତା, ତେବେ ତାଙ୍କର ଅମର ସ୍ମୃତି ପ୍ରତି କିଞ୍ଚିତ ସଶ୍ରଦ୍ଧ ବିଗ୍ରହ କରାଯାଇ ପାରନ୍ତା ବୋଲି ଆଶା କରାଯାଏ।

କନିକା ରୋଡ୍
କଟକ-୮

• • • •

# ଯଦୁମଣି : ଏକ ବହୁମୁଖୀ ପ୍ରତିଭା

ହଳଧର ରାଉତ

ଯଦୁମଣି ମଙ୍ଗରାଜଙ୍କର ଜନ୍ମ ହୋଇଥିଲା ଏବେଠାରୁ ୧୦୦ ବର୍ଷତଳେ କେନ୍ଦ୍ରାପଡ଼ା ସବ୍‌ଡ଼ିଭିଜନ୍‌ର (ତତ୍‌କାଳୀନ କଟକ ଜିଲ୍ଲା) କରିଲୋପାଟଣାରେ। ତାଙ୍କ ବାପା ଥିଲେ କନିକା ରାଜାଙ୍କର ଜନୈକ କର୍ମଚାରୀ। ତେଣୁ ଯଦୁମଣିଙ୍କର ମଧ୍ୟଇଂରାଜୀ ପର୍ଯ୍ୟନ୍ତ ଶିକ୍ଷା କନିକାର ଗଞ୍ଜା ମାଇନର ସ୍କୁଲରେ ହୋଇଥିଲା। ସେଇବେଳୁ ତାଙ୍କର ପ୍ରତିଭାର ବିକାଶ ଆରମ୍ଭ ହୁଏ । ୧୯୦୭ ମସିହାର ବ୍ରାହ୍ମଣୀ ନଦୀର ପ୍ରବଳ ବନ୍ୟାବେଳେ ଗୋପବନ୍ଧୁ, ଗୋଦାବରୀଶ ଇତ୍ୟାଦି ଆଳି, କନିକା ଅଞ୍ଚଳକୁ ଡ଼ଙ୍ଗାରେ ବନ୍ୟା ସାହାଯ୍ୟ ନେଇ ଯାଉଥିଲେ। ତଳଆଡୁ କଲିକତାରୁ କେତେକ ପାଦ୍ରି ମଧ୍ୟ ଏଇ କାମ ପାଇଁ ଗ୍ରନ୍ଦବାଲି ବାଟେ ଆସିଥିଲେ। ପାଦ୍ରୀମାନେ ଗଞ୍ଜାରେ ପହଞ୍ଚି ମାଇନର୍ ସ୍କୁଲର ପ୍ରଧାନ ଶିକ୍ଷକଙ୍କୁ କହିଲେ ସେମାନଙ୍କ ସଙ୍ଗେ ଜଣେ ଛାତ୍ର ପଠାଇବାକୁ ଯେ କି ବନ୍ୟା ସାହାଯ୍ୟ ବିତରଣରେ ସାହାଯ୍ୟ କରିବ। ପ୍ରଧାନ ଶିକ୍ଷକ ଯଦୁମଣିଙ୍କୁ ପଠାଇଲେ। ବ୍ରାହ୍ମଣୀ ଖରସୁଆଁ ନଦୀର ମିଳନ ସ୍ଥଳରେ ଉଭୟ ସତ୍ୟବାଦୀ ସାହାଯ୍ୟ ଗୋଷ୍ଠୀଙ୍କର ଡ଼ଙ୍ଗା ଓ ପାଦ୍ରୀମାନଙ୍କର ଡ଼ଙ୍ଗା ନିକଟତର ହୋଇଗଲା। ଅଲଗା ଅଲଗା ନଯାଇ ଉଭୟ ଦଳ ଏକତ୍ର ମିଶି ସାହାଯ୍ୟ ବଣ୍ଟନ ପାଇଁ ସ୍ଥିର କରି ଚାଲିଲେ ଗ୍ରାମେ ଗ୍ରାମେ ବୁଲି କାର୍ଯ୍ୟ କରିବାକୁ। ସେହି ସୁଯୋଗରେ କିଶୋର ଯଦୁମଣିଙ୍କର ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶଙ୍କ ସଙ୍ଗେ ପ୍ରଥମ ପରିଚୟ ହୁଏ। ପରେ ସେ ପ୍ୟାରୀମୋହନ ଏକାଡ଼େମୀ ହାଇସ୍କୁଲ ଓ ରେଭେନ୍‌ସା କଲେଜରେ ପଢିଲେ। କଟକରେ ରହିଲେ। ତତ୍‌କାଳୀନ ଓଡ଼ିଶାର ବିଶିଷ୍ଟ ନେତାମାନଙ୍କ ସମ୍ପର୍କରେ ଆସିଲେ। ସେ ମଧୁବାବୁ ଓ ଗୋପବନ୍ଧୁଙ୍କ ସହିତ ବିଶେଷ ଭାବରେ ସଂପୃକ୍ତ ଥିଲେ। ଛାତ୍ରାବସ୍ଥାରେ ସେ ପ୍ରାୟ ସବୁ ସମାଜସେବା କାର୍ଯ୍ୟରେ ଅଂଶ ନେଉଥିଲେ।

ତାଙ୍କର କଲେଜ ପଢା ସମୟରେ ୧୯୨୧ ମସିହାରେ ଗୋପବନ୍ଧୁ ଦାସଙ୍କ ନେତୃତ୍ୱରେ ଓଡ଼ିଶାରେ କଂଗ୍ରେସର ଇଂରେଜ ସରକାର ବିରୁଦ୍ଧରେ ଅସହଯୋଗ ଆନ୍ଦୋଳନ ଆରମ୍ଭ ହେଲା ବହୁ କଲେଜ, ସ୍କୁଲ ଛାତ୍ର ପାଠପଢା ଛାଡ଼ି ଏହି ବିପ୍ଳବରେ ଝାସଦେଲେ। ସେମାନଙ୍କ ମଧ୍ୟରେ ଯଦୁମଣି ଥିଲେ ଅନ୍ୟତମ। ଏଇଠୁ ତାଙ୍କର ବୈପ୍ଳବିକ ଜୀବନ ଆରମ୍ଭ। ଏଥିପାଇଁ ସେ କାରାବରଣ କରିଥିଲେ। ଏହା ପରେ ପରେ ୧୯୨୨-୧୯୨୩ ରେ କନିକା ପ୍ରଜା ଆନ୍ଦୋଳନ ହୁଏ। ଏଥିରେ ଗୋପବନ୍ଧୁ ଦାସ, ହରେକୃଷ୍ଣ ମହତାବ ଓ ଯଦୁମଣି ମଙ୍ଗରାଜ ଇତ୍ୟାଦି ସକ୍ରିୟ ଭାଗନେଇଥିଲେ। ଯଦୁମଣି ପ୍ରଜାମାନଙ୍କ ମଧ୍ୟରେ ଆନ୍ଦୋଳନକୁ ବ୍ୟାପକ କରାଇଥିଲେ। ତାଙ୍କର ବାପା କନିକା ରାଜକର୍ମଚାରୀ ଥିଲେ ମଧ୍ୟ ସେ ବାପାଙ୍କ ଉପଦେଶକୁ ଭ୍ରୂକ୍ଷେପ ନକରି ନିର୍ଭୀକ ଭାବରେ ରାଜାଙ୍କ ବିରୁଦ୍ଧରେ ଆନ୍ଦୋଳନ ଚଳାଇଥିଲେ। ଉତ୍କଳ ସମ୍ମିଳନୀର ସେ ଜଣେ ଦକ୍ଷ କର୍ମୀ ଥିଲେ ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ଓ ପ୍ରଦେଶ ଗଠନ ପାଇଁ ବରାବର କାର୍ଯ୍ୟକରି ଆସିଥିଲେ। ମଣ୍ଟଫୋର୍ଡ ରିଫର୍ମରେ ଓଡ଼ିଶାକୁ ଏକ ସବ୍-ପ୍ରୋଭିନ୍‌ସ କରିବାକୁ ସୁପାରିଶ୍ ଥିଲା ଓ ମଧୁବାବୁ ଏହାକୁ ଗ୍ରହଣ କରିବାକୁ ରାଜି ହୋଇଥିଲେ ଓ ବୁଝାଇଲେ "କାନ୍ଦୁଥିବା, ଯାହା ପାଉଥିବା ବାନ୍ଧୁଥିବା"। ଯଦୁମଣି ତାଙ୍କର ଅତି ପ୍ରିୟ ଥିଲେ ମଧ୍ୟ ଏ ପ୍ରସ୍ତାବ ବିରୁଦ୍ଧରେ ତୀବ୍ର ପ୍ରତିକ୍ରିୟା ପ୍ରକାଶ କରିଥିଲେ। ସେହିପରି ମଧୁବାବୁ ଇଂରେଜ ସରକାର ଅଧୀନରେ ବିହାର-ଓଡ଼ିଶା ପ୍ରଦେଶର ଜନୈକ ମନ୍ତ୍ରୀ ହେବାରୁ, ଯଦୁମଣି ଏହା ବିରୁଦ୍ଧରେ ଘୋର ପ୍ରତିବାଦ କରିଥିଲେ। ତତ୍‌କାଳୀନ ଓଡ଼ିଶାର ଅଦ୍ୱିତୀୟ ନେତା ମଧୁବାବୁଙ୍କୁ ସମସ୍ତେ ଭୟ

କରୁଥିବାବେଳେ ସ୍ପଷ୍ଟବାଦୀ, ବିପ୍ଳବୀ ଯଦୁମଣି ନିର୍ଭୀକ ଭାବରେ ମଧୁବାବୁଙ୍କୁ ବିରୋଧ କରିଥିଲେ । ମେଦିନୀପୁରଠାରେ ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ସଭାରେ ପଣ୍ଡିତ ଗୋଦାବରୀଶଙ୍କ ସହିତ ସେ ଉପସ୍ଥିତ ଥିଲେ ସେଠାର ଓଡ଼ିଆ ବିରୋଧୀ ନେତା ବାରିଷ୍ଟର ବୀରେନ୍ଦ୍ର ସାସମଲ ଗୁଣ୍ଡା ଲଗାଇ ଗୋଦାବରୀଶଙ୍କ ଉପରକୁ ଟେକା ପକାଇଲେ । ଯଦୁମଣି ଟେକାକୁ ଧରିପକାଇ କହିଥିଲେ "ବୀରେନ୍ଦ୍ର ସାସମଲ ମନେରଖ ଏ ଟେକା ଓଡ଼ିଶା ମ୍ୟୁଜିୟମରେ ତମର ଅସଭ୍ୟତାର ଚିହ୍ନସ୍ୱରୂପ ରହିବ" ।

୧୯୨୮ ମସିହା ଡ଼ିସେମ୍ବର ମାସରେ ପଣ୍ଡିତ ମୋତିଲାଲ ନେହେରୁଙ୍କ ସଭାପତିତ୍ୱରେ କଲିକତାରେ ବସିଥିବା ସର୍ବଦଳୀୟ ସମ୍ମିଳନୀରେ ଓଡ଼ିଶା ପ୍ରଦେଶ ଗଠନ ପ୍ରଶ୍ନକୁ ଏଡ଼ାଇ ଦିଆଗଲା । ସଭାପତି ମଧ ଓଡ଼ିଆ ପ୍ରତିନିଧିମାନଙ୍କ ପ୍ରତି ତାଚ୍ଛଲ୍ୟ ବ୍ୟବହାର ଦେଖାଇଥିଲେ । ଯଦୁମଣି ଏହାର ପ୍ରତିବାଦ କରିବାପାଇଁ କଲିକତାରେ ଥିବା ଓଡ଼ିଆମାନଙ୍କୁ ରାତାରାତି ସଂଗଠିତ କରି ଏକ ଶୋଭାଯାତ୍ରାରେ ଯାଇ ସଭାମଣ୍ଡପ ଆଡ଼କୁ ମାଡ଼ିଗଲେ । ତତ୍କାଳୀନ କଂଗ୍ରେସ ଯୁବନେତା ଜବାହରଲାଲ ନେହେରୁ ଓ ସୁଭାଷ ଚନ୍ଦ୍ର ବୋଷ ଏଥିରେ ଯଦୁମଣିଙ୍କ ସହ ମିଳାମିଶା ସମାଧାନ କଲେ । ଓଡ଼ିଶା ପ୍ରଶ୍ନ ସଭାର କାର୍ଯ୍ୟସୂଚୀରେ ସ୍ଥାନ ପାଇଲା । ଓଡ଼ିଶା ସୀମା ନିର୍ଦ୍ଧାରଣ ପାଇଁ ଆସିଥିବା ଓଡ଼େନେଲ୍ କମିଟି ଆଗରେ ସେ ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ପାଇଁ ବହୁ ଅକାଟ୍ୟ ଦଲିଲ୍ ଦର୍ଶାଇଥିଲେ ।

ଓଡ଼ିଶାର ଶୋଷିତ ଓ ନିଷ୍ପେଷିତ କୃଷକ ଏବଂ ଶ୍ରମିକମାନଙ୍କର ରାଜା, ଜମିଦାରମାନଙ୍କ ଅତ୍ୟାଗ୍ରରରୁ ମୁକ୍ତ ପାଇଁ ସେ ବରାବର ଆନ୍ଦୋଳନ କରିଥିଲେ । ରାଜା, ଜମିଦାରମାନଙ୍କୁ ସେ ନିର୍ଭୀକ ଭାବରେ ଏପରି ବ୍ୟଙ୍ଗ, ବିଦ୍ରୁପ ଭାଷାରେ କହୁଥିବାରୁ ସେମାନେ ଯଦୁମଣିଙ୍କୁ ମନରେ ଭୟ କରୁଥିଲେ । ଥରେ ହରେକୃଷ୍ଣ ମହତାବ ଆଳି ଅଞ୍ଚଳରେ ଏକ କୃଷକ ସଭା କରୁଥିଲେ । ଆଳିର ତତ୍କାଳୀନ ରାଜା ବ୍ରଜସୁନ୍ଦର ଦେବ ମହତାବଙ୍କୁ ଏକ ପତ୍ର ପଠାଇ ଜଣାଇଥିଲେ "ତୁମେ ପ୍ରଜାମାନଙ୍କ ପାଇଁ ସଭା କରୁଛ, ତା ସାଙ୍ଗରେ ଆମକଥା ମଧ ବୁଝିବ; କିନ୍ତୁ ଯଦୁମଣି ମଙ୍ଗରାଜଙ୍କୁ କେଭେଁ ସାଙ୍ଗରେ ଆଣିବ ନାହିଁ ।"

୧୯୩୦ ମସିହାର ଅଇନ୍ ଅମାନ୍ୟ ଆନ୍ଦୋଳନରେ ସେ କଂଗ୍ରେସ ତରଫରୁ ଇଂରେଜ ସରକାର ବିରୁଦ୍ଧରେ ସକ୍ରିୟ ଭାବେ କାର୍ଯ୍ୟ କରି ଅନ୍ୟାନ୍ୟ କଂଗ୍ରେସ ନେତା ଓ କର୍ମୀମାନଙ୍କ ସହ କାରାବରଣ କରିଥିଲେ । ତାଙ୍କର ସାଙ୍ଗଠନିକ ଦକ୍ଷତା ବହୁତ ଥିଲା । ସବୁପ୍ରକାର ସଭାରେ ଲୋକେ ତାଙ୍କ ଉପସ୍ଥିତିକୁ ଉତ୍କଣ୍ଠାର ସହ ଅପେକ୍ଷା କରିଥାନ୍ତି । ତାଙ୍କ ଭାଷଣର ଶୈଳୀ ଓ ଅଙ୍ଗଭଙ୍ଗୀ ସ୍ୱତନ୍ତ୍ର ଓ ସ୍ୱଭାବସିଦ୍ଧ ଯାହାକୁ "ମଙ୍ଗରାଜୀତାନ" ମଧ କୁହାଯାଉଥିଲା । ସେ କିଛିକାଳ କେନ୍ଦ୍ରାପଡ଼ା ଲୋକାଲବୋର୍ଡ ଚେୟାରମ୍ୟାନ୍ ହୋଇଥିଲେ ।।

୧୯୩୭ ମସିହା ବିଧାନସଭା ନିର୍ବାଚନରେ ସେ କଂଗ୍ରେସ ଦଳରୁ ପ୍ରାର୍ଥିଥାଇ ବହୁ ଅଧିକ ଭୋଟରେ ତାଙ୍କର ବିଧାନ ଦେୱାନ ବାହାଦୁର ଲକ୍ଷ୍ମୀଧର ମହାନ୍ତିଙ୍କୁ ପରାଜିତ କରି ଓଡ଼ିଶା ବିଧାନସଭାକୁ ନିର୍ବାଚନ ହୋଇଥିଲେ । ସେଇବର୍ଷ ବିଶ୍ୱନାଥ ଦାଶଙ୍କ କଂଗ୍ରେସ ମନ୍ତ୍ରୀମଣ୍ଡଳରେ ଯଦୁମଣି ଜନୈକ ପାର୍ଲାମେଣ୍ଟାରୀ ସେକ୍ରେଟାରୀ ହୋଇଥିଲେ ।

କଂଗ୍ରେସ ସହିତ ମତଭେଦ ଯୋଗୁ ସୁଭାଷ ଚନ୍ଦ୍ର ବୋଷ ଫରୱାର୍ଡ ବ୍ଲକ୍ ଗଢିଲେ । ଓଡ଼ିଶାରୁ ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ, ଯଦୁମଣି ମଙ୍ଗରାଜ, ଦିବାକର ପଟ୍ଟନାୟକ କଂଗ୍ରେସ ଛାଡ଼ି ସେଥିରେ ଯୋଗଦାନ କରିଥିଲେ । ବୋଷ ଦେଖିଲେ କେବଳ ଅହିଂସା ଦ୍ୱାରା ଇଂରେଜ ସରକାରକୁ ହଟାଇବା କଷ୍ଟକର ।

୧୯୪୧ରୁ ୧୯୪୪ ଯୁଦ୍ଧକାଳୀନ ଓଡ଼ିଶାରେ ପାରଳା ମିଳିତ ମନ୍ତ୍ରିମଣ୍ଡଳବେଳେ ସେ ବିଧାୟକ ଥିଲେ । ତାଙ୍କର କେତେକ ରାଜନୈତିକ ଶତ୍ରୁ ତାଙ୍କୁ ଅନେକ ମିଥ୍ୟା ମକଦ୍ଦମାରେ ଜଡ଼ିତ କରାଇଥିଲେ, ସେ କିନ୍ତୁ ପ୍ରତି ମକଦ୍ଦମାରେ ଜୟଯୁକ୍ତ ହୋଇଥିଲେ । ୧୯୫୬ ମସିହାରେ ଓଡ଼ିଶା ସୀମା ଆନ୍ଦୋଳନରେ ସେ ନେତୃତ୍ୱ ନେଇଥିଲେ ।

ପରିବର୍ତ୍ତିତ ପରିସ୍ଥିତିରେ ଡକ୍ଟର ହରେକୃଷ୍ଣ ମହତାବଙ୍କ ଅନୁରୋଧକ୍ରମେ ସେ ୧୯୫୭ ମସିହାରେ ପୁଣି କଂଗ୍ରେସକୁ ଫେରି ବଡ଼ଚଣା ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୋଇ ଓଡ଼ିଶା ବିଧାନସଭାରେ ଉପବାଚସ୍ପତି ହୋଇଥିଲେ ।

ସେ ଥିଲେ ଜଣେ ବହୁମୁଖୀ ପ୍ରତିଭାଧର ବ୍ୟକ୍ତି ।

**ନରିଲୋ, କେନ୍ଦ୍ରାପଡ଼ା**

• • • •

# ଓଡ଼ିଶାର ଅନ୍ୟତମ କୃତିପୁରୁଷ : ଯଦୁମଣି ମଙ୍ଗରାଜ

ଅଧ୍ୟାପକ ଦୁର୍ଗାଚରଣ କୁଅଁର

ଓଡ଼ିଶାରେ ସ୍ୱାଧୀନତା ଆନ୍ଦୋଳନର ଅନ୍ୟତମ କର୍ଣ୍ଣଧାର, ଅସାଧାରଣ ବାଗ୍ମୀ ଏବଂ ନିର୍ଭୀକ ଦେଶସେବକ ସ୍ୱର୍ଗତ ଯଦୁମଣି ମଙ୍ଗରାଜ ଆଜି ଓଡ଼ିଶାର ଜନମାନସରୁ ବିସ୍ମୃତପ୍ରାୟ । ପ୍ରାଗ୍ ସ୍ୱାଧୀନତା କାଳରେ ତଥା ଦେଶ ସ୍ୱାଧୀନ ହେବା ପରେ ଓଡ଼ିଶାର ଯେଉଁ କେତେଜଣ କୃତିସନ୍ତାନ ଦେଶସେବା ପାଇଁ ଆତ୍ମୋତ୍ସର୍ଗ କରିଥିଲେ ସେମାନଙ୍କ ମଧ୍ୟରେ ଯଦୁମଣି ମଙ୍ଗରାଜଙ୍କର ଏକ ବିଶିଷ୍ଟ ସ୍ଥାନ ରହିଛି । ତାଙ୍କର ନିର୍ଭୀକତା, ସ୍ପଷ୍ଟବାଦୀତା ଏବଂ ନିରଳସ ଦେଶସେବା ପାଇଁ ଲୋକେ ଆଦରରେ ତାଙ୍କୁ ରଏଲ୍ ଟାଇଗର ଅଫ୍ ଉତ୍କଳ ବୋଲି କହୁଥିଲେ ।

ଓଡ଼ିଶାର ଏହି କୃତିପୁରୁଷ ୧୮୯୪ ମସିହା ଜାନୁୟାରୀ ପହିଲା ତାରିଖରେ ବର୍ତ୍ତମାନର କେନ୍ଦ୍ରାପଡ଼ା ଜିଲ୍ଲା ଅନ୍ତର୍ଗତ କରିଲୋ ଗ୍ରାମରେ ଏକ ସମ୍ଭ୍ରାନ୍ତ ପରିବାରରେ ଜନ୍ମଗ୍ରହଣ କରିଥିଲେ । ଜଣେ ମେଧାବୀ ଛାତ୍ର ହିସାବରେ ତାଙ୍କର ସୁଖ୍ୟାତି ଥିଲା । ପ୍ରଥମ ଶ୍ରେଣୀରେ ମେଟ୍ରିକ ପାସ୍ କରି କଲେଜର ବିଜ୍ଞାନ ଶ୍ରେଣୀର ସେ ନାମ ଲେଖାଇଥିଲେ । ବିଜ୍ଞାନ ପ୍ରତି ତାଙ୍କର ଆଗ୍ରହ ଥିଲା ଓ କୃତିତ୍ୱର ସହିତ ସେ ବିଜ୍ଞାନରେ ସ୍ନାତକ ଡ଼ିଗ୍ରୀ ହାସଲ କରିଥିଲେ । ଛାତ୍ରଜୀବନରୁ ସେ ତାଙ୍କର ଅସାଧାରଣ ବାଗ୍ମୀତାର ପରିଚୟ ଦେଇଥିଲେ ଏବଂ ଦେଶର ସ୍ୱାଧୀନତା ସଂଗ୍ରାମ ପ୍ରତି ଆକୃଷ୍ଟ ହୋଇଥିଲେ । ୧୯୨୧ ସାଲରେ ଗାନ୍ଧିଜୀଙ୍କ ଆହ୍ୱାନରେ ପାଠପଢ଼ା ଛାଡ଼ି ଅସହଯୋଗ ଆନ୍ଦୋଳନରେ ଯୋଗଦେବା ଦରଠାରୁ ତାଙ୍କ ଜୀବନର ମୋଡ଼ ସଂପୂର୍ଣ୍ଣ ବଦଳି ଯାଇଥିଲା । ସେ ସମୟଠାରୁ ଦେଶ ସ୍ୱାଧିନ ହେବା ପର୍ଯ୍ୟନ୍ତ ଜଣେ ନିର୍ଭୀକ ସ୍ୱାଧୀନତା ସଂଗ୍ରାମୀ ଭାବେ ନିଜକୁ ସଂପୂର୍ଣ୍ଣ ଉତ୍ସର୍ଗ କରିଦେଇ ସେ ବହୁବାର କାରାବରଣ କରିଥିଲେ । ତାଙ୍କ ସମୟରେ ସେ ଥିଲେ ଜଣେ ଅସାଧାରଣ ବାଗ୍ମୀ । ଓଡ଼ିଆ, ବଙ୍ଗଳା, ହିନ୍ଦୀ ଓ ଇଂରାଜୀ ଭାଷାରେ ସେ ଅନର୍ଗଳ ବକ୍ତୃତା ଦେଇପାରୁଥିଲେ । ପୁରପଲ୍ଲୀରେ ଜାତୀୟ କଂଗ୍ରେସ ଓ ମହାତ୍ମା ଗାନ୍ଧୀଙ୍କ ବାର୍ତ୍ତା ପ୍ରଚାର କରି ଓଡ଼ିଶାରେ ସ୍ୱାଧୀନତା ଆନ୍ଦୋଳନକୁ ଆଗେଇନେବା ଦିଗରେ ତାଙ୍କର ଅବଦାନ ଅନସ୍ୱୀକାର୍ଯ୍ୟ । ତାଙ୍କର ଓଜସ୍ୱିନୀ ଭାଷଣ ଶୁଣିବା ପାଇଁ ସଭାମାନଙ୍କରେ ଅସମ୍ଭବ ଲୋକ ଭିଡ଼ ହେଉଥିଲା । ଲୋକଙ୍କୁ ହସାଇ, ମଜାଇ, ଚତାଇ ଉଦ୍‌ବୋଧିତ କରିବା ଦିଗରେ ତାଙ୍କ ଭଳି ବାଗ୍ମୀ ସେ ସମୟରେ କେହି ନଥିଲେ । କେଉଁଠାରେ ସଭା କରିବାକୁ ହେଲେ କେବଳ ମଙ୍ଗରାଜେ ଆସୁଥିବା ବିଷୟ ପ୍ରଚାର ହୋଇଗଲେ ସହସ୍ର ସହସ୍ର ସଂଖ୍ୟାର ଲୋକ ଆସି ରୁଣ୍ଡ ହୋଇଯାଉଥିଲେ । ମଙ୍ଗରାଜଙ୍କ ନିରଳସ ଦେଶସେବା, ନିର୍ଭୀକତା ଓ ବାଗ୍ମୀତା ପ୍ରତି ଶ୍ରଦ୍ଧାଞ୍ଜଳି ଜ୍ଞାପନ କରି ଜାତୀୟକବି ବୀରକିଶୋର ଲେଖିଥିଲେ,

*"ତରୁଣ ବୟସୁ ଥିଲେ ସେ ସାହସୀ*
*ସଂପଦେ ବିପଦେ ସଦା ରହି ଖୁସି*
*ନିର୍ଭୀକ ଚିତ୍ତରେ କହୁଥିଲେ କଥା*
*ଆନକୁ ହସାଇ ନିଜେ ନ ହସି*
*ଜାଲିଆନାବାଗ ଅନ୍ଧକୂପ ହତ୍ୟା*
*ଖେଳାଇଲା ଯେବେ ହାହାକାର ବାତ୍ୟା*
*ମହାତ୍ମା ଆହ୍ୱାନେ ସାଜିଲେ ସୈନିକ*
*ସ୍ୱାଧୀନତା ଯୁଦ୍ଧ ଶିବିରେ ଆସି ।*

*ତାଙ୍କ ଡାକଶୁଣି ଶତ ଶତ ଯୁବା*
*ସମର ପ୍ରାଙ୍ଗଣେ ହେଲେ ଆସି ଉଭା*
*ମରଣ ସମ୍ମୁଖେ ଛାତି ପତାଇଲେ*
*ଲଢିଲେ ପାଷାଣ କାରାରେ ପଶି ।*
*ପାରାବାରଠାରୁ ଦରବାର ଯାକେ*
*ଶଙ୍କି ଯାଉଥିଲେ ତାଙ୍କ ସିଂହଡ଼ାକେ*
*ଘୋର ଝଡ଼ ଘୋର ଝଂଜା ଭିତରେ ସେ*
*ଗତି କରୁଥିଲେ ନୋହି ଉଦାସୀ"।*

ଯଦୁମଣି ଉତ୍କଳଗୌରବ ମଧୁସୂଦନ ଓ ଉତ୍କଳମଣି ଗୋପବନ୍ଧୁଙ୍କର ଅତି ପ୍ରିୟଭାଜନ ଥିଲେ। ଯେଉଁ ଅନ୍ୟମାନେ କାର୍ଯ୍ୟ କରିବାକୁ ସାହସ କରୁନଥିଲେ ସେ ଦାୟିତ୍ୱ ଯୁବକ ଯଦୁମଣିଙ୍କ ଉପରେ ନ୍ୟସ୍ତ କରାଗଲେ ଅତି ନିର୍ଭୀକ ଭାବରେ ଚତୁରତାର ସହିତ ତାହା ସେ ସଂପାଦନ କରିପାରୁଥିଲେ। କଂଗ୍ରେସରେ ଥାଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଆନ୍ଦୋଳନର ଲକ୍ଷ୍ୟ ହାସଲ କରିବା ସୁବିଧାଜନକ ମନେ ନହେବାରୁ ଉତ୍କଳଗୌରବ ମଧୁସୂଦନ ଯେତେବେଳେ ଜାତୀୟ ଆନ୍ଦୋଳନରୁ ଓହରିଯାଇ ଉତ୍କଳ ସମ୍ମିଳନୀ ମାଧ୍ୟମରେ ସଂଗ୍ରାମ ଗ୍ରାଲୁରଖିବାର ନିଷ୍ପତ୍ତି ନେଲେ, ଯଦୁମଣି ମଙ୍ଗରାଜ ଉତ୍କଳମଣି ଗୋପବନ୍ଧୁଙ୍କ ସହିତ ରହି ସ୍ୱାଧୀନତା ସଂଗ୍ରାମରେ ସକ୍ରିୟ ଅଂଶଗ୍ରହଣ କରିଥିଲେ। ଏହା ସତ୍ତ୍ୱେ ଗୋପବନ୍ଧୁ କିମ୍ବା ଯଦୁମଣି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଆନ୍ଦୋଳନରୁ ନିବୃତ ହୋଇନଥିଲେ। ମେଦିନୀପୁରକୁ ଓଡ଼ିଶାରେ ମିଶାଇବା ପାଇଁ ଯେଉଁ ଆନ୍ଦୋଳନ ହୋଇଥିଲା ସେଥିରେ ଯଦୁମଣି ମଙ୍ଗରାଜ ଉଲ୍ଲେଖନୀୟ ଅଂଶଗ୍ରହଣ କରିଥିଲେ। ମେଦିନୀପୁରର ବିଶିଷ୍ଟ ଓଡିଆ ନେତା ବାରିଷ୍ଟର ବୀରେନ୍ଦ୍ର ସାସମଲ ପ୍ରଥମେ ମେଦିନୀପୁରକୁ ଓଡ଼ିଶାରେ ମିଶାଇବା ସପକ୍ଷରେ ଥିଲେ ବି ପରେ ମତ ପରିବର୍ତ୍ତନ କରି ମେଦିନୀପୁରକୁ ବଙ୍ଗଳାରେ ରଖିବା ଦିଗରେ ନେତୃତ୍ୱ ନେଲେ, ଯେଉଁଥିପାଇଁକି ବଙ୍ଗବାସୀମାନେ ତାଙ୍କୁ 'ଦେଶପ୍ରାଣ' ପଦବୀରେ ଭୂଷିତ କରିଥିଲେ। ଯଦୁମଣି ମଙ୍ଗରାଜ ମେଦିନୀପୁରର ଓଡ଼ିଆ ବହୁଳ ଅଞ୍ଚଳମାନଙ୍କରେ ସଭାସମିତି କରି ତାଙ୍କର ଓଜସ୍ୱିନୀ ଭାଷଣରେ ଓଡ଼ିଆ ଭାଷୀମାନଙ୍କୁ ଓଡ଼ିଆ ସହିତ ମିଶ୍ରଣ ପାଇଁ ଆହ୍ୱାନ ଜଣାଇବା ସମୟରେ ଗୁଣ୍ଡାଶ୍ରେଣୀର ଲୋକେ ଢେଲାପଥର ଫିଙ୍ଗି ତାଙ୍କୁ ରକ୍ତାକ୍ତ କରିଦେଇଥିଲେ ବି ସେ ତାଙ୍କ ଭାଷଣ ବନ୍ଦ କରିନଥିଲେ କିମ୍ବା ତାଙ୍କ ଉଦ୍ୟମରୁ ବିରତ ହୋଇନଥିଲେ। ନୟାବସାଣ ମେଦିନୀପୁର ଜିଲ୍ଲାରେ ଥିବା ମୟୂରଭଞ୍ଜ ମହାଜନଙ୍କର ଏକ ଜମିଦାରୀ ଏବଂ ଏହା ଓଡ଼ିଆବହୁଳ ଅଞ୍ଚଳ। ଏଠାରେ ଭାଷଣ ଦେବା ସମୟରେ ମଧ ମଙ୍ଗରାଜଙ୍କୁ ତୀବ୍ର ବିରୋଧର ସମ୍ମୁଖୀନ ହେବାକୁ ପଡ଼ିଥିଲା, କିନ୍ତୁ ନିର୍ଭୀକ ମଙ୍ଗରାଜ ସେଥିପ୍ରତି ଭ୍ରୁକ୍ଷେପ କରିନଥିଲେ। ୧୯୫୫ ମସିହାରେ ଯେଉଁ ସୀମା ଆନ୍ଦୋଳନ ଓଡ଼ିଶାରେ ଭୟଙ୍କର ରୂପ ଧାରଣ କରିଥିଲା ଏବଂ ଯେଉଁ ଆନ୍ଦୋଳନରେ ସୁନିଲ ଦତ୍ତ ଓ ବେଙ୍ଗପାଣିଆ ପୁଲିସ ଗୁଳିରେ ମୃତ୍ୟୁବରଣ କରିଥିଲେ ସେ ଆନ୍ଦୋଳନରେ ଯଦୁମଣି ମଙ୍ଗରାଜ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ ଓ ଷଢେଇକଳା ଖରସୂଆଁକୁ ଓଡ଼ିଶାରେ ମିଶାଇବା ପାଇଁ ପ୍ରବଳ ଜନଜାଗରଣ ସୃଷ୍ଟି କରିଥିଲେ।

ଦେଶ ଓ ଲୋକସେବା ଥିଲା ମଙ୍ଗରାଜଙ୍କ ଜୀବନର ବ୍ରତ। ସେ ଥିଲେ ସରଳ, ସ୍ପଷ୍ଟବାଦୀ ଓ ନିର୍ଭୀକ। ଅନ୍ୟାୟ ଅନୀତି ବିରୁଦ୍ଧରେ ଲଢାଇ କରିବା ପାଇଁ ସେ କେବେ ପଶ୍ଚାତ୍‌ପଦ ହେଉନଥିଲେ। ଯିଏ ଯେତେ ଉଚ୍ଚ ସ୍ଥାନରେ ଥାଆନ୍ତୁନା କାହିଁକି ଦରକାର ପଡ଼ିଲେ ନ୍ୟାୟନିଷ୍ଠ ଓ ତୀକ୍ଷ୍ଣଧୀ ମଙ୍ଗରାଜଙ୍କର ଶାଣିତ ସମାଲୋଚନାକୁ ତାଙ୍କୁ ତ୍ରାହି ମିଳୁନଥିଲା। ଏଭଳି ଜଣେ ସ୍ୱାଧୀନଚେତା ବ୍ୟକ୍ତି ଦେଶ ସ୍ୱାଧୀନ ହେବା ପରେ ନେତୃସ୍ଥାନୀୟ ଲୋକଙ୍କ ମଧ୍ୟରେ ଯେଉଁ କ୍ଷମତା କନ୍ଦଳ ଆରମ୍ଭ ହୋଇଯାଇଥିଲା ସେଥିରୁ ନିଜକୁ ଦୂରେଇ ରଖିଥିଲେ। ଥରେ ତାଙ୍କୁ ମନ୍ତ୍ରିମଣ୍ଡଳର ପାର୍ଲାମେଣ୍ଟାରୀ ସେକ୍ରେଟେରୀ ଓ ପରେ ଓଡ଼ିଶା ବିଧାନସଭାର ଉପବାଚସ୍ପତି ରୂପେ ଅଧିଷ୍ଠିତ କରାଯାଇଥିଲା। ପଦପଦବୀ ପାଇଁ ତାଙ୍କ ମନରେ କୌଣସି ଶୋଚନା ନଥିଲା। ପଦପଦବୀରେ ଥାଆନ୍ତୁବା ନଥାଆନ୍ତୁ ସାରାଜୀବନ ସେ ଲୋକସଂପର୍କ ଓ ଜନସେବା

ସ୍ୱାଭାବିକ ରୀତିରେ ବଜାୟ ରଖିଥିଲେ ।

କଟକ ପ୍ୟାରୀମୋହନ ଏକାଡ଼େମୀରେ ଛାତ୍ର ଥିବା ସମୟରେ ସ୍ୱର୍ଗୀୟ ଯଦୁମଣି ମଙ୍ଗରାଜଙ୍କ ବ୍ୟକ୍ତିଗତ ସଂପର୍କରେ ଆସିବାର ସୁଯୋଗ ମୋର ହୋଇଥିଲା । ସେ ମଧ୍ୟ ଥିଲେ ପ୍ୟାରୀମୋହନ ଏକାଡ଼େମୀର ଜଣେ ପୁରାତନ କୃତିଛାତ୍ର । ପରିଣତ ବୟସରେ ବି ସେ ତରୁଣ ଛାତ୍ରମାନଙ୍କ ସହିତ ସହଜରେ ମିଶି ପାରୁଥିଲେ ଏବଂ ସ୍ୱଭାବସୁଲଭ ହାସ୍ୟ କୌତୁକଭରା ବାକ୍ୟାଳାପ ମଧ୍ୟରେ ନିଜେ ବଡ଼ ହୋଇ ଦେଶକୁ ଅଗେଇ ନେବାପାଇଁ ଛାତ୍ରମାନଙ୍କୁ ପରାମର୍ଶ ଦେଉଥିଲେ । ଗରିବ ଛାତ୍ରମାନଙ୍କୁ ସେ ଯଥାଶକ୍ତି ଆର୍ଥିକ ସାହାଯ୍ୟ ମଧ୍ୟ ଦେଉଥିଲେ । ଓଡ଼ିଶାର ଜଣେ ପ୍ରତିଷ୍ଠିତ ଜନନାୟକ ଓ ସମ୍ମାନାସ୍ପଦ ବ୍ୟକ୍ତି ହୋଇ ମଧ୍ୟ ଗର୍ବ ବା ଅହଂକାର ତାଙ୍କୁ ସ୍ପର୍ଶ କରିନଥିଲା । ସବୁ ଶ୍ରେଣୀର ଲୋକଙ୍କ ସହିତ ସେ ଅତି ସହଜ ଭାବରେ ମିଶିଯାଇ ପାରୁଥିଲେ ।

ଓଡ଼ିଆ ଜାତି ତା'ର ଏହି କୃତି ପୁରୁଷଙ୍କର ସ୍ମୃତିରକ୍ଷା ପାଇଁ ଏଯାବତ୍ କିଛି କରିନଥିବା ଅତ୍ୟନ୍ତ କ୍ଷୋଭର ବିଷୟ । କଟକ ଓ ଭୁବନେଶ୍ୱରରେ ଯଦୁମଣି ମଙ୍ଗରାଜଙ୍କର ପୂର୍ଣ୍ଣାବୟବ ବ୍ରୋଞ୍ଜ ପ୍ରତିମୂର୍ତ୍ତି ସ୍ଥାପନ ସହ କୌଣସି ଅଞ୍ଚଳ ବା ମୁଖ୍ୟ ରାସ୍ତାକୁ ତାଙ୍କ ନାମରେ ନାମିତ କରାଗଲେ ତାଙ୍କର ସ୍ମୃତି କିଛିଟା ହେଲେ ରକ୍ଷା କରାଯାଇପାରନ୍ତା । ଓଡ଼ିଶାବାସୀ ଏ ଦିଗରେ ତୁରନ୍ତ ପଦକ୍ଷେପ ଗ୍ରହଣ କରିବା ଉଚିତ । ଯେଉଁ ଜାତି ନିଜର କୃତି ସନ୍ତାନମାନଙ୍କୁ ଯଥାଯଥ ସମ୍ମାନ ଦେଇ ଜାଣେନାହିଁ ସେ ଜାତି ପକ୍ଷରେ ବଡ଼ ହେବାର ଆଶା ଏକ ବିଡ଼ମ୍ବନା ମାତ୍ର ।

ଅଶୋକନଗର, ଭୁବନେଶ୍ୱର

• • • •

# 'ନମସ୍ତେ, ସମସ୍ତେ'

## ଡକ୍ଟର ଶ୍ରୀରାମ ଚନ୍ଦ୍ର ଦାଶ

ଯଦୁମଣି ମଙ୍ଗରାଜ ଓଡ଼ିଶାର ରାଜନୀତିଜ୍ଞମାନଙ୍କ ମଧ୍ୟରେ ଜଣେ ବିଦୂଷକ ଥିଲେ । ସେ ସଭାସମିତିରେ ଠିଆହେବା ମାତ୍ରକେ କେବଳ କରତାଳି ଦ୍ୱାରା ତାଙ୍କୁ ଅଭ୍ୟର୍ଥନା କରାଯାଉଥିଲା, ଲୋକେ ଅଭିବାଦନ ଜଣାଇ ଉଚ୍ଚସ୍ୱରରେ ନମସ୍କାର କରୁଥିଲେ । ସେ ଜଣେ ଅଦ୍ୱିତୀୟ ବାଗ୍ମୀ ଓ ବକ୍ତା ଥିଲେ । ତାଙ୍କ ପରିହାସପ୍ରିୟତା ଯୋଗୁ ବହୁ ଗୁରୁତର ସମସ୍ୟା ସମାହିତ ହୋଇଯାଉଥିଲା ।

ସେ ୧୯୩୭ ର ମନ୍ତ୍ରିମଣ୍ଡଳରେ ଜଣେ ସଂସଦୀୟ ସଚିବ ଥିଲେ । ଅନ୍ୟ ତିନିଜଣ ଥିଲେ ରାଜକୃଷ୍ଣ ବୋଷ, ପୁରୀର ଜଗନ୍ନାଥ ମିଶ୍ର ଓ କୋରାପୁଟର ରାଧାକୃଷ୍ଣ ବିଶ୍ୱାସରାୟ । ୧୯୩୮ ରେ ରେଭେନ୍‌ସା କଲେଜରେ ଧର୍ମଘଟ ହେଲା ଏବଂ ଅଧ୍ୟକ୍ଷ ପରିଜା ସାହେବ ଇସ୍ତଫା ଦେବେ ବୋଲି ଘୋଷଣା କଲେ । ଶିକ୍ଷାମନ୍ତ୍ରୀ ଥିଲେ ସଂବଲପୁରର ବୋଧରାମ ଦୁବେ । ପ୍ରଧାନମନ୍ତ୍ରୀ ଦାସ ମଙ୍ଗରାଜ ଓ ବୋଷଙ୍କୁ ପରିସ୍ଥିତିର ମୁକାବିଲା କରିବା ଲାଗି ପଠାଇଲେ । ସରକାର କାହିଁକି ଆଇନ ଅଧ୍ୟାପକ ଜେ. ଏନ୍, ବାନାର୍ଜୀଙ୍କଠାରୁ ତାଙ୍କ ବାସଗୃହ ତାଙ୍କଠାରୁ ଛଡ଼ାଇ ନେଇ ଜଣେ ଗୋରା କର୍ମଚାରୀଙ୍କୁ ଦେଲେ ଏବଂ ପିଲାମାନେ ଧର୍ମଘଟ କଲାବେଳେ ପଶ୍ଚିମ ଛାତ୍ରାବାସର ସହ-ସଂପାଦକ ଧର୍ମଘଟକାରୀଙ୍କୁ ତିରସ୍କାର କରିବାରୁ ତାଙ୍କ ବିରୁଦ୍ଧରେ ଆଗତ ଅନାସ୍ଥା ପ୍ରସ୍ତାବକୁ ଅଧ୍ୟକ୍ଷ ପରିଜା ସାହେବ ଗ୍ରହଣ କରିବା ଲାଗି ଛାତ୍ରବାସ ସଂଘର ବୈଠକ ଡ଼ାକିବା ନିମିତ୍ତ ଅନୁମତି ଦେଲେ ନାହିଁ, ସେଥିପାଇଁ ଧର୍ମଘଟ ହୋଇଥିଲା । କଲେଜ ସମ୍ମୁଖସ୍ଥ ଟେନିସ୍ ପଡ଼ିଆରେ ଛାତ୍ରସଭା ଚାଲିଥାଏ । ବୋଷ ଓ ମଙ୍ଗରାଜ ଆସି ପହଞ୍ଚିଲେ । "କେତେକ କହିଲେ" ସରକାରଙ୍କ ଦୂତ ଆସିଗଲେ ।" ପିଲାମାନେ "ଲଜ୍ଜା, ଲଜ୍ଜା" ବୋଲି ଚିତ୍କାର କରିବାବେଳେ ମଙ୍ଗରାଜ ଖୁବ୍ ବଡ଼ପାଟିରେ "ଲଜ୍ଜା ଲଜ୍ଜା" ବୋଲି କହି ପିଲାଙ୍କ ସହିତ ତାଳି ମାରିଲେ । ଅନ୍ୟମାନେ କହିଲେ "ମଙ୍ଗରାଜ ବାବୁ ଆସିଲେଣି, ସେ ଆମକୁ ସରକାରୀ ଅଭିମୁଖ୍ୟ ବିଷୟରେ କହନ୍ତୁ ।"

ମଙ୍ଗରାଜ କହିଲେ ମୁଁ ସରକାରଙ୍କୁ ଚିହ୍ନେନାହିଁ । ମଙ୍ଗରାଜ ବହୁତ ଗଣ୍ଡଗୋଳ ଜୀବନସାରା କରିଛି । ମୁଁ ଉତ୍କଳ ଗୌରବ ମଧୁସୂଦନ ସହିତ ଲଢ଼ିଛି । ମୁଁ ତୁମ ସହିତ ସରକାରଙ୍କ ସଂଗେ ଲଢ଼ିବାକୁ ଆସିଛି । ଲଢ଼ିଲେ ପରିଜା ସାହେବ ଇସ୍ତଫା ଦେଇଦେବେ ବୋଲି ଧମକ ଦେଇଛନ୍ତି । ତୁମେ କ'ଣ ଚାହୁଁଛ, ସେ ଇସ୍ତଫା ଦିଅନ୍ତୁ ତା ହେଲେ ମୁଁ ସାଙ୍ଗେ ସାଙ୍ଗେ ତାଙ୍କଠାରୁ ଇସ୍ତଫା ନେଇଆସିବି । ପାଟିହେଲା "ନା, ନା," ତାହାହେଲେ ମୁଁ ତୁମ ସହିତ ଲଢ଼ିବି । ଏବେ ଲଢେଇ ବନ୍ଦକର ଓ ଓଡ଼ିଆପୁଅ ପରିଜାଙ୍କ ସୁନାମ ରକ୍ଷାକର" । ସେତିକିରେ ଧର୍ମଘଟ ଶେଷ । ଛାତ୍ରନେତାମାନଙ୍କୁ ସାଙ୍ଗରେ ନେଇ ସେ ପରିଜାଙ୍କୁ ଦେଖା କଲେ ଓ ଜଳଯୋଗ ପରେ ସମାଧାନ ହୋଇଗଲା । ଏହା ଥିଲା ମଙ୍ଗରାଜୀ କୌଶଳ । ତେଣୁ ଯୁବ ସଂପ୍ରଦାୟର ଅତ୍ୟନ୍ତ ପ୍ରିୟ ଥିଲେ ।

ଯଦୁମଣି ମଙ୍ଗରାଜ ଜଣେ ଆଜନ୍ମ ବିପ୍ଳବୀ ଥିଲେ । ସେ ଛାତ୍ରଜୀବନରେ ଦେଶମିଶ୍ରଣ ଆନ୍ଦୋଳନରେ ଜଡ଼ିତ ଥିଲେ । ମଧୁବାବୁ ତାଙ୍କୁ ସ୍ୱେଚ୍ଛାସେବୀମାନଙ୍କ ଅଧ୍ୟକ୍ଷ ନିଯୁକ୍ତ କରିଥିଲେ । ୧୯୧୮ କଟକରେ ସମ୍ମିଳନୀର ଅଧିବେଶନରେ ଗୋଟିଏ ବିଷୟରେ ମଧୁବାବୁ ଓ ମଙ୍ଗରାଜଙ୍କ ମଧ୍ୟରେ ମତଭେଦ ହେଲା । ମଙ୍ଗରାଜ ରୋକ୍‌ଠୋକ୍ ଭାବରେ ମଧୁବାବୁଙ୍କୁ କହିଲେ ଯେ ତାଙ୍କ କଥା ନ ରହିଲେ ତାଙ୍କ ସ୍ୱେଚ୍ଛାସେବକମାନେ ସମ୍ମିଳନୀ କାର୍ଯ୍ୟରେ ଭାଗନେବେ ନାହିଁ । ସଂକଟ

ଉଧୁଳିଲା । ସେଦିନ ରାତିରେ ମଧୁବାବୁ ସତ୍ୟବାଦୀ ବନବିଦ୍ୟାଳୟର ପ୍ରଧାନଶିକ୍ଷକ ପଣ୍ଡିତ ନୀଳକଣ୍ଠଙ୍କୁ ତାରବାର୍ତ୍ତା ପଠାଇଲେ ଯେ ତାଙ୍କ ଶିକ୍ଷକମାନେ ସମ୍ମିଳନୀକୁ ଆସିବାବେଳେ ସ୍ୱେଚ୍ଛାସେବକ ହେବା ଲାଗି କେତେଜଣ ଛାତ୍ରଙ୍କୁ ସାଙ୍ଗରେ ନେଇ ଆସିବେ । ସମ୍ମିଳନୀ ଦିନ ସକାଳେ ମଧୁବାବୁ, ପଣ୍ଡିତ ନୀଳକଣ୍ଠ, ଆଗ୍ରର୍ଯ୍ୟ ହରିହର ଦାସ ଆଦିଙ୍କୁ ଭେଟିବା ଲାଗି ରେଳଷ୍ଟେସନରେ ଅପେକ୍ଷା କରିଥିଲେ । ପିଲାମାନଙ୍କୁ ଦେଖି କହି ପକାଇଲେ, "ଏମିତି ମଙ୍ଗରାଜର ଗ୍ୱଲ ଚଳିବ ନାହିଁ । ସତ୍ୟବାଦୀର ସ୍ୱେଚ୍ଛାସେବକମାନେ ଏପରି ଭାବରେ ସମ୍ମିଳନୀ ଦ୍ୱାରଦେଶ ଜାଗିଲେ ଯେ ଗଙ୍ଗାଧର ମେହେର ବାବୁ ଭଳି ଦେଖା ନ ଯିବାରୁ ତାଙ୍କୁ ଭିତରକୁ ଛାଡ଼ିଲେ ନାହିଁ । କଥାଟା ମଧୁବାବୁଙ୍କ କାନକୁ ଗଲା । ସେ ତତ୍‌କ୍ଷଣାତ୍ ଆସି ସତ୍ୟବାଦୀର ସ୍ୱେଚ୍ଛାସେବକମାନଙ୍କୁ କହିଲେ, ପିଲାମାନେ ତାଙ୍କୁ ଛାଡ଼ିଦିଅ । ସେ ପରା ସଂବଲପୁର ଜିଲା ବରପାଲିର ବିଖ୍ୟାତ ଗଙ୍ଗାଧର ମେହେର ?" ଉତ୍ତର ହେଲା, "କାଳେ ମଙ୍ଗରାଜ ଗଣ୍ଡଗୋଳକାରୀମାନଙ୍କୁ ସଭାମଞ୍ଚ ଭିତରକୁ ପୂରାଇ ଦେବେ ତେଣୁ ଯାହାର ଟିକଟ ନ ଥିବ ତାଙ୍କୁ ଛାଡ଼ିବନାହିଁ ବୋଲିଆମକୁ ନିର୍ଦ୍ଦେଶ ଅଛି । ଏ ବାବୁଙ୍କର ପ୍ରବେଶ ଟିକଟ ନାହିଁ । ଆମେ ତାଙ୍କୁ ଛାଡ଼ନ୍ତୁ କିପରି ?" ସମ୍ମିଳନୀ ଶେଷରେ ସେମାନେ ଫେରିବାବେଳକୁ, ମଧୁବାବୁ ବିଦାୟ ଦେଇ କହିଲେ ନୀଳକଣ୍ଠ, ତୁମ ପିଲାମାନେ ଅଗ୍ନିଶିଖା । ସେମାନେ ମଙ୍ଗରାଜର ମଙ୍ଗ ଭାଙ୍ଗି ଦେଇପାରିଲେ ।" ଜଣେ ଅଳ୍ପବୟସ୍କ ଯୁବକ କିପରି ସାହସୀ ହୋଇପାରେ, ଏହା ତାହାର ଏକ ଦୃଷ୍ଟାନ୍ତ ।

ଏହି ଘଟଣାରେ ମଙ୍ଗରାଜ ପରାଜିତ ହେଲେ ସିନା, ସେ ସତ୍ୟବାଦୀର ପଞ୍ଚସଖାମାନଙ୍କ ସହିତ ପରିଚିତ ହେଲେ ଯାହାକି ତାଙ୍କ ଶେଷଜୀବନ ପର୍ଯ୍ୟନ୍ତ ସାହାଯ୍ୟ କରିଥିଲା । ପଣ୍ଡିତ ଗୋଦାବରୀଶ ୧୯୧୫–୧୬ରେ ପଣ୍ଡିତ ଗୋପବନ୍ଧୁଙ୍କ ନିର୍ଦ୍ଦେଶରେ ଓଡ଼ିଆ ଶିକ୍ଷା ପ୍ରଗ୍ୱର ଓ ପ୍ରସାରଲାଗି ସିଂହଭୂମି ଗ୍ୱଲିଗଲେ । ସେହି ଗୋପବନ୍ଧୁଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସେ ନିକଟବର୍ତ୍ତୀ ମେଦିନୀପୁର ଜିଲ୍ଲାରେ ମଧ୍ୟ ଓଡ଼ିଆମାନଙ୍କୁ ନିଜ ଭାଷା ଓ ଏକଦା ତାଙ୍କ ମାତୃଭୂମି ଓଡ଼ିଶା ପ୍ରତି ମମତା ଜାଗ୍ରତ କରିବାକୁ ପ୍ରଗ୍ୱରରେ ଯାଇଥିଲେ । ସେ ଜାଣିଥିଲେ ମଙ୍ଗରାଜ ଜଣେ ଅଗ୍ନିଗର୍ଭା ବକ୍ତୃତା ଦେବା ବ୍ୟକ୍ତି । ତେଣୁ ତାଙ୍କୁ ସାଥିରେ ନେଇଥିଲେ ।

ଓଡ଼ିଶାର ସୀମା ନିର୍ଦ୍ଧାରଣ ଲାଗି ଓଡ଼ନେଲ କମିଟି ୧୯୩୧ରେ ନିଯୁକ୍ତ ହୋଇଥିଲା । ସେମାନେ ବିଚ୍ଛିନ୍ନାଞ୍ଚଳରେ ସାକ୍ଷ୍ୟ ନେବାର ସମ୍ଭାବନା ଥିଲା । ଆମେ ତ ମେଦିନୀପୁରକୁ ଓଡ଼ିଆ ଅଞ୍ଚଳ ବୋଲି ଦାବି କରୁଥିଲେ । ୧୭୬୫ରେ ବଙ୍ଗ, ବିହାର ଓ ଓଡ଼ିଶାର ଦେଓ୍ୱାନୀ ଲର୍ଡ କ୍ଲାଇବଙ୍କୁ ଇଷ୍ଟଇଣ୍ଡିଆ କଂପାନୀ ତରଫରୁ ଦିଆଯିବାବେଳେ ଓଡ଼ିଶାରେ ମେଦିନୀପୁର ଅନ୍ତର୍ଭୁକ୍ତ ଥିଲା । ତେଣୁ ମେଦିନୀପୁରର ଓଡ଼ିଆ ନେତା ବୀରେନ୍ଦ୍ର ସାସମଲ ଓଡ଼ିଆମାନଙ୍କୁ ବଙ୍ଗଳାର ଲୋକ ବୋଲି କହିବା ଲାଗି କୁ–ଶିକ୍ଷା ଦେଇଥିଲେ । ଏହାର ପ୍ରତିରୋଧ କରିବାଲାଗି ପଣ୍ଡିତ ଗୋଦାବରୀଶ ଓ ଯଦୁମଣି ମଙ୍ଗରାଜ ମେଦିନୀପୁର ଯାଇଥିଲେ । ସେତେବେଳେ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ଥିଲେ ପଣ୍ଡିତ ନୀଳକଣ୍ଠ । ଏମାନେ ତାଙ୍କ ନିର୍ଦ୍ଦେଶ ପାଳନ କରିଥିଲେ । କାରଣ ୧୯୩୦ ଆଇନ ଅମାନ୍ୟ ଆନ୍ଦୋଳନରେ ନୀଳକଣ୍ଠ କାରାବରଣ କରିବାବେଳେ ନିର୍ଦ୍ଦେଶ ଦେଇଥିଲେ ଯେ ପଣ୍ଡିତ ଗୋଦାବରୀଶ ଜେଲ ନଯାଇ ଓଡ଼ନେଲ କମିଟି ପାଖରେ ସାକ୍ଷ୍ୟ ଯୋଗାଡ଼ କରିବେ । ମଙ୍ଗରାଜ ବି ସେହି କାରଣରୁ ଜେଲ୍ ଯାଇନଥିଲେ । ବୀରେନ୍ଦ୍ର ସାସମଲ୍‌ଙ୍କ ପ୍ରରୋଚନାରେ ସେଠା ଲୋକେ ଗୋଦାବରୀଶ ଓ ମଙ୍ଗରାଜଙ୍କ ଉପରେ ଏପରି ମାଡ଼ ଚଡାଇଲେ ଯେ ଦୁହେଁ ଭୀଷଣ ଆଘାତ ପାଇଲେ । ଲୋକେ ମଙ୍ଗରାଜଙ୍କ ଭାଷଣ ଉତ୍କଣ୍ଠାର ସହିତ ଶୁଣୁଥିଲେ; କିନ୍ତୁ କୁଚକ୍ରୀମାନେ ଗୋଦାବରୀଶଙ୍କ ମୁଣ୍ଡରେ ପ୍ରହାର କରିବାକୁ ଉଦ୍ୟତ ହୁଅନ୍ତେ ମଙ୍ଗରାଜ ତାଙ୍କୁ ରକ୍ଷା କରିବା ଲାଗି ଭକ୍ତମାନଙ୍କୁ ନିଜ ଉପରକୁ ନେଇ ଗୋଦାବରୀଶଙ୍କୁ ବଞ୍ଚାଇ ଦେଇଥିଲେ । ଏହା ତାଙ୍କ ଗୁରୁଭକ୍ତି ଓ ଦୁଃସାହସିକତାର ନିଦର୍ଶନ ।

ଓଡ଼ିଶା ୧୯୩୬ରେ ସ୍ୱତନ୍ତ୍ର ପ୍ରଦେଶ ହେଲା; କିନ୍ତୁ ମେଦିନୀପୁର ମିଶିଲା ନାହିଁ । ସେହିବର୍ଷ ଶୀତଋତୁରେ ବିଧାନସଭା ନିର୍ବାଚନ ହେଲା । ୧୯୩୫ ର ଭାରତ ଶାସନ ଆଇନ ୧୯୩୭ରେ କାର୍ଯ୍ୟକାରୀ ହେବାକୁ ଥିବାରୁ ନବଗଠିତ ଏଗାରଗୋଟି ରାଜ୍ୟରେ ନିର୍ବାଚନ ହୋଇଥିଲା । କଂଗ୍ରେସ ସଭାପତି ପଣ୍ଡିତ ଜବାହରଲାଲ

ନେହେରୁଙ୍କ ନିର୍ଦ୍ଦେଶରେ କଂଗ୍ରେସ ଏହି ନିର୍ବାଚନରେ ଲଢିଥିଲା । ସେତେବେଳେ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ସଭାପତି ଥିଲେ ପଣ୍ଡିତ ନୀଳକଣ୍ଠ ଦାଶ । ସେ ମଙ୍ଗରାଜଙ୍କୁ କେନ୍ଦ୍ରାପଡ଼ା ନିର୍ବାଚନରେ ପ୍ରାର୍ଥୀ କରିଥିଲେ । ତାଙ୍କ ବିରୁଦ୍ଧରେ ପ୍ରାର୍ଥୀ ଥିଲେ ପାରଳାଖେମୁଣ୍ଡି ମହାରାଜାଙ୍କ ନେତୃତ୍ୱରେ ଗଠିତ ଜାତୀୟବାଦୀ ଦଳର ସେକାଳର ରାୟବାହାଦୂର (ପରେ ଦେଓ୍ୱାନ ବାହାଦୂର) ଲକ୍ଷ୍ମୀଧର ମହାନ୍ତି । ଲକ୍ଷ୍ମୀଧରବାବୁ ଥିଲେ ପୂର୍ବତନ ବିହାର-ଓଡ଼ିଶା ବିଧାନ ପରିଷଦର ଡ଼େପୁଟି ପ୍ରେସିଡ଼େଣ୍ଟ । ତାଙ୍କ ବିରୁଦ୍ଧରେ ଲଢି ମଙ୍ଗରାଜ ଜିଣିପାରିବା ବିଷୟରେ ସନ୍ଦେହ ଥିଲା । ଏଣେ ପୁଣି କଂଗ୍ରେସ ତରଫରୁ ମଙ୍ଗରାଜ ସମଗ୍ର ଓଡ଼ିଶାରେ ନୀଳକଣ୍ଠଙ୍କ ନିର୍ଦ୍ଦେଶରେ ପ୍ରଚାର କରୁଥିଲେ । ନିର୍ବାଚନ ପରେ ଦେଖାଗଲା ଯେ ମଙ୍ଗରାଜ ବହୁ ଅଧିକ ଭୋଟରେ ଜିଣିଛନ୍ତି । ସେଥରକ ମୋଟ ୫୬ଟି ନିର୍ବାଚିତ ସ୍ଥାନ ମଧ୍ୟରୁ ୩୭ଜଣ କଂଗ୍ରେସ ସଭ୍ୟ ନିର୍ବାଚିତ ହୋଇଥିଲେ । ମଙ୍ଗରାଜ ଜୀବିତ ଥିବା ପର୍ଯ୍ୟନ୍ତ ଅନ୍ୟ କେହି କେନ୍ଦ୍ରାପଡ଼ାରୁ ତାଙ୍କୁ ହରାଇ ପାରିନଥିଲେ ।

୧୯୫୦ରେ ଭାରତ ସାଧାରଣତନ୍ତ୍ରରେ ପରିଣତ ହେଲା । ସେତେବେଳେ ମଙ୍ଗରାଜ ବିଧାନସଭାର କେବଳ ସଭ୍ୟ ନଥିଲେ, ସେ ମଧ ଥରେ ଉପବାଚସ୍ପତି ପଦ ମଣ୍ଡନ କରିଥିଲେ । ସେ ଅଧ୍ୟକ୍ଷତା କରିବାବେଳେ ସଭ୍ୟମାନେ କୌଣସି ବାଦବିବାଦ କଲେ ସେ ତାଙ୍କ ପରିହାସପ୍ରିୟତା ଯୋଗୁ ସଭ୍ୟମାନଙ୍କୁ ଏପରି ହସାଉଥିଲେ ଯେକୌଣସି ସଭ୍ୟ ବିଶୃଙ୍ଖଳ ହେଲେ ସେ ତାଙ୍କ ପ୍ରତି ଶାସ୍ତିବିଧାନ କରିବା ବିଷୟ କଳ୍ପନା ବି କରିନଥିଲେ । ବାଚସ୍ପତି ପଣ୍ଡିତ ନୀଳକଣ୍ଠ ଅଳ୍ପ ସମୟ ଅଧ୍ୟକ୍ଷତା କରୁଥିଲେ । ଅଧିକାଂଶ ସମୟ ବିଧାନ ସଭା ଅଧିବେଶନ ପରିଚାଳନା ତାଙ୍କ ଦାୟିତ୍ୱ ଥିଲା । ୧୯୪୧ରେ ପଣ୍ଡିତ ନୀଳକଣ୍ଠ ଓ ପଣ୍ଡିତ ଗୋଦାବରୀଶ କେତେଜଣ କଂଗ୍ରେସ ବିଧାୟକଙ୍କୁ ନେଇ ମିଳିତ ମନ୍ତ୍ରିମଣ୍ଡଳ ଗଢିବାବେଳେ ସେ ସେମାନଙ୍କୁ ସମର୍ଥନ କରିଥିଲେ ।

୧୯୫୫ ନଭେମ୍ବର ମାସରେ ସାର ସୟଦ ଫଂଜଲ ଅଲୀଙ୍କ ନେତୃତ୍ୱରେ ଗଠିତ ରାଜ୍ୟ ପୁନର୍ଗଠନ କମିଶନର ବିବରଣୀ ପ୍ରକାଶିତ ହେବାରୁ ଓଡ଼ିଶା ପ୍ରତି ଅନ୍ୟାୟ ବିଚାର କରାଯାଇଥିଲା ବୋଲି ସେତେବେଳେ ଛାତ୍ର ବିକ୍ଷୋଭ ଯୋଗୁ କଟକରେ ବେତାରକେନ୍ଦ୍ରକୁ ଘେରାଉ କରିଥିବା ଯୋଗୁ ଯେଉଁ ଗୁଳିକାଣ୍ଡ ହୋଇଥିଲା, ସେଥିରେ ସୁନୀଲ ଦେ ନାମକ ଜଣେ ଯୁବକ ପ୍ରାଣବଳି ଦେଇଥିଲେ । ସେତେବେଳେ କଟକ ମ୍ୟୁନିସିପାଲିଟି ପଡ଼ିଆରେ ପ୍ରାୟ ପ୍ରତିଦିନ ବିରାଟ ସଭାମାନ ହେଉଥିଲା । ଦେଶମିଶ୍ରଣ ଆନ୍ଦୋଳନବେଳେ ସେ ଓ ଗୋଦାବରୀଶ ମେଦିନୀପୁରରେ ଯେଉଁ ଭୀଷଣ ପ୍ରହାର ଖାଇଥିଲେ, ମଙ୍ଗରାଜ ସେ ବିବରଣୀ ଦେଇ ଓଡ଼ିଶା ପ୍ରତି ହୋଇଥିବା ଅବିଚାର ସମ୍ବନ୍ଧରେ ଚିତ୍ତାକର୍ଷକ ଭାଷଣ ଦେଇ ଶ୍ରୋତୃବର୍ଗଙ୍କୁ ଚମତ୍କାର ଦେଇଥିଲେ । ସେ ଭାଷଣ ଆରମ୍ଭ କରିବାବେଳେ ସଭାକୁ ସଂବୋଧନ କରି ଆରମ୍ଭ କରୁଥିଲେ ଓ ଭାଷଣ ଶେଷରେ କହୁଥିଲେ, "ନମସ୍ତେ, ସମସ୍ତେ ।" ତେଣୁ ସେ ଭାଷଣ ଦେବାକୁ ଠିଆହେବା ମାତ୍ରକେ ଦଳେ ଚଗଲା ଟୋକା ଚିତ୍କାର କରୁଥିଲେ, "ନମସ୍ତେ, ସମସ୍ତେ ।"

ଯଦୁମଣିବାବୁ ତାଙ୍କ ଜୀବନରେ ବିଧାୟକ, ସଂସଦୀୟ ସଚିବ ଓ ଉପବାଚସ୍ପତି ପଦ ଅଳଙ୍କୃତ କରିଥିଲେ । ସେ ଜଣେ ବିଶିଷ୍ଟ ଜାତୀୟତାବାଦୀ ନେତା ଥିଲେ । ଆଜିକାଲିର ପରିସ୍ଥିତି ଥିଲେ ସେ କେନ୍ଦ୍ରାପଡ଼ା, କଟକ ବା ଭୁବନେଶ୍ୱରରେ ବିରାଟ ଅଟ୍ଟାଳିକା ନିର୍ମାଣ କରି ବ୍ୟାଙ୍କ ରେ ଲକ୍ଷ ଲକ୍ଷ ଟଙ୍କା ରଖିଥାନ୍ତେ । ତାଙ୍କ ବେଳର କଂଗ୍ରେସ ନେତାମାନେ ତ୍ୟାଗୀ ଥିଲେ, ଭୋଗୀ ନଥିଲେ । ଦେଶପାଇଁ ସର୍ବସ୍ୱ ତ୍ୟାଗ କରିବା ତାଙ୍କ ଜୀବନର ଲକ୍ଷ୍ୟ ଥିଲା । ମୋର ସୌଭାଗ୍ୟ ଯେ ମୁଁ ତାଙ୍କର ସ୍ନେହ ଭାଜନ ହୋଇଥିଲି । ତାଙ୍କ ବାର୍ଦ୍ଧକ୍ୟରେ ଥରେ ସେ ମୋ ଘରକୁ ବୁଲି ଆସିଥିଲେ । ସେ ଏତେ ଦୁର୍ବଳ ହୋଇ ପଡ଼ିଥିଲେ ଯେ ସେ ନିଜ ଅଭ୍ୟାଗତ ବଙ୍କୁଲିବାଡ଼ି ଧରି ପାଦରେ ଚାଲି ଆସିଥିଲେ ବି ପାଦରେ ଚାଲି ଫେରିଯିବା ଅବସ୍ଥାରେ ନଥିଲେ । ମୁଁ ତାଙ୍କୁ, ମୋ ଗାଡ଼ିରେ ନେଇ କେଶରପୁରରେ ତାଙ୍କ ଘରେ ଛାଡ଼ି ଆସିଥିଲି । ସେ ତା ପରେ ମୋତେ ବହୁବାର ଡକାଇ ପଠାଇଛନ୍ତି ଓ ମୁଁ ତାଙ୍କ ସାହଚର୍ଯ୍ୟ ଲାଭ କରିଛି । ତାଙ୍କପରି ବ୍ୟକ୍ତି ଏବେ ବିରଳ ।

**କୁକୁରିଆପଦା**
**କଟକ,**

• • • •

# ବିରଳ ବ୍ୟକ୍ତିତ୍ୱ : ମଂଗରାଜ

ବ୍ରହ୍ମାନନ୍ଦ ଦାସ

ତେଜିୟାନ୍ ପୁରୁଷାକାର ଥିବା ମଣିଷଙ୍କୁ ମୁଁ କେବଳ ସମ୍ମାନ ଦିଏ, ତନ୍ମଧ୍ୟରୁ ଯଦୁମଣି ମଂଗରାଜ ଅନ୍ୟତମ । ଚିର ସଂଗ୍ରାମୀ ଦୁର୍ଦ୍ଧର୍ଷ, ଆଗକୁ ମାଡ଼ିଯିବାର ସାର୍ଥକ ବ୍ୟକ୍ତିତ୍ୱ ମଂଗରାଜ- ଏ ମାଟିର ବିରଳ ସନ୍ତାନ ।

ଲୁଣା ନଦୀର ତଟରେ କରିଲୋପାଟଣା ଗ୍ରାମରେ ୧୮୯୪ ଖ୍ରୀଷ୍ଟାବ୍ଦ ଜାନୁୟାରୀ ପହିଲାରେ ତାଙ୍କର ଜନ୍ମ । ପିତା ଭିକାରୀ ଚରଣ ମଙ୍ଗରାଜ । ଏକ ନୂତନ ବର୍ଷର ନବ ସୂର୍ଯ୍ୟାଲୋକରେ ସେ ହୁଅନ୍ତି ଆବିର୍ଭାବ ଏବଂ ସେଇ ଆଲୋକ ସେ ବିଞ୍ଛିଯାଇଛନ୍ତି ଓଡ଼ିଶା ଭୂଇଁରେ । ଗ୍ରାମରେ ପ୍ରାଥମିକ ଶିକ୍ଷା ସାରି ପ୍ୟାରୀମୋହନ ଏକାଡ଼େମୀରୁ କୃତିତ୍ୱର ସହ ପ୍ରଥମ ଶ୍ରେଣୀରେ ମେଟ୍ରିକ୍ ପାସ୍ କରନ୍ତି । ପରେ ପାଟଣା ବିଶ୍ୱବିଦ୍ୟାଳୟ ତଥା ରେଭେନ୍‌ସାରେ ଅଧ୍ୟୟନରତ ଥିବା ସମୟରେ ମହାତ୍ମାଗାନ୍ଧୀଙ୍କ ଆହ୍ୱାନରେ ଓ ଗୋପବନ୍ଧୁଙ୍କ ନେତୃତ୍ୱରେ ଜାତୀୟ କଂଗ୍ରେସରେ ଯୋଗଦାନ କରନ୍ତି । ସେତେବେଳର ରାଜନୀତିର ବୃତ୍ତ ଭିତରେ ପଣ୍ଡିତ ନୀଳକଣ୍ଠ, ଗୋଦାବରୀଶ ମିଶ୍ର ଓ ଡକ୍ଟର ମହତାବ ଉଜ୍ଜ୍ୱଳ ହୋଇ ଦିଶୁଥାନ୍ତି । ଖ୍ରୀ: ୧୯୨୧ର ମାର୍ଚ୍ଚମାସରେ ସେ ସ୍ୱାଧୀନତାର ସଂଗ୍ରାମ ପାଇଁ ଜନମାନସକୁ ଏକାକାର କରିବାଲାଗି କେନ୍ଦ୍ରାପଡ଼ାକୁ ହିଁ ନିଜର ପ୍ରଥମ କର୍ମଭୂମି ଭାବେ ବାଛି ନିଅନ୍ତି । ତାଙ୍କର ପ୍ରଥମ ସଂଗ୍ରାମ ଆରମ୍ଭ ହୁଏ ଆପଣାର ଶ୍ୱଶୁରଙ୍କ ସହିତ । ଆଜିକାଲିର ନେତା ନିଜ ଆତ୍ମୀୟଙ୍କ ସହ ଲଢିବା କ୍ୱଚିତ୍ ଦେଖାଯାଏ, ବରଂ ଆତ୍ମୀୟଙ୍କ ପେଟପାଟଣା କଥା ସର୍ବାଗ୍ରେ ବୁଝିଦିଅନ୍ତି । ମଂଗରାଜ ସେ ଧରଣର ସଂକୀର୍ଣ୍ଣମନା ରାଜନୀତିଜ୍ଞ ନଥିଲେ । ଦେଶପାଇଁ ସେ ନିଜର ଆତ୍ମୀୟଙ୍କ ସହ ମଧ୍ୟ ଲଢିବାର ମୂଲ୍ୟବୋଧ ଭିତ୍ତିକ ରାଜନୀତି ସେ କରିଯାଇଛନ୍ତି ।

ଏଇଠାରେ କହିରଖେ, ମଂଗରାଜ ବିବାହ କରିଥିଲେ କେନ୍ଦ୍ରାପଡ଼ା ନିକଟ ଗ୍ରାମ ଶ୍ୟାମସୁନ୍ଦରପୁରର ରାଧାଶ୍ୟାମ ନିକଟ ଗ୍ରାମ ବାମା ସୁନ୍ଦରୀଙ୍କୁ । ସ୍ତ୍ରୀଙ୍କ ଦେହାନ୍ତ ପରେ ନିଜ ଶାଳୀ ଚନ୍ଦ୍ରପ୍ରଭାଙ୍କୁ ଦ୍ୱିତୀୟ ପତ୍ନୀରୂପେ ବରଣ କରିଥିଲେ । ପ୍ରଥମ ସ୍ତ୍ରୀଙ୍କଠାରୁ ବିଜୟକେତନ ଏବଂ ଦ୍ୱିତୀୟଙ୍କଠାରୁ ସଂଗ୍ରାମ, ସ୍ୱରାଜ, ବିପ୍ଳବ ଓ କନ୍ୟା ସଂଯୁକ୍ତାଙ୍କ ଜନ୍ମ । ଏବେ ବିପ୍ଳବଙ୍କ ଦେହାନ୍ତ ହୋଇଯାଇଛି । ଅନ୍ୟ ଭାଇଭଉଣୀ ସମସ୍ତେ ଯେ ଯାହାର କାର୍ଯ୍ୟକ୍ଷେତ୍ରରେ ସୁପରିଚିତ । ଚନ୍ଦ୍ରପ୍ରଭା ମଂଗରାଜ ମେରିଆବଜାରସ୍ଥ ସ୍ୱଗୃହରେ ନିବାସ କରୁଛନ୍ତି ।

ଜାତୀୟ ଆନ୍ଦୋଳନ ବେଳେ ଶ୍ୱଶୁର ରାଧାଶ୍ୟାମବାବୁ କେନ୍ଦ୍ରାପଡ଼ା କଚେରିର ଜଣେ ମାନ୍ୟ ମୁକ୍ତାର ଭାବେ ଅଧିଷ୍ଠିତ ଥା'ନ୍ତି । ସେ ପ୍ରତ୍ୟହ କଚେରିକୁ ଆପଣାର ସବାରିରେ ଯା'ଆସ କରନ୍ତି । ଯଦୁମଣି କିଛି ଯୁବକଙ୍କୁ ଏକଜୁଟ କରାଇ ସ୍ୱାଧୀନତା ପାଇଁ ଲୋକ- ସଂଗ୍ରହ କରିବା ସଂଗେ ସଂଗେ ନିଜ ଶ୍ୱଶୁରଙ୍କୁ କଚେରି ଯିବାର ପଥରୋଧ କରନ୍ତି । ଶ୍ୱଶୁର କଚେରିକୁ ଠିକ୍ ବାହାରିବାବେଳେ ଆରମ୍ଭ କରିଦିଅନ୍ତି ସତ୍ୟାଗ୍ରହ ଓ ଉଚ୍ଚ କଣ୍ଠରେ ଗାଉଥାନ୍ତି

*ମୁକ୍ତାର ବାବୁଙ୍କୁ କରେ ଜୁହାର*
*ଆଉ ନଯାଆନ୍ତୁ କଚେରି ଘର ।*

ଏବଂ ଏଇ ଗୀତକୁ ପାଳିଧରି ଯୁବକଗଣ ଗାଇ ଗାଇ

ଅଟକାଇ ରଖନ୍ତି ତାଙ୍କ ସବାରିକୁ ।

ସେ କ୍ରମେ ପରିଚିତ ହୋଇଯାନ୍ତି ଜନମାନସରେ । କେନ୍ଦ୍ରାପଡ଼ାରେ ସ୍ୱାଧୀନତା ସଂଗ୍ରାମରେ ମଙ୍ଗୁଆଳ ରୂପେ ସେ ଗୌରବର ମୁକୁଟ ପିନ୍ଧନ୍ତି ।

ଖ୍ରୀ. ୧୯୨୪ରେ କେନ୍ଦ୍ରାପଡ଼ା ମ୍ୟୁନିସିପାଲିଟିର କାଉନସିଲର ଓ ଲୋକାଲ୍ ବୋର୍ଡ଼ର ସଭାପତି ଭାବେ କାର୍ଯ୍ୟ କରନ୍ତି । ଖ୍ରୀ: ୧୯୩୦ ରେ ଆଇନ ଅମାନ୍ୟ ଆନ୍ଦୋଳନ ତଥା ଲବଣ ଆନ୍ଦୋଳନରେ ପ୍ରମୁଖ ଭୂମିକା ନିଅନ୍ତି । ଖ୍ରୀ: ୧୯୩୪ ରେ ମହାତ୍ମା ଗାନ୍ଧୀଙ୍କୁ ଆଣି ନିକରାଇ ନିକଟରେ ବିରାଟ ସଭା କରାଇବା ଫଳରେ ଜନତାଙ୍କ ସମ୍ମାନ ପାଇବାରେ ହକ୍‌ଦାର ହୁଅନ୍ତି । ତାଙ୍କର ଅମାୟିକ ବ୍ୟବହାର ସମସ୍ତଙ୍କୁ ବାନ୍ଧିପକାଏ । କନିକା ପ୍ରଜା ଆନ୍ଦୋଳନରେ ତାଙ୍କର ଯୋଗଦାନ ମଧ୍ୟ ଏକ ଉଲ୍ଲେଖନୀୟ ଘଟଣା ।

ଖ୍ରୀ: ୧୯୩୬ରେ ପାରଳା ମହାରାଜାଙ୍କ ମିଳିତ ମନ୍ତ୍ରିମଣ୍ଡଳରେ ଅର୍ଥବିଭାଗର ପାର୍ଲିଆମେଣ୍ଟାରୀ ସଚିବ ଭାବେ ଦାୟିତ୍ୱ ତୁଲାଇ ପ୍ରସିଦ୍ଧ ହୋଇଉଠନ୍ତି । କିନ୍ତୁ ସେଇବର୍ଷ ନୀତିଗତ ଅସନ୍ତୋଷ ହେତୁ ପଣ୍ଡିତ ନୀଳକଣ୍ଠ ଓ ଗୋଦାବରୀଶ ସହ କଂଗ୍ରେସରୁ ଓହରି ଆସନ୍ତି ।

ମଂଗରାଜ ଥିଲେ ପ୍ରଚଣ୍ଡ ସ୍ୱାଭିମାନୀ । ତାଙ୍କର୍ ଜନ୍ମଭୂମି ଓଡ଼ିଶା ପ୍ରତି ତଥା ତାଙ୍କର ମାତୃଭାଷା ଓ ଓଡ଼ିଆ ସାହିତ୍ୟ ପ୍ରତି ଅତୁଟ ମମତା ଥିଲା । ସେଥିପାଇଁ ସେ ନେଇଥିବା ପଦକ୍ଷେପ ଓଡ଼ିଶାର ଇତିହାସରେ ଚିର ସ୍ମରଣୀୟ ହୋଇ ରହିବ । ଓଡ଼ିଶାର ବିଚ୍ଛିନ୍ନାଞ୍ଚଳ ବସ୍ତର, ଫୁଲଝର, ସିଂଭୂମ, ଧଳଭୂମ ଏବଂ ଷଢେଇକଳା-ଖରସୁଆଁରେ ବହୁବାର ସଭା କରି ଓଡ଼ଆ ଜାଗରଣ ଭେରି ନିନାଦିତ କରନ୍ତି ଓ ବୃହତ ଓଡ଼ିଶା ପ୍ରଦେଶ. ଗଠନ କରିବା ପାଇଁ ସେ ସ୍ଥାନର ଅଧିବାସୀଙ୍କୁ ଉଦ୍‌ବୋଧିତ କରନ୍ତି ବାରମ୍ବାର । ଖ୍ରୀ: ୧୯୫୫ ରେ ଐତିହାସିକ ସୀମା ଆନ୍ଦୋଳନରେ ତାଙ୍କର ଅବଦାନ କେହି ଭୁଲିପାରିବେ ନାହିଁ । ସେହି ସମୟରେ ଷଢ଼େଇକଳା ଓ ଖରସୁଆଁକୁ ଓଡ଼ିଶା ସହ ମିଶାଇବା ପାଇଁ ଯେଉଁ ବିଦ୍ରୋହ ତେଜି ଉଠିଥିଲା, ତାର ନାୟକ ମଂଗରାଜ ଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ଏହି ଆନ୍ଦୋଳନକୁ ଖର୍ବ କରିବାପାଇଁ ମୁଷ୍ଟିମେୟ ଅର୍ଥଲୋଭୀ ବିଶ୍ୱାସଘାତକ ଓ କ୍ଷମତାଲୋଭୀଙ୍କ ଷଡ଼ଯନ୍ତ୍ର ବଡ ଦୁଃଖଦାୟକ ସୁନୀଲ ଓ ବେଙ୍ଗପାଣିଆ ଶହୀଦ ହେଲେ ଗୁଳିଗ୍ୱଳନା ଫଳରେ କଟକ ଟାଉନହଲ ପଡ଼ିଆରେ ମଂଗରାଜ ଯେଉଁ ଓଜସ୍ୱିନୀ ଭାଷଣ ଦେଇଥିଲେ, ତାର ତୁଳନା ନାହିଁ । ସେଇଠି ସେ ଘୋଷଣା କରିଥିଲେ- ମୁଁ ହିଁ ଓଡ଼ିଶାର ଗଭର୍ଣ୍ଣର, ମୋରି ଆଦେଶ ମାନିନିଅ, ଆଗେଇ ଗ୍ୱଲ ଭାଇ, ଆଗେଇ ଗ୍ୱଲ । ଥରିଉଠିଥିଲା ଆକାଶରୁ ପାତାଳ, ଉଚ୍ଚକିତ ହୋଇଉଠିଲେ । ବିଶାଳ ଓଡ଼ିଆ ବାହିନୀ ନିଜେ ମଂଗରାଜ ଓ ତାଙ୍କ ଦୁଇପୁଅ ସଂଗ୍ରାମ ଓ ସ୍ୱରାଜ କାରାବରଣ କଲେ । ହାଇସ୍କୁଲର ଛାତ୍ର ଥିଲେ ବି ସେମାନଙ୍କ ପ୍ରାଣକୁ ପିତା ଓ ବିଚ୍ଛିନ୍ନ ଉତ୍କଳ ଜନନୀର ଆହ୍ୱାନ ଅଧୀର କରିଥିଲା । ଆଜି ସେହି ଦିନର କ୍ଷମତାଲୋଭୀ ଓ ବିଶ୍ୱାସଘାତ ଙ୍କୁ ବିପୁଳ ଭାବରେ ସମ୍ମାନିତ କରାଯାଏ, ଛାୟାଚ୍ଛିନ୍ନ ହୋଇ ରହିଯାନ୍ତି ବୀର ପାଇକ ଯଦୁମଣି ମଂଗରାଜ ।

ଖ୍ରୀ: ୧୯୫୭ରେ ମଂଗରାଜ ପୁଣି ସାମିଲ୍ ହୁଅନ୍ତି କଂଗ୍ରେସରେ ଓ ବଡ଼ଚଣା ମଣ୍ଡଳୀରୁ ଜିତି । ମହତାବଙ୍କ ନେତୃତ୍ୱରେ ଗଠିତ ମନ୍ତ୍ରିମଣ୍ଡଳ କାଳରେ ଉପବାଚସ୍ପତି ଭାବେ କାର୍ଯ୍ୟନିର୍ବାହ କରନ୍ତି । ପୁଣି ସ୍ୱାଧୀନ ପ୍ରାର୍ଥୀଭାବେ ସେ ମଧ୍ୟ ଭୋଟ ଲଢିଛନ୍ତି ଶିଡ଼ି ଚିହ୍ନରେ । ସେତେବେଳେ ତାଙ୍କ ସହ କଂଗ୍ରେସରୁ ଦୀନବନ୍ଧୁ ସାହୁ ଓ ସୋସାଲିଷ୍ଟ ପାର୍ଟିରୁ ଡାକ୍ତର ସରୋଜକାନ୍ତ କାନୁନ୍‌ଗୋ ପ୍ରାର୍ଥୀ ଥିଲେ । ମଂଗରାଜ ଏଇ ଗୀତ ଗାଇ ଗାଇ ଲୋକଙ୍କୁ ଭୋଟପାଇଁ ନିବେଦନ କରୁଥିଲେ ।

*କଂଗ୍ରେସ ସୋସାଲିଷ୍ଟ ଜାଆଁଳା ଭାଇ*
*ନହୁଅ ତାହାଙ୍କ ହୁହାଁଳ ଗାଈ*
*ମଂଗରାଜ ତୁମ ଲଢୁଆ ବୀର*
*ଶିଡ଼ି ବାକ୍‌ସରେ ଭୋଅଟ ଭର ।*

ଅତୀତରେ କଳିଙ୍ଗର ଲୋକ ସାହସିକ ଥିବାର ପ୍ରମାଣଠ ରହିଛି । ତା ମୂଳରେ ପାଇକ-ସଂସ୍କୃତି, ମାତ୍ର କ୍ରମେ ଏ ସଂସ୍କୃତି ଲୋପ ପାଇଗଲାଣି । କ୍ରମେ ଏ ଜାତି ଭୀରୁ, ଦୁର୍ବଳ ଓ ଶୂନ୍ୟସାର ହୋଇଗଲାଣି । ଏବେ

ଏଇ ସଂସ୍କୃତିର ପୁନର୍ଜାଗରଣ ଅତ୍ୟନ୍ତ ଜରୁରୀ । ମଂଗରାଜ ଏହାର ଆବଶ୍ୟକତା ଅନୁଭବ କରି ଖଣ୍ଡାୟତ-କ୍ଷତ୍ରିୟ-ମହାସଭା ଗଠନ କରି ଏବଂ ସେହି ଅନୁଷ୍ଠାନର ମୁଖପତ୍ର "ନାୟକ ପ୍ରକାଶ କରିଥିଲେ ମାତ୍ର ତାହା ବେଶୀଦିନ ସ୍ଥାୟୀ ହୋଇ ରହିପାରିଲା ନାହିଁ।

ତୀକ୍ଷ୍ଣ ଧୀଶକ୍ତି, ବିଚକ୍ଷଣ ଉପସ୍ଥିତ ବୁଦ୍ଧି, ନିର୍ଭୀକତା ଓ ସ୍ପଷ୍ଟବାଦୀତା ତାଙ୍କର ସ୍ୱଭାବସୁଲଭ ଗୁଣ ଥିଲା। ଦେଶପ୍ରୀତି ଓ ଜାତୀୟତାବୋଧରେ ସେ ଥିଲେ ସଦା ଉଚ୍ଛଳ। ଜୀବନର ଶେଷପାଏ ସେ ଥିଲେ ଯୁବକ, ଉଦ୍ଦାମତାରେ ଭରପୂର। ଲୋକରେ ପରିଚିତ ଥିଲେ ବାଘ ଭାବରେ। ସେତେବେଳେ ଓଡ଼ିଶାରେ ତିନିଜଣଙ୍କୁ ତେଜିୟାନ ବ୍ୟକ୍ତିତ୍ୱ ଭାବେ ଗଣନା କରାଯାଉଥିଲା। ସେମାନେ ହେଉଛନ୍ତି-- ପଣ୍ଡିତ ନୀଳକଣ୍ଠ ଦାଶ, ଯଦୁମଣି ମଂଗରାଜ ଓ ସରଳା ଦେବୀ। ତେଣୁ ଲୋକ-କବିତା ଗଢ଼ିଆସିଛି

*ନୀଳକଣ୍ଠଙ୍କ ଦାଢି*
*ମଂଗରାଜଙ୍କ ବାଡି*
*ସରଳା ଦେବୀଙ୍କ ଶାଢୀ।*

ପୁଣି ତାଙ୍କ ଭଳି ବାଗ୍ମୀ ଓଡ଼ିଶାରେ ବିରଳ। ଏବେବି ଓଡ଼ିଶାର ପୁରପଲ୍ଲୀରେ କହନ୍ତି କଥା କହିବାରେ ମଂଗରାଜ ପରି ଆଉ ଜଣେ ପୁଅ ଜନ୍ମିନାହାନ୍ତି। ଚମତ୍କାର ବାକ୍‌ଚତୁରୀ ଥିଲା ତାଙ୍କର। ବାସ୍ତବରେ ଓଡ଼ିଆ ଭାଷା ତାଙ୍କଠି ବଶ ମାନିଥିଲା। ଅଗ୍ନିବର୍ଷୀ ବାକ୍ୟ ସହିତ ତୀକ୍ଷ୍ଣ ବ୍ୟଙ୍ଗ ଓ ବିଶୁଦ୍ଧ ହାସ୍ୟରସ ସଂଯୋଗ କରି ଉପସ୍ଥିତ ଶ୍ରୋତାଙ୍କୁ ମନ୍ତ୍ରମୁଗ୍ଧ କରିଦେଉଥିଲେ।

ଓଡ଼ିଶାରେ ହାସ୍ୟରସ ବୋଇଲେ ଯଦୁମଣି ପଛକୁ ଯଦୁମଣି। ପ୍ରଥମଟି ମହାପାତ୍ର ଦ୍ୱିତୀୟଟି ମଂଗରାଜ। ଯେ ତାଙ୍କର ଭାଷଣ ଶୁଣିଛି ବା ବ୍ୟକ୍ତିଗତ ସଂଳାପ-ସାରା ଜୀବନ ଭୁଲି ପାରିନାହିଁ ତାଙ୍କୁ। କେବଳ ବାହାରେ ନୁହେଁ, ନିଜ ଘରେ ମଧ୍ୟ ସ୍ତ୍ରୀ ପୁଅଝିଅ ସଭିଙ୍କ ସଂଗରେ ଥଟ୍ଟା। ଅନବରତ ଥଟ୍ଟା। ରାଗ ଓ ହସରେ ପ୍ରତିଟିଦିନ ବିତିଯାଏ ଏକ ଅପୂର୍ବ ସ୍ୱାଦରେ। ମୁଁ କେତୋଟିର ଉଦାହରଣ ଦେଉଛି-

ପିଲାମାନେ ଅଳ୍ପ ବୟସର। ପୁଅ ସ୍ୱରାଜ ନୂଆ ଜୋତା ହଳେ କିଣି ଆନନ୍ଦରେ ଅଧୀର। ବାହାର ବାରଣ୍ଡାରେ ତାର ଅନ୍ୟତମ ସାଂଗକୁ ଜୋତା ଦେଖାଇ କହୁଛି: ଦେଖିଲୁ ମୋ ଜୋତା କିମିତି ଦିଶୁଛି ? ସେ ଦେଖି ଜୋର୍‌ରେ କହିଲା- ଭାଇ ଜଳୁଛିରେ ଜଳୁଛି। ମଂଗରାଜବାବୁ ଘରୁ ଡ଼ାକଛାଡ଼ିଲେ ଗ୍ୱକରଟିକୁ; ଆରେ ଜଲ୍‌ଦି ପାଣି ଦି'ବାଲ୍‌ଟି ଆଣ। ଗ୍ୱକର ପାଣି ଆଣନ୍ତେ ଦୁଇବାଲ୍‌ଟିଯାକ ପାଣି ଓ ଜାଡ଼ିଦେଲେ ପୁଅର ଜୋତା ଉପରେ। କହୁଥାନ୍ତି ମୋ ପୁଅ ଗୋଡ଼ ଜଳିଯାଇଥାନ୍ତା। ଏ ନିଆଁଲଗା ଜୋତା ତୋତେ କିଏ ଦେଲାରେ ?

ଆଉ ଦିନକର କଥା। ପିଲାଙ୍କୁ ଧରି ଯଦୁମଣି ବଜାରବୁଲିଗଲେ। ବାପା ଏମିତି ବଜାର ବୁଲାଇବା କ୍ୱଚିତ୍। ଫୁଲିଉଠି ବାପାଙ୍କୁ ଅଝଟ କଲେ ଲୁଗାଜାମା କିଣିବା ପାଇଁ। ବାପା ସେମାନଙ୍କ କଥାରେ ରାଜିହୋଇ ନେଇଗଲେ ବଡ଼ ଦୋକାନକୁ। ଦୋକାନୀମାନେ ମଂଗରାଜ ବାବୁଙ୍କୁ ଦେଖି ଦାମୀନାମି ଲୁଗାପଟା ଦେଖାଇଲେ ପିଲାଙ୍କୁ। ପିଲେ ବଡ଼ ଖୁସି। ପିଲାଙ୍କ ବଛା କପଡ଼ା ଦୋକାନୀ କାଟିଲାବେଳକୁ ମଂଗରାଜ ବାବୁ କହିଲେ ଦେଖ, ମୋ ପିଲା ପଞ୍ଚମ ଷଷ୍ଠର ଛାତ୍ର। ଶ୍ରେଣୀକୁ ଗ୍ୱହିଁ କପଡ଼ା ଦିଅ। ଦୋକାନୀ ଶଙ୍କିଯାଇ ଦେବାକୁ ମନା କରିଦିଏ ପିଲାଙ୍କୁ। ବଡ଼ ବିରକ୍ତିରେ ପିଲେ ସେ ଦୋକାନରୁ ଓହ୍ଲାଇ ବାପାଙ୍କ ଉପରେ ଗର୍‌ଗର୍ ହେଉଥିବାବେଳେ ସେ ସେମାନଙ୍କୁ ଆଉ ଏକ ଦୋକାନକୁ ନିଅନ୍ତି। ସବୁଠି ଏକା କଥାସାରା ଚଉଧୁରୀ ବଜାର ବୁଲିସାରିବା ପରେ ବାପା କହନ୍ତି: ମୋର ଦୋଷ ନାହିଁ, ତୁମେ ଲୁଗା କିଣି ପାରିଲନାହିଁ। ପାଠକୁ ଗ୍ୱହିଁ ଲୁଗା ଅଳ୍ପା ହୋଇ ପିଲେ ନିରାଶରେ ଫେରନ୍ତି ଘରକୁ, ଏବେ ଅପସଂସ୍କୃତି ଏମିତି ମାଡ଼ିଗଲାଣି ଯେ, ସଂସ୍କୃତି ନିଶ୍ଚିତ ହେବା ଉପରେ ସିନେମାରେ ଅତି ନଗ୍ନ ଓ ଅଶ୍ଳୀଳ ଦୃଶ୍ୟମାନ ସଦର୍ଶନ କରାଯାଉଛି। ଏହା ଭବିଷ୍ୟତ ସମାଜକୁ ଧ୍ୱଂସ କରିବ। କିଏ ତାର ପ୍ରତିବାଦ କରୁଛି ? ହେଲେ, ମଂଗରାଜ ଏହା ବିରୁଦ୍ଧରେ ସ୍ୱର ଉଠାଇଥିଲେ। ସେ ପ୍ରାୟ ସିନେମା ଯାଆନ୍ତି ନାହିଁ। ସେତିକିବେଳକୁ କ୍ୟାପିଟାଲ ସିନେମା ହଲ୍‌ରେ ଗ୍ୱଲୁଥାଏ ପ୍ରସିଦ୍ଧ ଚିତ୍ର ମୋଗଲ--ଏ-ଆଜାମ୍" ଦାର୍ଶକଙ୍କ ପ୍ରବଳ ଭିଡ଼। ସମସ୍ତଙ୍କ ମୁହଁରେ ଚିତ୍ରଟିର ପ୍ରଶଂସା ଶୁଣି ତାଙ୍କ ସ୍ତ୍ରୀ ଓ ପିଲାମାନେ ବଡ଼ ଅଝଟ କଲେ ସିନେମା ଦେଖିବାକୁ। ବାପା ରାଜିହେଲେ।

ସେଦିନ ହଲ୍ ଥାଏ ପରିପୂର୍ଣ୍ଣ। ବାଲ୍‌କୋନିରେ ବସି ସିନେମା ଦେଖୁ ଦେଖୁ ଯେଉଁ ହିଟ୍ ଦୃଶ୍ୟରେ ଅଭିନେତ୍ରୀ ମଧୁବାଲା ତାଙ୍କ ବାପାଙ୍କ ରୋଲ୍‌ରେ ଅଭିନୟ କରୁଥିବା ପୃଥ୍ୱୀରାଜକପୁରଙ୍କ ଆଗରେ ଶୀଷ୍ ମହଲ ଭିତରେ ନାଚିନାଚି ଗାଇଉଠିଲେ- "ଯବ୍ ପ୍ୟାର କରନା ତୋ ଡ଼ରନା କ୍ୟା" ଅସମ୍ଭବ ଉତ୍ୟକ୍ତ ହୋଇଉଠିଲେ ମଂଗରାଜ' ହଠାତ୍ ସିଟ୍‌ରୁ ଉଠିପଡ଼ି ଖୁବ ବଡ଼ପାଟିରେ ଚିତ୍କାର କଲେ ବନ୍ଦକର, ବନ୍ଦକର ଏ ସିନେମା। ବାପ ଆଗରେ ଝିଅ ଗାଉଛି, ପ୍ୟାର କରନା ତୋ ଡ଼ରନା କ୍ୟା-- ହାଁ କରି ଗ୍ରହିଁଛି ସମସ୍ତେ! ଛି ଛି- ବନ୍ଦକର ଏ ସିନେମା। ହଲ୍ ଭିତରେ ହୋ ହୋଲ୍ଲା ମଂଗରାଜଙ୍କୁ ଦେଖି କିଏ ବା କ'ଣ କହିବ! ସିନେମା ମାଲିକ ଯୋଡ଼ହସ୍ତରେ କ୍ଷମା ମାଗୁଛି। ହେଲେ, ସେ କିଛି ନଶୁଣି ସ୍ତ୍ରୀଙ୍କ ହାତ ଧରି ଟାଣି ଟାଣି ଓ ପୁଅ ଝିଅଙ୍କ କାନମୋଡ଼ି ଠେଲି ଠେଲି ବାହାର କରି ଆଣିଲେ ସିନେମା ହଲ୍‌ରୁ। ସମସ୍ତେ ଗ୍ରହିଁଅନ୍ତି, ସ୍ତ୍ରୀ ଲଜ୍ଜାରେ ଜଡ଼ସଡ ଓ ପୁଅଝିଅ ବାପାଙ୍କ ଏମିତି କଥାରେ କାନ୍ଦୁଣ ମାନ୍ଦୁଣ। ବାପା ଗର୍ଜି କହୁଥାନ୍ତି: ଏଇସବୁ କଥା ଶିଖିବ ବୋଲି ମୋତେ ଉସ୍‌କେଇ ଏଠାକୁ ଆଣିଥିଲ ନା ଘରକୁ ଗ୍ରଲ। ସିନେମା ଏଇ ସବୁ କଥା ଶିଖାଉଛି ମୋ ଦେଶର ପିଲାଙ୍କୁ, ନା, ମୁଁ ଏସବୁକୁ କଦାପି ସହ୍ୟ କରିପାରିବିନି।

ଘର କଥା ଆଉ କହୁନି, ବାହାର କଥାରୁ କେବଳ ଗୋଟିଏ ଉଦାହରଣ ଦେଉଛି- କେନ୍ଦ୍ରାପଡ଼ାରେ ମଂଗରାଜଙ୍କ ରାଜନୀତିକ ପ୍ରତିଦ୍ୱନ୍ଦ୍ୱୀ ଥାନ୍ତି ଦୀନବନ୍ଧୁ ସାହୁ। ଦିଁଜଣଙ୍କ ମଧ୍ୟରେ ପ୍ରବଳ ପ୍ରତିଦ୍ୱନ୍ଦ୍ୱିତା ଥିଲେ ବି ପରସ୍ପର ପ୍ରେମରେ ଅନୁବନ୍ଧ ଥା'ନ୍ତି। ଏକଦା ଦୀନବନ୍ଧୁଙ୍କ ଝିଅଙ୍କର ବିବାହବେଳେ ମଂଗରାଜବାବୁଙ୍କୁ ନିମନ୍ତ୍ରଣ କରାହୋଇନଥାଏ କିନ୍ତୁ ମଂଗରାଜ ନଛୋଡ଼ ବନ୍ଧା, ନିଜେ କଦଳୀପତ୍ରର ପୁଡ଼ାଟିଏ କାଖରେ ଜାକି ଭୋଜିର ଆଗ ଧାଡ଼ିରେ ବସି କଦଳୀ ପତ୍ରଟିଏ ମେଲାଇ ପରଷୁଣିଆକୁ କହନ୍ତି- ଦେବା, ଏଇ ପତ୍ରରେ ଦେ'। ମଂଗରାଜଙ୍କୁ ଦେଖି ସମସ୍ତେ ଚକିତ। ଖବର ପାଇ ଧାଇଁ ଆସିଲେ ଦୀନବନ୍ଧୁ , କୋଳେଇନେଲେ ତାଙ୍କୁ। ସେ କହୁଥାନ୍ତି, ଦୀନବନ୍ଧୁ ତୋ ଝିଅ କ'ଣ ମୋ ଝିଅ ନୁହେଁ ? ମୋତେ ଡ଼ାକ ନ ଡ଼ାକ, ମୋ ଝିଅକୁ ଆଶୀର୍ବାଦ କରି, ଗଣ୍ଡେ ଖାଇ ଯିବି। ପତ୍ର ମେଲେଇ ବସିଛି। ଲାଜରେ ମଉଳିଗଲେ ଦୀନବନ୍ଧୁବାବୁ- ହାତଧରି ଟାଣି ଭିତରକୁ ନେଇଗଲେ। ରାଜନୀତିରେ ଏମିତି ଆତ୍ମୀୟତା ଆଉ ଦେଖାଯାଉନାହିଁ। ଏବର ରାଜନୀତିକ ନେତା ପରସ୍ପରର ଶତ୍ରୁ ପରି ମଂଗରାଜଙ୍କ ମୃତ୍ୟୁବେଳକୁ ନିଜେ ଦୀନବନ୍ଧୁବାବୁ କାନ୍ଦିକାନ୍ଦି ଶୋଭାଯାତ୍ରାର ଆଗେ ଆଗେ ଗ୍ରଲିଗ୍ରଲି ଯାଉଥିବାର ଦୃଶ୍ୟ- ଯହିଁରୁ ବର୍ତ୍ତମାନର ନେତାଙ୍କର କିଛି ଶିଖିବାର ଅଛି।

ବହୁଗୁଣ ସମନ୍ୱିତ ଯଦୁମଣି ମଂଗରାଜ ସେ ଲେଉଟିଗଲେ ଖ୍ରୀ: ୧୯୬୪ ଏପ୍ରିଲ୍ ଦୁଇ ତାରିଖରେ। ତାଙ୍କ ପରି ତେଜିୟାନ୍ ଓ ହସମୟ ବ୍ୟକ୍ତିତ୍ୱକୁ ଭୁଲିହେବ ନାହିଁ।

କେନ୍ଦ୍ରାପଡ଼ା କଲେଜ
କେନ୍ଦ୍ରାପଡ଼ା

• • •

# ମଙ୍ଗରାଜଙ୍କ ପାଠପଢ଼ା

ବାଞ୍ଛାନିଧି ତ୍ରିପାଠୀ

ମନେପଡ଼େ ହଜିଲାଦିନର କଥାଗୁଡ଼ାକ । କାନ୍ଧରେ ବ୍ୟାଗ୍ ଓହଳାଇ କରାଣ୍ଡିଆ କୂଳେ କୂଳେ ଗଲାବେଳେ ସାଙ୍ଗସାଥୀ ମେଳରେ କେତେ ମଉଜ କଥା ପଡ଼େ। ମନେପଡ଼େ ଯଦୁମଣି ମଙ୍ଗରାଜଙ୍କ କଥା । ଆମେ ସବୁ ଗାଁ ଲୋକଙ୍କ ପାଖରୁ ଶୁଣିଥାଉ ମଙ୍ଗରାଜେ କିପରି ପାଠପଢ଼ିଲେ । ପଢିବାବେଳେ କିପରି ଭାରି ମଜାକଥା କହି ସବୁ ସାଙ୍ଗସାଥୀ ଓ ଶିକ୍ଷକମାନଙ୍କର ପ୍ରିୟପାତ୍ର ହୋଇପାରିଥିଲେ। ସ୍କୁଲରେ ପହଞ୍ଚିବା ବିଳମ୍ବହୁଏ। ସେଥିପାଇଁ ଶିକ୍ଷକମାନେ କେତେ ମାଡ ଗାଳି ଦେଇ ମଙ୍ଗରାଜଙ୍କ କଥା ଉଦାହରଣ ଦେଇଥାନ୍ତି। ସ୍କୁଲରେ ଡ଼େରିକରି ପହଞ୍ଚିବା ଆମ କେତେଜଣଙ୍କର ଗୋଟାଏ ରୀତିମତ ଚଳଣିରେ ପଡ଼ିଯାଇଥାଏ । ସ୍କୁଲଟି କରାଣ୍ଡିଆ ନଈକୂଳରେ । ନଈଟି ପ୍ରସିଦ୍ଧ ଲୁଣାନଦୀର କିଛି ଉପରୁ ବାହାରି ପ୍ରାୟ ଛଅ ସାତ ମାଇଲ ତଳକୁ ପୁଣି ମିଶିଯାଇଛି। ବର୍ଷତମାମ୍ ନଈରେ ସୁଅ ଗ୍ଭଲିଥାଏ ଛୋଟ ସାପର ବିଷ ଟାଣ। ଛୋଟିଆ ନଈଟି ମଧ୍ୟ ସମୟରେ ସେଠାକାର ଅଧିବାସୀମାନଙ୍କର କାଳ ହୋଇଥାଏ । ବଢିପାଣି ଆସିଲେ ଜଳଭଉଁରୀ ସାଙ୍ଗକୁ ରାଇରାଇଆ ସୁଅ ପଡ଼େ । ସେତେବେଳେ ଆମର ଏଇ ଛୋଟିଆ ମୁଣ୍ଡରେ ଭୟର ଜମାଟବାନ୍ଧେ, କିନ୍ତୁ ଭଲଲାଗେ ସେହି ସତୀଘାଇ ନିକଟରେ ବଡ଼ ବରଗଛ ଓହଳରେ. ବ୍ୟାଗ୍ ଟଙ୍ଗାଇ ଦେଇ କିଛିସମୟ ବସିବାକୁ, ଯେଉଁ ବରଗଛ ମଙ୍ଗରାଜଙ୍କ ପିଲାବେଳର ଖେଳର ସାମଗ୍ରୀ ହୋଇଥିଲା । ଏମିତି ମନରେ କେତେଆହୁ କେତେକଥା ଢୁକେ ।

ନଈକୂଳରେ କରିଲୋପାଟଣା ଗାଁ। କରିଲୋ ଆଉ ପାଟଣା ଦୁଇଟି ପଡ଼ା। ପ୍ରାୟ ଡ଼ାକେ ବାଟ ତଫାତ୍ । ମଙ୍ଗରାଜଙ୍କଘର କରିଲୋ ଗ୍ରାମରେ । ଘରେ ଥିଲା ସମୟରେ ବେଳେବେଳେ ସ୍କୁଲଆଡ଼େ ଆସନ୍ତି । ପାଠ ପଗ୍ଭରନ୍ତି , କିନ୍ତୁ ଖୁବ୍ ଭଲଲାଗେ ଶୁଣିବାକୁ ତାଙ୍କ ମୁହଁରୁ ଜୀବନରେ ନିଜ ଘଟିଯାଇଥିବା ଅତୀତ କଥାଗୁଡ଼ିକ। ଅଜାଙ୍କ ପାଖରେ ବସି ଅବୋଲକରା କାହାଣୀ, ଦୁଇସଂଗାତ କଥା ଶୁଣିଲାଭଳି ଲାଗେ ମଙ୍ଗରାଜଙ୍କ ଜୀବନର ଘଟଣାବଳୀ, କିଛି ନୂଆକଥା ନୁହେଁ। ସେହି ନଈକୂଳର ସେହି ବରଗଛ, ଆଉ ତା'ରି ପାଖ ସତୀଘାଇ କାହାଣୀ।

ସେ ଜଣେ ଖୁବ୍ ମେଧାବୀ ଛାତ୍ର ଥିଲେ । ତେଣୁ ଶିକ୍ଷକମାନଙ୍କର ଦୃଷ୍ଟିଥାଏ ତାଙ୍କରି ଉପରେ। ମଧ୍ୟଇଂରାଜୀ ପାଠ ଶେଷ କରିସାରିବା ପରେ ବାପା ତାଙ୍କର ମନାକଲେ ଆଉ ବେଶି ପଢାଇବାକୁ । ଭାଗବତ ପୋଥିରୁ ଅଧ୍ୟାୟେ ଆଉ ରାମାୟଣରୁ କାଣ୍ଡେ ବୋଲି ଜାଣିଲେ ପାଠପଢା ଶେଷ । ତା ସାଙ୍ଗକୁ ଦି'ପଦ ଭଲ ଲେଖିଜାଣିଲେ ଖୁବ୍ । ଗ୍ଭଷଥିଲା ତାଙ୍କର ଘରୁଆନା । ମଙ୍ଗରାଜଙ୍କ ଗୋସେଇଁବାପା କହିଲେ ମୁଁ ମାଟିବଂଶ ଅବଧାନ ପାଠପଢି ଯାହା ଧନ କମେଇଛି ସେତକ ତ ଢେର୍। ଆଉ ପାଠ କ'ଣ ଦରକାର। ତେଣୁ ଗୋସେଇଁବାପ ରୋକ୍‌ଠୋକ୍ ମନାକରିଦେଲେ ଯେ ଆଉ ଯଦୁମଣି ପଢିବାପାଇଁ ଯାଇପାରିବ ନାହିଁ। କିନ୍ତୁ ତୁଳସୀ ଦୁଇପତ୍ରରୁ ବାସଲାପରି ମଙ୍ଗରାଜଙ୍କ ଜୀବନର ପ୍ରାଥମିକ କାଳରୁ ଜଣାପଡ଼ିଥିଲା । ବାପା ଓ ଗୋସେଇଁ ବାପଙ୍କର ସେହି କେତେପଦ କଥା ବାଳକ ମନକୁ ଚପାଇ ପାରିନଥିଲା । ପାଠପଢିବା ପାଇଁ ଜିଦ୍ ଧରିବସିଲେ ଏବଂ ପାଠ ନପଢିଲେ ଘରଛାଡ଼ି ପଳାଇବେ ବୋଲି ଧମକ ଦେଲେ। ପିଲାଟିର କଥାକୁ କିନ୍ତୁ ସମସ୍ତେ ହସରେ ଉଡ଼ାଇଦେଲେ।

ରଜପାଇଁ ସଜବାଜ ଗ୍ଭଲିଥାଏ । ଗ୍ଭରିଆଡ଼େ ଆନନ୍ଦ ।

ସାଙ୍ଗସାଥୀମାନେ ମଉଜ କରୁଥାନ୍ତି । କିନ୍ତୁ ବାଳକଟିର କେଉଁଥିରେ ହେଲେ ମନ ନଥାଏ । ଏକା ଜିଦ୍ ପାଠ ନ ପଢିଲେ ଘର ଛାଡ଼ିବେ । ସଜବାଜ ଦିନ ହଳଦୀବଟା, ପରିବାକଟା, ଦାନ୍ତକାଠି କାଟିବା ଆଦି କାମରେ ସମସ୍ତେ ଲାଗିପଡ଼ିଛନ୍ତି । ବୋଉ ପୋଡପିଠା ତିଆରିକରି ରଖିଲେ । ଭୋକନାହିଁ ବୋଲି ଆଳଦେଖାଇ ଉପାସରେ ଶୋଇଲେ । ସମସ୍ତେ ଶୋଇସାରିଲାପରେ ମଙ୍ଗରାଜେ ଉଠି ଲୁଗାକାନିରେ ଗୁଡ଼ି ଛ'ଖଣ୍ଡ ପିଠାଧରି ଘରୁ ବାହାରିଗଲେ ଉଦ୍ଦେଶ୍ୟହୀନ ଭାବରେ । ଏତେ ରାତିରେ ଘରୁ ବାହାରିଯିବା ଗୋଟିଏ ସାମାନ୍ୟ ବାଳକପକ୍ଷେ କମ୍ କଥା ନୁହେଁ । ଡ଼ରଭୟର ପ୍ରଶ୍ନ ନଥାଏ, କିନ୍ତୁ ଯିବେ କୁଆଡ଼େ, ଭରାନଈ । ନାଉରୀ ଡ଼ଙ୍ଗା ବାନ୍ଧିଦେଇ ବହୁତ ଆଗରୁ ଚାଲିଯାଇଛି । କାତମାରି ଡଙ୍ଗା ବାହିନେବା ନିଜପକ୍ଷେ ଅସାଧ । ଶେଷରେ ନିରୁପାୟ ହୋଇ ସେହି ନଈକୂଳରେ ରାତିଟି କଟାଇବା ପାଇଁ ସ୍ଥିରକଲେ । ବରଗଛ ମୂଳରେ ରହିଲେ କାଳେ କେହି ଦେଖିଦେବ । ସେଥିପାଇଁ ପାଖ ନଳିତା କିଆରୀ ଭିତରକୁ ଚାଲିଗଲେ । ପୁରୁଷଉଚ୍ଚ ନଳିତା ବଢିଥାଏ । କାକର ପଡ଼ିବ ଭାବି କିଛି ନଳିତା ଗଛର ଅଗଧରି ଛନ୍ଦିଦେଇ ଛୋଟ କୁଡ଼ିଆଟି ଭଳି କରିଦେଲେ । ତଳେ ଗାମୁଛା ପକାଇ ବସିପଡ଼ିଲେ । ଭୀଷଣ ଭୋକ ଲାଗୁଥାଏ ତେଣୁ ପାଖରେ ଥିବା ପୋଡ଼ପିଠାରୁ କିଛିଖାଇ ନଈର ଗୋଳିଆପାଣି ପିଇସାରିଲା ପରେ ନିଦ ଲାଗିଲା । ରାତି ପାହିବାକୁ ଆହୁରି ସମୟ ଥାଏ । ଟିକିଏ ଘୁମେଇ ପଡ଼ିଲେ ।

ସୁନ୍ଦରା ଫାଟିଲା । ତରବର ହୋଇ ପହିଲି ଭଡ଼ାରେ ନଈ ପାରିହୋଇ ଯିବାକୁ ବାହାରିବା ସମୟରେ ଜଣେ ଲୋକର ଦୃଷ୍ଟି ପଡ଼ିଗଲା । ଧରାପଡ଼ିଯିବା ଭୟରେ ପୁଣି ସେଇ ସ୍ଥାନକୁ ପଳାଇଗଲେ । କିନ୍ତୁ ଏତେ ଭୋରରୁ ପିଲାଟିଏ ନଈକୂଳକୁ ଆସି ଲୁଚିଯିବାର ସନ୍ଦେହ କରି ନଳିତାକିଆରୀ ଭିତରେ ଖୋଜି ପିଲାଟିକୁ ଧରିଲେ । ଧମକ ଦେଇ ପଚାରିବାରୁ ବାଳକ ଜଣକ ସବୁ କଥା ମାନିଗଲେ । ତା ପରେ ଲୋକଟି ତାଙ୍କୁ ସାଙ୍ଗରେ ଧରି ତାଙ୍କ ଘରକୁ ନେଲେ । ଏପରି ଘଟଣା ଦେଖି ସମସ୍ତେ ବିସ୍ମିତ ହେଲେ । ଶେଷରେ ସ୍କୁଲକୁ ଯିବାପାଇଁ ବାପା ଏବଂ ଗୋସେଇଁ ବାପା ପ୍ରତିଶ୍ରୁତି ଦେଲେ ।

ମାଟ୍ରିକ୍ ପରୀକ୍ଷାରେ କୃତିତ୍ୱର ସହ ପ୍ରଥମ ସ୍ଥାନ ପାଇଲେ । ଆଇ.ଏସ୍ ସି. ଓ ବି.ଏସ୍ ସି. ପରୀକ୍ଷାରେ ମଧ୍ୟ ଶ୍ରେଷ୍ଠ ସଫଳିକୃତ ହୋଇଥିଲେ । ଜଟିଳ ପ୍ରଶ୍ନକୁ ମଧ୍ୟ ଖୁବ୍ ସହଜ ଓ ସରଳ ଭାବରେ ସମାଧାନ କରିଦେଉଥିଲେ । ଏତିକି କହିଲେ ହେବ ଯେ ବାଲ୍ୟଜୀବନଠାରୁ ଆରମ୍ଭ କରି ଶେଷ ପର୍ଯ୍ୟନ୍ତ କେଉଁଠାରେ ଦ୍ୱିତୀୟ ସ୍ଥାନ ପାଇନାହାନ୍ତି ।

ଆମ ଜେଜେ ମଙ୍ଗରାଜଙ୍କ ଘରେ ପୁରୋହିତଗିରୀ କରୁଥାନ୍ତି । ସପ୍ତାହକରେ ଅନ୍ତତଃ ଦୁଇତିନି ଥର ତାଙ୍କ ଘରକୁ ଯାଆନ୍ତି । ଜେଜେ ଓ ମଙ୍ଗରାଜଙ୍କ ମଧ୍ୟରେ ଖୁବ୍ ଘନିଷ୍ଠତା ଥାଏ । ଥରେ ମଂଗରାଜଙ୍କ ଘରେ ବଡ଼ ଭୋଜିର ଆୟୋଜନ ହୋଇଥାଏ । ଜେଜେଙ୍କ ଠାରୁ ଶୁଣି ତାଙ୍କ ଘରକୁ ଯିବାପାଇଁ ଇଛାହେଲା । ଭୋଜି ଖାଇବା ପାଇଁ ବିଶେଷ ଲାଳାୟିତ ନଥିଲି ତାଙ୍କୁ ଦେଖିବା ପାଇଁ କେବଳ । କିଛିବାଟରୁ ଜେଜେ ଓ ମୋତେ ଦେଖି ଜେଜେଙ୍କୁ କହିଲେ, "କିହୋ ତିଆଡିଏ କ'ଣ ନାତିକୁ ମନ୍ତ୍ର ଦେଲଣି ?" ମୋ ପିଠିରେ ହାତ ବୁଲାଇ କହିଲେ "କିହୋ ନାତି ପାଠ ପଢିବ ନା' ଜେଜେଙ୍କ ଭଳି କାନ୍ଧରେ ପୁଡ଼ାବାନ୍ଧି ବୁଲିବ ।" ଲାଜରେ ମୁହଁ ଲୁଚାଇଦେଲି ଜେଜେଙ୍କ ପଛଆଡ଼େ ! ବାଧରେ ମୁଣ୍ଡକୁ ଟୁଙ୍ଗାରି ହଁ ଭରିଥିଲି ।

ବିଧାତା ମନ୍ଦ ପାଞ୍ଚିଲେ । ଜେଜେ ଗଲେ, ତାଙ୍କ ପଛେ ପଛେ ମଙ୍ଗରାଜେ ମଧ୍ୟ ଗଲେ । ମନେପଡୁଛି ସେଦିନର କଥା । ମୃତ୍ୟୁ ସମ୍ବାଦ ପାଇ ମୋ ଆଖିରୁ ଦିଧାର ଲୁହ ଗଡ଼ିପଡ଼ିଥିଲା । ସେହି ଜିଦ୍‌ର ମଙ୍ଗରାଜେ ଆଜି ନାହାନ୍ତି; କିନ୍ତୁ ଯେଉଁ ସ୍ମୃତିଟିକକ ଛାଡ଼ିଯାଇଛନ୍ତି ପ୍ରତ୍ୟେକ ଛାତ୍ର ତଥା ମାନବ ସମାଜ ନିକଟରେ ସେ ଚିରଦିନ ବନ୍ଦନୀୟ ହୋଇ ରହିବେ ।

କରିଲୋପାଟଣା
ଜି: କେନ୍ଦ୍ରାପଡ଼ା

# ଯଦୁମଣି ମଙ୍ଗରାଜ

## ମଧୁ ମହାନ୍ତି

ଷଠୀଘରୁ କେଉଁ ଗଣାକାର ଏ ମହାପୁରୁଷଙ୍କର ଏମିତି ଗୁଣ ବିକାଶିବ ବୋଲି ଜାଣି ନାମକରଣ କରିଥିଲେ ! ଏବେବି ଏ ଷଠୀଘର କେନ୍ଦ୍ରାପଡ଼ା ସହର ଗୋବରୀ ନଈ କୂଳରେ, ବଳଦେବଜୀଉଙ୍କ ହଂଟୀ ପାଖରେ ମାଛ ଚିଙ୍ଗୁଡ଼ି ହାଟ ଲଗାଲଗି ଛେନାପିଠା ଗୁଡ଼ିଆ ସାଇ ଓ ଯୋଡ଼ ଶାଡ଼ି ତନ୍ତୀ ସାହିର ତେଲି ଘଣା ଓ କୁମ୍ଭାର ଶାଳ ନିକଟରେ ରହିଛି ।

ଉତ୍ତରକୁ ଚିତ୍ରୋତ୍ପଳା କୂଳଯାକ ମହାପୁରୁଷଙ୍କ ଗାଦି । ଦକ୍ଷିଣକୁ କରଣ ବ୍ରାହ୍ମଣ ସାହି ଭିତରେ କେଲୁଣୀଙ୍କ ସର୍କସ । ପୂର୍ବକୁ ଆଳି କନିକା ଜମିଦାରୀ ବଂଗଳା ଲାହା ଓ ଓଡିଆ ନରେନ୍ଦ୍ରଙ୍କ କଚେରି । ପଶ୍ଚିମକୁ ଚଷା କେଉଟଙ୍କ ଓ ପାଣ ପଠାଣଙ୍କ ଲଙ୍ଗଳ, ଜାଲ, ବାଉଁଶ ଓ ଛେଳି କାରବାର ।

ଗୁଲନଗର ଯୋଡ଼ ବାଉଁଶ ନଳୀରେ ପଶିଯାଉଥିଲା । କେନ୍ଦ୍ରାପଡ଼ା ରସାବଳୀ ପାକୁଆ ପାଟିରେ ମିଳାଇ ଯାଉଥିଲା । ପାଖକେ ଲଂଗଳଧାରୀ ବଳଦେବ ଆରପାଖରେ କଶ୍ୟପ ବିଦାରି ନୃସିହ, ପାଖକେ ଅତିଥି ସତ୍କାର ଆରପଖରେ ଦୃଷ୍ଟଦମନ । କ୍ଷେତରେ ଝୋଟଠାରୁ ଆଖୁଯାଏ ପାନବରଜ, ନଡ଼ିଆବାରି, କିଆବୁଦା ଓ ବଉଳ ତୋଟା । ଗୃଷୀପୁଅ ସବୁ ସଉକିନି ସାମଗ୍ରୀ ଲଙ୍ଗଳ ମୁଠିଆ ବିଶିନି ସାଙ୍ଗକୁ ଯୁଡ଼ାବନ୍ଧା ଡିଙ୍ଗି କୁନ୍ତିଣୀ । ସାବାସ୍ ପ୍ରକୃତି! ସାବାସ୍ ପ୍ରବୃତ୍ତି ?

ଯଦୁମଣିଙ୍କ ରହସ୍ୟ ମଙ୍ଗରାଜଙ୍କ ନୌକା । କି ଅପୂର୍ବ ସମନ୍ୱୟ! ଗୋଟିଏ ବ୍ୟକ୍ତିତ୍ୱରେ ପୁଣି ଡେ଼ପୁଟି ବାଚସ୍ପତି, ଦୀର୍ଘତମ କାରାବାସ । ପଠପଡା କଲେଜଯାଏ ପୁଣି ଯୁକ୍ତିତର୍କର ପାଣ୍ଡିତ୍ୟରେ ଗୋଦାବରୀଶ ଓ ନୀଳକଣ୍ଠଙ୍କୁ ପାଣି ପିଆଇ ଦିଅନ୍ତି ।

ଆଗ୍ରରରେ ଗାନ୍ଧୀବାଦୀ, ବିଗ୍ରରରେ ପାଇକ ପୁଅ ଖଣ୍ଡା ସନ୍ତକ, ଠେଙ୍ଗା ହାତୁଆ ।

କଥାରେ ବାଟୁଳି ବାଜିବ ନାହିଁ, କାମରେ କୁଦି ପଡ଼ିବେ ପାଇକଛି ମାରି, ଛାତିଫୁଲାଇ ବାହାଦିଟି ।

ହୁଣ୍ଡା ନୁହନ୍ତି କି ଗୁଣ୍ଡା ନୁହନ୍ତି । ମଣିଷଧର୍ମୀ ପୁରୁଷସିଂହ, ଯାଙ୍କ ଅଶିକ୍ଷିତ ପଟୁତାରେ ଅକପଟତା ଆତ୍ମପ୍ରତ୍ୟୟ । କାତମାରି ଗୀତ ଗାଇବେ ।

*ବଳଦ ଅଡ଼ାଇ ଠେକା ବାନ୍ଧିବେ ।*
*ପାଞ୍ଚଣ ଧରି ଗୋବର ପୋଛିବେ ।*
*କଠିଣ ଓ କୋମଳର କି ମାଧୁର୍ଯ୍ୟ ।*
*ଛୋଟରେ ପେଟ ପୂରେ ନାହିଁ*
*ବଡ଼ ନ ହେଲେ ପସନ୍ଦ ହୁଏ ନାହିଁ,*
*"କଟରା" ନୁହେଁ କଂସା*
*ନୋଟା ନୁହେଁ ଗରା*
*ହାଣ୍ଡି ନୁହେଁ ହଣ୍ଡା*
*ଓଳିଆ ନୁହେଁ ଅମାର*
*ଘମ ନୁହେଁ ଖଣି*
*ସଉପ ନୁହେଁ ହେଁସ*
*ଫେଣାଏ ନୁହେଁ କାନ୍ଧିଏ*
*ଆଜି ଉପମାରେ ଏତିକି– ।*

କେତେ ସୁଖ ଦୁଃଖ, କେତେ ହସକାନ୍ଦ ଏକ ମେଘରେ ବିତାଇଛେ ।

ସ୍ମୃତିର ସେ ଗନ୍ତାଘର ଆଜିକା ରୁଚିକୁ ଅସ୍ୱାଦ, ବିଦେଶୀ ବଇଦ କ'ଣ ଆମ ପୁରୁଣା ଘିଅ ଆଉ ପୁରୁଣା ଗୁଉଳକୁ ଗ୍ରହଣୀର ପଥ୍ୟ ବୋଲି କହିବେ ? ତେଣୁ ଯଦୁମଣିଂକ ଶ୍ରାଦ୍ଧରେ ଏଗୁଣ୍ଡାକୁ ମାଧୁକରି ମାପ ।

ଗୋପବଂଧୁଙ୍କ ଗାଁ ମୁଣ୍ଡ ମଶାଣି ପାଖରେ ବନବାସୀ ରାମଚନ୍ଦ୍ର ବାଲିରେ ଯେଉଁ ପିଣ୍ଡ ବାଢିଥିଲେ ତାହା ଆଜି

ବରାଳ ଗାଁର 'ବାଲୁକେଶ୍ୱର ବୌଦ୍ଧ' ରୂପେ ପୂଜିତ। କାଳରେ ସେ କାରଣ ଦିନେ ଚିହ୍ନାଇବ ମଂଗରାଜଙ୍କୁ।

କ'ଣ କରିଥିଲେ, ନକରି ଥିଲେ- କେତେ ଗୁଣ କେତେ ଦୋଷ ଥିଲା ସେ ତଉଲରେ ନାହିଁ-ଓଡ଼ିଆ ଗ୍ରଷୀ ପୁଅର ସ୍ୱାଧୀନତା ସଂଧାନର ସଂଗ୍ରାମୀ ପୁରୁଷ ପ୍ରତିମା ରୂପେ।

ଯଦୁମଣିଙ୍କ ଜନ୍ମଭୂମି କେନ୍ଦ୍ରାପଡ଼ା ଅଞ୍ଚଳର କେଉଁ ଗଉଡ଼, ଚଷା, ତେଲି ତନ୍ତୀ, କୁମ୍ଭାରଙ୍କ ଶ୍ରମ ଅର୍ଜନରୁ ଯେଉଁ ରଜା ଜମିଦାର ବଣିଆ ବେପାରୀ ଶ୍ରେଣୀର ଉଦ୍‌ଭବ, ତାଙ୍କରି ଅନୁଗ୍ରହ କାମୀ କରଣ ବ୍ରାହ୍ମଣଙ୍କ ବିବାଦରେ ଗ୍ରଲିଆସିଛି ଗତାନୁଗତିକ ପ୍ରତିଦ୍ୱନ୍ଦ୍ୱିତା।

ଏକଥା ଏଥର ଦିଲ୍ଲୀ ରେଡ଼ିଓରେ କୁହାଯାଉଛି। 'ଲିଙ୍କ' କାଗଜରେ ଛପାଯାଉଛି। ଗୋଷ୍ଠୀଉନ୍ନୟନ ଯୋଜନାରେ ଏନ୍. ପଟ୍ଟନାୟକ ଗବେଷଣା କରିଛନ୍ତି। ଓଡ଼ିଆ ସମାଜର ଏହି ବିଷ ବ୍ରଣକୁ ଆମ ଶିକ୍ଷିତ ସମାଜ ଯେତେ ଘୋଡ଼ାଇଲେ ବି ଲୁଚିଛି ନା ଗୋଡ଼ ଦୁଇଟି ଦିଶୁଛି।

ଏହାରି ଆତ୍ମିକ ପ୍ରଚୋଦନାରେ ପାଣ ପୁଅ ପହଲି ମଳିକ, କନିକା ଜମିଦାରୀ ସବର୍ଣ୍ଣ ମଣ୍ଡଳୀରୁ ଭୋଟ ବିଜୟୀ।

ପୂର୍ବ ପୁରୁଷଙ୍କ ପାପର ପ୍ରାୟଶ୍ଚିତ୍ତ କଲେ ଏଥର ପହଲି ସାବାଳକ ଭୋଟର। ପାଣିଶୂଳିଆ, କାତମରା ଯିଏ ଲୁଣିମରା ଜମିକୁ ବନ୍ଧ ବାନ୍ଧି ବଂଚିଛନ୍ତି। ତୁଚ୍ଛାକୁ କ'ଣ ନା ମହାକାଳପଡ଼ା।

ମହାକାଳରେ ସମ ଦର୍ଶନକୁ କେଉଁ ଚତୁର କେତେଦିନ ଠେଲି ରଖିବ। କିଏ କେତେଦିନ କବାଟ କିଳି ଖିରି ହାପୁଡ଼ିବ ? ଯଦୁମଣିଙ୍କ ସାଧନା ଓ ଦ୍ୟୋତନା ମହାପ୍ରଦାସ ମୈତ୍ରୀ ମନ୍ତ୍ରର ସ୍ୱଧର୍ମ ବିପ୍ଳବର ଏକ ଆଦ୍ୟ ଅଧ୍ୟାୟର ମଂଜି ଫଳିଲା।

ମଳିକ ପୁଅ କରଣ ବ୍ରାହ୍ମଣଙ୍କ ମାଲିକ ହେଲେ। ଜଗନ୍ନାଥଙ୍କ ଖଣ୍ଡିଆ ହାତ ଭିତରେ ସମସ୍ତେ ଆଲିଙ୍ଗନବଦ୍ଧ। ଅପଣା ହାତ ଜଗନ୍ନାଥ ଏହା ହିଁ ଓଡ଼ିଆ ମମତାର ବାଣୀ। କର୍ମର ଚୋଦନା ଗାନ୍ଧିଧର୍ମୀ କାତମରା ମଂଗରାଜଙ୍କ ଲାଗି ଆଜି ଏତିକି କଳନା।

# ଯଦୁମଣି

## ଡକ୍ଟର ହରେକୃଷ୍ଣ ମହତାବ

୧ ୯ ୧ ୭ ମସିହା କଥା । ଆମେ ସବୁ ମଫସଲିଆ ପିଲା କଲେଜରେ ପଢିବାକୁ ଆସିଥିଲୁ । ଯଦୁମଣି ସେତେବେଳେ ଥିଲେ ଆମର ପୂର୍ବାଧ୍ୟାୟୀ ସୁବକ୍ତା ଓ ବିଶିଷ୍ଟ ଛାତ୍ରନେତା ହିସାବରେ ତାଙ୍କର ଖୁବ୍ ସୁନାମ ଥାଏ । ତାଙ୍କ ସ୍ନହିତ ଆମର ପରିଚୟ ହେଲା । ଆମେ ସମସ୍ତେ ଜାତୀୟ କଂଗ୍ରେସ ଡାକରାରେ ଦେଶର ସ୍ୱାଧୀନତା ହାସଲ ପାଇଁ ଲାଗିପଡିଲୁ ।

ମହାତ୍ମା ଗାନ୍ଧୀଙ୍କ ଅସହଯୋଗ ଆନ୍ଦୋଳନରେ ସୂତ୍ରପାତ ହେଲା ୧ ୯ ୨ ୫ରେ । ଆମେ ସମସ୍ତେ ଏହି ଆନ୍ଦୋଳନରେ ଯୋଗଦେଲୁ । ଯଦୁମଣି ଅସହଯୋଗର ବାର୍ତ୍ତା ଗ୍ରାମେ ଗ୍ରାମେ ପ୍ରଚାର କରିବାର ଭାର ଦେଲେ । କାରଣ ସେ ଏପରି ଭାବରେ ବକ୍ତୃତା ଦେଇପାରୁଥିଲେ ଯେ, ଲୋକେ ବିଶ୍ୱାସ ନିଶ୍ଚିତଭାବେ ତା ସଭାକୁ ଆସୁଥିଲେ । ସେ ଯେପରି ରସରସିଆ ମଜାଳିଆ କଥା କହି ହସେଇ ପାରୁଥିଲେ, ସ୍ୱାଧୀନତା ହାସଲ ପାଇଁ ଅଗ୍ନିବର୍ଷୀ ବକ୍ତୃତା ଦେଇ ଦେଶରୁ ଯୁବ ସମାଜକୁ ସେପରି, ତତେଇ ମତେଇ ପାରୁଥିଲେ । ସାଧାରଣ ସଭାରେ ଭାଷଣ ଦେବାରେ ଅସାଧାରଣ ପ୍ରତିଭା ତାଙ୍କର ଥିଲା ।

ଯଦୁମଣି ଭଲ ରାନ୍ଧି ଜାଣିଥିଲେ । ଜେଲରେ ଥିବାବେଳେ ହାତରେ ରାନ୍ଧି ଆମକୁ ଖୁଆଉଥିଲେ । ତାଙ୍କର ଏଥିରେ ଥିଲା ଅପୂର୍ବ ଆନନ୍ଦ । ବିଭିନ୍ନ ସ୍ଥାନକୁ ସ୍ୱାଧୀନତା ଆନ୍ଦୋଳନର ବାର୍ତ୍ତା ପ୍ରଚାର କରିବା ପାଇଁ ଆମେ ଯାଉଥିବାବେଳେ ଯଦୁମଣି ଦୁଇଟି କାମ କରୁଥିଲେ, ପ୍ରଥମରେ ରାନ୍ଧିବା ଦାୟିତ୍ୱ ଦ୍ୱିତୀୟରେ ଭାଷଣ ଦେବାର ଭାର, ତାଙ୍କ ଭାଷଣରେ ଥିଲା ଯୁବଗୋଷ୍ଠୀ ପାଇଁ ଅଶେଷ ପ୍ରେରଣା । ସେ ଭାରି ମେଳାପୀ ଥିଲେ । ରାଗ ଅହଙ୍କାର ତାଙ୍କୁ ସ୍ପର୍ଶ କରିନଥିଲା ।

୧ ୯ ୬୪ ମସିହାରେ ଯଦୁମଣିର ଦେହାବସାନ ହେଲା । ମୁଁ ରୋଗଶଯ୍ୟାରେ ତାଙ୍କୁ ସାକ୍ଷାତ କରିଥିଲି । ତାଙ୍କ ପାଇଁ ଭଗବାନଙ୍କ ନିକଟରେ ଦୁଇମିନିଟ ପ୍ରାର୍ଥନା କରିଥିଲି । ସମସ୍ତେ ତ ଯିବେ । ସେ ଆଗ ଗଲେ । ତଥାପି ତାଙ୍କର ଗୁଣାବଳୀ, ପ୍ରତିଭା ବ୍ୟକ୍ତିତ୍ୱ ବହୁଦିନ ପର୍ଯ୍ୟନ୍ତ ଏ ଜାତି ମନେରଖିବ ।

• • • •

# ଯଦୁମଣି କଲେଜ ଛାଡ଼ିବା

ରମାଦେବୀ

ଦିନେ ଶ୍ରୀ ପରୀକ୍ଷିତବାବୁ ମତେ ଖଣ୍ଡେ ଛପା କାର୍ଡ ଦେଲେ । ପଢ଼ି ଦେଖିଲି, ସେଥିରେ ଲେଖାଅଛି, ସ୍ୱର୍ଗତ ଯଦୁମଣି ମଙ୍ଗରାଜଙ୍କର ସମସ୍ତ କାର୍ଯ୍ୟର ଏକ ସଂକଳନ ପ୍ରକାଶ ପାଇବ । ସେଥିରେ ପ୍ରକାଶିତ ହେବା ପାଇଁ ମୋ ଅଭିଜ୍ଞତାରୁ ମୁଁ କିଛି ଲେଖିବି । ମୁଁ ଚିନ୍ତାରେ ପଡ଼ିଲି । ସେ ଲୋକ କଲେଜ ପାଠ ଛାଡିବା ପର୍ଯ୍ୟନ୍ତ ନର୍ସିଂହୋମରେ ଶଯ୍ୟାଶାୟୀ ଅବସ୍ଥାରେ ରହିବା ପର୍ଯ୍ୟନ୍ତ ମୁଁ ତାଙ୍କୁ ଦେଖିଛି । ଲେଖିବି କ'ଣ ? ତାଙ୍କ ଭାଷାର ମାଧୁର୍ଯ୍ୟ ଓ ସରସତାକୁ ପ୍ରକାଶ କରିବା ମୋ ପରି ଲୋକ ପକ୍ଷରେ ସମ୍ଭବ ନୁହେଁ । କଥାରେ ମଣିଷ ମନକୁ କିଣିନେବାର କଳାରେ ଆୟତ୍ତ କରିପାରିଥିଲେ । ସହସ୍ରାଧିକ ଜନତାଙ୍କ ସଭାରେ ହେଉ, ଗୁରୁଜନ, ବିଶିଷ୍ଟ ବ୍ୟକ୍ତି, ସାଙ୍ଗ ସାଥି ବା ପିଲାଙ୍କ ସାଙ୍ଗରେ ହେଉ ତାଙ୍କର ହାସ୍ୟରସପୂର୍ଣ୍ଣ . କଥା ଶ୍ରୋତାଙ୍କୁ ମନ୍ତ୍ରମୁଗ୍ଧ କରି ରଖୁଥିଲା । ତାଙ୍କ କହିବାର ଭଙ୍ଗୀ ଶୁଣିବା ଲୋକଙ୍କ ପାଖରେ ଗୁରୁତ୍ୱପୂର୍ଣ୍ଣ କରି ଦେଉଥିଲେ । ୧୯୨୧ ମସିହା, ଗାନ୍ଧିଜୀଙ୍କ ଡାକରାରେ ଅସହଯୋଗ ଆନ୍ଦୋଳନରେ ଯୋଗ ଦେବାପାଇଁ ଯେଉଁ ଉଦୀୟମାନ ଯୁବକମାନେ କଲେଜ • ଛାଡ଼ିଥିଲେ, ତାଙ୍କ ଭିତରେ ଯଦୁମଣି ମଙ୍ଗରାଜ ଜଣେ । ସେ ଯୁବକମାନଙ୍କର ସେତେବେଳର ଉନ୍ମାଦନା ଯେ ନ ଦେଖିଛି ସେ ତାହା କିପରି ବୁଝିବ ?

ଅସହଯୋଗ ଆନ୍ଦୋଳନର ବାର୍ତ୍ତା ଉତ୍କଳମଣି ଆଣିବା ସଂଗେ ସଂଗେ କେବଳ ମଣିଷଙ୍କ ମନରେ ନୁହେଁ, ଗଗନ ପବନରେ ମଧ୍ୟ ଅପୂର୍ବ ସ୍ପନ୍ଦନ ଖେଳିଗଲା । ସମସ୍ତେ ନୂଆ ଚେତନାକୁ ଅନୁଭବ କଲେ । ଯେପରି ହଠାତ୍ ଯୁଗ ବଦଳି ଯାଇ କେତେ ବର୍ଷ ଆଗକୁ ଚାଲିଗଲା ।

ସେତେବେଳେ କଟକରେ ମାତ୍ର ଗୋଟିଏ କଲେଜ ଥାଏ । କଲେଜ କର୍ତ୍ତୃପକ୍ଷଙ୍କ ମନରେ ଆଶଙ୍କା ହେଲା ଯେ ଛାତ୍ରଙ୍କ ମନ ଚଞ୍ଚଳ ହେବ । ତେଣୁ ଛାତ୍ରମାନଙ୍କୁ ଆୟତ୍ତରେ ରଖିବା ପାଇଁ ଅଧ୍ୟାପକମାନଙ୍କୁ ସତର୍କ କରାଇ ଦିଆଗଲା ।

ଯଦୁମଣି ମଙ୍ଗରାଜ ସେତେବେଳେ କଲେଜ ହଷ୍ଟେଲରେ ରହୁଥିଲେ । ସ୍ୱର୍ଗତଃ ଆର୍ତ୍ତବଲ୍ଲଭ ମହାନ୍ତି ଜଣେ ନିଷ୍ଠାପର, କର୍ତ୍ତବ୍ୟପରାୟଣ ଏବଂ କଡା ସ୍ୱଭାବର ଅଧ୍ୟାପକ ବୋଲି ସମସ୍ତେ ଜାଣନ୍ତି । ଖାସ୍ ତାଙ୍କ ତତ୍ତ୍ୱାବଧାନରେ ମଙ୍ଗରାଜଙ୍କୁ ରଖାଗଲା, ଜଣେ ଅଧ୍ୟାପକ ମାତ୍ର ଜଣେ ଛାତ୍ରଙ୍କୁ ସମ୍ଭାଳିବା ପାଇଁ ରହିଲେ । ଉଭୟେ ଉଭୟଙ୍କର ସ୍ୱଭାବ ଜାଣନ୍ତି, ଯଦୁମଣି ମନେ ମନେ ଚିନ୍ତାକଲେ ସାର (ଆର୍ତ୍ତବାବୁ ଙ୍କ ହାତରୁ କି ଉପାୟରେ ଖସିବେ । ଆର୍ତ୍ତବଲ୍ଲଭବାବୁ ସିଧା ଯଦୁମଣିଙ୍କ ଶରଣ ପଶି କହିଲେ, "ଯଦୁମଣି, ତତେ ତ ମୋ ଜିମ୍ମାରେ ରଖିଲେ । ତତେ ସମ୍ଭାଳିବାକୁ କ'ଣ ମୋର ବଳ ଅଛି ? ତୁ ଯେପରି ମତେ ଦଗା ନଦେବୁ । ତୁ ମୋ କଥା ମାନି ନଚଳିଲେ ମୋର ବଦ୍‌ନାମ ହେବ ।" ଯଦୁମଣି ମନରେ ଅନ୍ୟ ପ୍ରକାର ଚିନ୍ତା କରୁଥିଲେ ମଧ୍ୟ ସାରଙ୍କ କଥା ମନଦେଇ ଶୁଣିଲେ ।

ଅସହଯୋଗ ଆନ୍ଦୋଳନର ହାଉଆ କଟକ ସହରକୁ ସରଗରମ କରିଦେଇଥାଏ । ସଭାସମିତି ହେବା ଆରମ୍ଭ ହୋଇ ଥାଏ । ଦିନ ୪ଟା ବାଜିଲା, ଯଦୁମଣି ଆର୍ତ୍ତବାବୁଙ୍କୁ କହିଲେ, "ସାର, କେତେ ଆଉ ଘରଟା ଭିତରେ ବସିବା ? ମୋ ଯୋଗୁଁ ଆପଣ ବି କୁଆଡେ ଯାଇଆସି ପାରୁନାହାନ୍ତି । ଚାଲନ୍ତୁ ଟିକିଏ ବଜାର ଆଡେ ବୁଲିଆସିବା ।

ଆର୍ତ୍ତବାବୁଙ୍କର ବାହାରକୁ ଯିବାପାଇଁ ଇଚ୍ଛା ନଥିଲେ ମଧ୍ୟ ମଙ୍ଗରାଜଙ୍କ କଥାଗ୍ରୁତୁରି ତାଙ୍କୁ ମନା କରେଇ ଦେଲାନାହିଁ। ମଙ୍ଗରାଜଙ୍କୁ ନେଇ ବୁଲି ବାହାରିଲେ। ବଜାରକୁ ଯିବାରୁ ଯଦୁମଣି କହିଲେ, "ସାର୍ ଜଳଖିଆ ଦୋକାନକୁ ଗ୍ରଲନ୍ତୁ ଜଳଖିଆ ଖାଇବା।" ସାର୍ ଜଳଖିଆ ଦୋକାନକୁ ନେବାରୁ ମଙ୍ଗରାଜ କହିଲେ, 'ଏ ଦୋକାନଟା ଭଲ ନୁହେଁ ସେ ଦୋକାନକୁ ଗ୍ରଲନ୍ତୁ' ଏମିତି ୩।୪ଟା ଦିନ ଦୋକାନକୁ ଗଲେ ଓ ଜଳଖିଆ ଖାଇଲେ। ଏମିତି କେତେ ଦିନ ଗ୍ରଲିଲା।

ଏଣେ ସହରରେ ପ୍ରଗ୍ରର ହେଲା ଯେ କାଠଯୋଡ଼ି ନଈବାଲିରେ ସଭା ହେବ। ସେ ସଭାରେ ପଣ୍ଡିତ ଗୋପବନ୍ଧୁ ଦାସ ଭାଷଣ ଦେବେ। ଏ ଖବର ପାଇ ଆର୍ତ୍ତବାବୁ ଉଦ୍‌ବିଗ୍ନ ହେଲେ। ଯଦୁମଣିକୁ କିପରି ସମ୍ଭାଳିବେ ? ତାର କଥା କହିବାର କଳା ଓ କୌଶଳ ଏପରି ଯେ ତା କଥା ଭାଙ୍ଗିହେବ ନାହିଁ । କେମିତି ନିଜର ଦାୟିତ୍ୱ ତୁଲାଇବେ ସେ ଚିନ୍ତାରେ ବୁଡ଼ିଗଲେ। ସବୁଦିନ ପରି ସେଦିନ ମଧ୍ୟ ଗ୍ରରିଟା ବାଜିବା ଦେଖି ଆର୍ତ୍ତବାବୁ ପ୍ରମାଦ ଗଣିଲେ, ଯଦୁମଣି ବୁଲି ବାହାରିଲେ। ଆର୍ତ୍ତବାବୁ କହିଲେ, ଆଜି କ'ଣ ବୁଲି ନଗଲେ ହେବନାହିଁ ? ଥାଉ, ଆଜି ବୁଲି ଯିବାନାହିଁ। ଯଦୁମଣି ତ ବୁଲିଯିବା ପାଇଁ ଉଦ୍‌ଗ୍ରୀବ। ସଙ୍ଗେ ସଙ୍ଗେ କହିଲେ, "ସାର୍ ସେ କଥା କିପରି ହେବ ? ଗ୍ରଲନ୍ତୁ ଟିକିଏ ବୁଲିଆସିବା।" ଆର୍ତ୍ତବାବୁ କହୁଥିଲେ, ଯଦୁମଣିର ସେ କଥା ପଦକରେ ଏପରି କ'ଣ ଥିଲା, ଯାହାପାଇଁ ସେ ଆଉ ଦ୍ୱିରୁକ୍ତି ନକରି ବୁଲି ବାହାରିଲେ। ସେଦିନ ଯଦୁମଣିଙ୍କର ଜଳଖିଆ ଦୋକାନ ଆଡ଼କୁ ମନ ନାହିଁ। ମନ କାଠଯୋଡ଼ି' ନଈକୂଳ ଆଡ଼କୁ। ଏଣେତେଣେ ଟିକିଏ ବୁଲାବୁଲି କରି ଯଦୁମଣି କହିଲେ, "ସାର୍, ଗ୍ରଲନ୍ତୁ କାଠଯୋଡ଼ିକୂଳ ପଥରବନ୍ଧରେ ଟିକିଏ ବସିବା। ଖୋଲା ଜାଗାରେ ବସିଲେ ଭଲ ଲାଗିବ।" ଆର୍ତ୍ତବାବୁ ସବୁ କଥା ବୁଝିପାରୁଥିଲେ ମଧ୍ୟ ମଙ୍ଗରାଜଙ୍କ ଅଳିକୁ ଉପେକ୍ଷା କରିବା ତାଙ୍କ ସାଧ୍ୟର ଅତୀତ ଥିଲା। ଦୁହେଁ ନଈକୂଳକୁ ଯାଇ ପଥରବନ୍ଧ ଉପରେ ବସିଲେ। ନଈବାଲିରେ ଲୋକ ଜମା ହେଉଥାନ୍ତି। ଆର୍ତ୍ତବାବୁ କହିଲେ, "ଯଦୁମଣି, ଗ୍ରଲ ହଷ୍ଟେଲକୁ ଯିବା।" ଯଦୁମଣି କହିଲେ, "ନାହିଁ ସାର୍, ଆଉ ଟିକିଏ ବସିବା।" ସଭାକାର୍ଯ୍ୟ ଆରମ୍ଭ ହେଲା। ପଣ୍ଡିତ ଗୋପବନ୍ଧୁ ଭାଷଣ ଦେବାପାଇଁ ଠିଆହେଲେ ଏବଂ ଭାଷଣ ଦେଉ ଦେଉ ଯେତେବେଳେ ଅସହଯୋଗ ଆନ୍ଦୋଳନରେ ଯୋଗ ଦେବା ପାଇଁ ଯୁବକମାନଙ୍କୁ ଆହ୍ୱାନ କରିଲେ, ସେ ଆହ୍ୱାନ ଶୁଣି ଯଦୁମଣି କହିଲେ "ସାର୍ ଶୁଣିଲେ, ଦାସେ ଆପଣେ କିପରି ଆମକୁ ଡାକୁଛନ୍ତି। ମୁଁ ଆଉ ବସିବି କ'ଣ ? ମୁଁ ଯାଉଛି ସଭାକୁ। ଆପଣ ହଷ୍ଟେଲକୁ ଯାନ୍ତୁ।" ଏହା କହି ଆଉ ଉତ୍ତର ପାଇବାକୁ ଅପେକ୍ଷା ନରଖି ଯଦୁମଣି ପଥରବନ୍ଧ ତଳକୁ ଓହ୍ଲାଇ ଯାଇ ସଭାରେ ହାଜର ହେଲେ। ଆର୍ତ୍ତବାବୁ ଏକା ବସାକୁ ଫେରିଲେ।

ଏ ଘଟଣା ଘଟିବାର ବହୁବର୍ଷ ପରେ ଅଧ୍ୟାପକ ମହାଶୟ (ଆର୍ତ୍ତବଲ୍ଲଭ ମହାନ୍ତି) ମତେ ଏକଥା ଶୁଣାଇଲେ। ସେ କହିବାବେଳେ ମନେ ହେଉଥାଏ ଯେପରି ତାଙ୍କ କଥାରୁ ଯଦୁମଣିଙ୍କ ପ୍ରତି ବାତ୍ସଲ୍ୟ ସ୍ନେହ ଝରିପଡୁଛି ଏବଂ ଏପରି ଛାତ୍ରର ତତ୍ତ୍ୱାବଧାରକ ହେବାର ସୁଯୋଗ ତାଙ୍କୁ ମିଳିଥିବାରୁ ସେ ଯେପରି ନିଜକୁ ଧନ୍ୟ ମନେ କରୁଛନ୍ତି।

• • • •

# ସ୍ୱରାଜ୍ୟ ଆନ୍ଦୋଳନର ସେନାପତି ମଙ୍ଗରାଜେ

ଶ୍ରୀହର୍ଷ ମିଶ୍ର

ଭାରତ ଆଜି ସ୍ୱାଧୀନ । ଏହା ମଧ୍ୟରେ ରାଜନୀତି ରଙ୍ଗମଞ୍ଚରେ ବହୁ ନୂତନ ମୁଖର ଆବିର୍ଭାବ ଘଟିଛି । କିନ୍ତୁ ଦୁର୍ଦ୍ଧର୍ଷ ବ୍ରିଟିଶ ସାମ୍ରାଜ୍ୟବାଦୀଙ୍କ କବଳରୁ ଆକୁମାରୀ ହିମାଚଳ ଭାରତବର୍ଷର ମୁକ୍ତି ସାଧନ ନିମନ୍ତେ ଅର୍ଦ୍ଧ ଶତାବ୍ଦୀରୁ ଅଧିକ କାଳଧରି ଯେଉଁ ସ୍ୱାଧୀନତା ସଂଗ୍ରାମ ଚାଲିଥିଲା, ତାହାର ପ୍ରାରମ୍ଭରୁ ଶେଷଯାଏ ଏଭଳି ଅନେକ ବ୍ୟକ୍ତି ଅତୀବ ନିଷ୍ଠା ଓ ଆନ୍ତରିକତା ସହିତ ସବୁ ପ୍ରକାର ଦୁଃଖ, କ୍ଳେଶ ଓ ଅତ୍ୟାଚାରକୁ ଭ୍ରୂକ୍ଷେପ ନକରି ଜଡ଼ିତ ଥିଲେ, ଯେଉଁମାନଙ୍କୁ ଏବେ ରାଜନୀତି କ୍ଷେତ୍ରର ନବାଗନ୍ତୁକମାନଙ୍କ ମଧ୍ୟରୁ ହୁଏତ ଅନେକ ଜାଣି ନଥିବେ, ଅଥଚ ସ୍ୱାଧୀନତା ପାଇଁ ଜାତୀୟ କଂଗ୍ରେସର ନେତୃତ୍ୱରେ ହୋଇଥିବା ଉଦ୍ୟମ କେବଳ ସେହିମାନଙ୍କ ଯୋଗୁଁ ହିଁ ସାର୍ଥକ ଲାଭ କରିପାରିଛି ।

ସେହି ପୁଣ୍ୟ ଶ୍ଳୋକ ଜାତିର ବୀରମାନଙ୍କ ମଧ୍ୟରୁ ଅନେକ କାଳର କରାଳ କବଳରେ ପଡ଼ି ବିଦାୟ ନେଲେଣି । ଅନେକେ ଏବେ ମଧ୍ୟ ଅଛନ୍ତି । ପୁଣି ଜୀବିତମାନଙ୍କ ଭିତରୁ ମାତ୍ର ଅଳ୍ପ କେତେକ ହିଁ ଆଜିର ରାଜନୈତିକ ରଙ୍ଗମଞ୍ଚରେ ପରିଚିତ ହୋଇ ପାରିଛନ୍ତି ।

ସ୍ୱାଧୀନତା ପ୍ରାପ୍ତିର ୧୭ ବର୍ଷ ପରେ ୧୯୬୪ ଏପ୍ରିଲ ଦୁଇ ତାରିଖ ଦିନ ଓଡ଼ିଶା ଏଭଳି ଜଣେ ବ୍ୟକ୍ତିଙ୍କୁ ହରାଇଲା ଯାହାଙ୍କ ନାମ କେବଳ ଆମ ରାଜ୍ୟ ନୁହେଁ ଭାରତର ସ୍ୱାଧୀନତା ଆନ୍ଦୋଳନ ଇତିହାସରେ ଅକ୍ଷୁଣ୍ଣ ରହିବ ସେ ହେଉଛନ୍ତି ସ୍ୱର୍ଗତ ଯଦୁମଣି ମଙ୍ଗରାଜ । ଓଡ଼ିଶାରେ ଜାତୀୟ କଂଗ୍ରେସର ଆଦି ପ୍ରତିଷ୍ଠାତାମାନଙ୍କ ଭିତରୁ ସେ ଥିଲେ ଅନ୍ୟତମ ।

୧୯୨୧ ମସିହାରେ ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନର ଡାକ ତତ୍କାଳୀନ ଓଡ଼ିଶାର ଯେଉଁ କେତେଜଣ ଯୁବକଙ୍କୁ ଅଭିଭୂତ କରିଥିଲା ସେମାନଙ୍କ ଭିତରେ ଅଗ୍ରଗଣ୍ୟ ଥିଲେ ମଙ୍ଗରାଜ । ୧୯୨୧ ର ଅସହଯୋଗ ଆନ୍ଦୋଳନଠାରୁ ସ୍ୱାଧୀନତା ପ୍ରାପ୍ତିଯାଏ ସେ ନିଜକୁ ଜାତିପାଇଁ ସଂପୂର୍ଣ୍ଣ ଉତ୍ସର୍ଗ କରି ଦେଇଥିଲେ ।

ଛାତ୍ରାବସ୍ଥାରେ ମଙ୍ଗରାଜ ଥିଲେ ଜଣେ ମେଧାବୀ ଏବଂ ଦୁଃସାହସୀ ଯୁବକ । ବିଜ୍ଞାନପ୍ରତି ତାଙ୍କର ଗଭୀର ଆକର୍ଷଣ ଥିଲା । କିନ୍ତୁ ଅସହଯୋଗ ଆନ୍ଦୋଳନରେ ସକ୍ରିୟ ଭାଗ ନେଇଥିବା ଯୋଗୁଁ ତାଙ୍କୁ କଲେଜ ଛାଡ଼ିବାକୁ ପଡ଼ିବାରୁ ମଙ୍ଗରାଜ ଏକ ଜାତୀୟ ମହାବିଦ୍ୟାଳୟରେ ପାଠ୍ୟକ୍ରମ ଶେଷ କରିଥିଲେ । ଅତ୍ୟନ୍ତ ଗୌରବର ସହିତ ନିଜର ପଦବୀ ଇ.ଝଭ. (ଘପକ୍ଷ) ଅର୍ଥାତ୍ ଜାତୀୟ ମହାବିଦ୍ୟାଳୟରୁ ପ୍ରାପ୍ତ ଡ଼ିଗ୍ରୀ ବୋଲି କହୁଥାନ୍ତି ।

ଓଡିଶାରେ ସ୍ୱରାଜ୍ୟ ଆନ୍ଦୋଳନ ସାର୍ଥକ ହେବା ମୂଳରେ ଯଦୁମଣି ମଙ୍ଗରାଜ ଓ ରାଜକୃଷ୍ଣ ବୋଷ, ପ୍ରମୁଖ ଯୁବଗୋଷ୍ଠୀର ଅବଦାନ କମ୍ ନୁହେଁ । ଉତ୍କଳମଣିଙ୍କ ଏକାନ୍ତ ଅନୁଗାମୀ ଭାବରେ ଏମାନେ ଗାନ୍ଧିଜୀ ତଥା ଜାତୀୟ କଂଗ୍ରେସର ସ୍ୱରାଜ୍ୟର ବାର୍ତ୍ତା ଓଡ଼ିଶାର ପୁରପଲ୍ଲୀରେ ପ୍ରଚାର କରିଥିଲେ ।

ବାଗ୍ମୀ ଭାବରେ ତାଙ୍କର ଅତି ଉଚ୍ଚ ପ୍ରତିଷ୍ଠା ଥିଲା । ସାଧାରଣ ସଭାକୁ ଜନବହୁଳ କରିବା ନିମନ୍ତେ ବକ୍ତା ଭାବରେ ମଙ୍ଗରାଜଙ୍କ ନାମ ପ୍ରଚାର ଯଥେଷ୍ଟ ହେଉଥିଲା । ସେ ଏକ ଧାରାରେ ଓଡ଼ିଆ ହିନ୍ଦୀ, ବଂଗଳା ଓ ଇଂରେଜୀ ଭାଷାରେ ଅନର୍ଗଳ ଭାଷଣ ଦେଇପାରୁଥିଲେ ।

ସ୍ୱର୍ଗତଃ ମଙ୍ଗରାଜ କେବଳ ଯେ ରାଜନୈତିକ କର୍ମୀ କିମ୍ବା ବାଗ୍ମୀ ଥିଲେ, ତାହା ନୁହେଁ, ସାହିତ୍ୟରେ ମଧ୍ୟ ଅତ୍ୟନ୍ତ ଗଭୀର ରୁଚି ରଖିଥିଲେ । ତାଙ୍କର ଜଣେ

ଜେଲ ବନ୍ଧୁ ସ୍ୱର୍ଗତଃ କୃଷ୍ଣଚନ୍ଦ୍ର ପ୍ରଧାନଙ୍କ ପ୍ରତିଷ୍ଠିତ ଅଧୁନାଲୁପ୍ତ ଉତ୍କଳ ବୁକ୍ କଂପାନୀର ମଙ୍ଗରାଜଙ୍କ ଲିଖିତ ଗୋଟିଏ ରାଜନୈତିକ ଉପନ୍ୟାସ ପ୍ରକାଶର ଦାୟିତ୍ୱ ଗ୍ରହଣ କରିବା ମୋର ସ୍ମରଣ ଅଛି । କିନ୍ତୁ ପ୍ରକୃତରେ ଉକ୍ତ ପୁସ୍ତକ ପ୍ରକାଶିତ ହୋଇଥିଲା କି ନାହିଁ ଜଣାନାହିଁ । ଯଦୁମଣିବାବୁଙ୍କ ଠାରୁ ନିଜେ ଶୁଣିଛି ହଜାରୀବାଗ ଜେଲ୍‌ରେ ବନ୍ଦୀ ଜୀବନ କଟାଉଥିବାବେଳେ ସେ ଉକ୍ତ ଉପନ୍ୟାସ ରଚନା କରିଥିଲେ ।

ଏଭଳି ଜଣେ ପ୍ରବୀଣ ଜନନେତା ଏବଂ ସ୍ୱାଧୀନତା ସଂଗ୍ରାମର ଅସୀମ ସାହସିକ ଯୋଦ୍ଧା ସ୍ୱାଧୀନତା ପ୍ରାପ୍ତି ପରେ ଯେଉଁ ନୂଆ ରାଜନୈତିକ ପରିବେଶ ସୃଷ୍ଟି ହେଲା, ସେଥିସହିତ ନିଜକୁ ଖାପଖୁଆଇ ପାରିନଥିବା ଉଲ୍ଲେଖଯୋଗ୍ୟ । ଅବଶ୍ୟ ବ୍ୟବସ୍ଥାପକ ଭାବରେ ସେ ପାର୍ଲିଆମେଣ୍ଟାରୀ ସଚିବ ଓ ଥରେ ଉପବାଚସ୍ପତି ପଦାଭିଷିକ୍ତ ହୋଇପାରିଥିଲେ । କିନ୍ତୁ ସେଥିପାଇଁ ତାଙ୍କର ଶୋଚନା ନଥିଲା । ତାଙ୍କର ସମଗ୍ର ଜୀବନ ତ୍ୟାଗ ଓ ସଂଗ୍ରାମ ଭିତର ଦେଇ ଜନସାଧାରଣଙ୍କର ସେବାରେ ହିଁ ତ ଉତ୍ସର୍ଗୀକୃତ ହୋଇଥିଲା । ସେ ଆଜି ନାହାନ୍ତି । କିନ୍ତୁ ସ୍ୱାଧୀନତା ଆନ୍ଦୋଳନକୁ ସାର୍ଥକ କରିବା ନିମନ୍ତେ ତାଙ୍କର ଅବଦାନ ଜାତୀୟ ଇତିହାସରେ ଅବିସ୍ମରଣୀୟ ରହିବ ।

• • •

# ରସରାଜ

## କବିଚନ୍ଦ୍ର କାଳି ଚରଣ ପଟ୍ଟନାୟକ

ମଙ୍ଗରାଜଙ୍କ କଥା–ସେ ତ ମୋ ଜାଣତରେ ଅଳ୍ପ ନୁହେଁ । ତାଙ୍କ ଜୀବନ କଥା ଲେଖିବସିଲେ ପୋଥିଏ ପାଠ ।

ମୁଁ ମୋ ଅଙ୍ଗେଲିଭା ୩୫/୪୦ ବର୍ଷର କଥାରୁ ଟିକିଏ ବଖାଣୁଛି । ସେ ଯୋଉଠି ଥାଆନ୍ତୁ ଏ କଥାଟା ତାଙ୍କର ପାସୋର ଯାଇନଥିବ ବୋଲି ବିଶ୍ୱାସୁଛି । କାରଣ ହେଲା ଯେ ମଙ୍ଗରାଜେ ବହୁତ ସଭା ସମିତିରେ ଏଇକଥା କହନ୍ତି । ଶୁଣିବା ଲୋକଙ୍କର ମଧ୍ୟ ହେତୁ ଥିବ ।

୧୯୧୭ ମସିହା କଥା । ଖରା ଦିନ । ସେତେବେଳେ ରେଭେନ୍‌ସା କଲେଜ ଚାଲିଥାଏ ଆଜିର କଲିଜିଏଟ ସ୍କୁଲ ଘରେ । ମୁଁ ରହୁଥାଏ ଲାଲବାଗ୍ ଦଉଡ଼ି ଛକ ଉପରେ । ମଙ୍ଗରାଜେ ଥାର୍ଡ ଇଅରରେ ମୁଁ ଫାଷ୍ଟ ଇଅରରେ ଛାତ୍ର । ଚିହ୍ନାପରିଚୟ ହେଲା ତାଙ୍କର ମୋର ଥରେ କଲେଜର ନାଟକବେଳେ ମୋ ଗାଇବା ଶୁଣି । ହଉ ହଉ ମନ ମିଶାମିଶି ଟାଣୁଆ ହେଲା । ନିତି ସେ କ୍ଲାସ ସାରି ମୋ ବସାକୁ ଅବଶ୍ୟ ଆସନ୍ତି । ଆଗେ ଯାହାର ଛୁଟିହୁଏ ସେ ଅପେକ୍ଷା କରିଥାଏ । ବସାକୁ ଆସୁଁ । ଏଇ ମାସ କେଇଟା ତଳେ ହାଇକୋର୍ଟ ସାମନା ଗୋବିନ୍ଦ ସାଉ ମିଠା ଦୋକାନୀ ଅମରପୁରକୁ ଚାଲିଗଲେଣି । ସେ କଟକରେ ସ୍ପଞ୍ଜ ରସଗୋଲା ତିଆରି କରୁଥିଲେ । ବଢିଆ ମିଠା କାରିଗର । ରସଗୋଲା କରନ୍ତି ସ୍ପଂଜ ଭଳି । ସିରା ପାଣିପରି । ତା' ଉପରେ ଗୋଲାପ ଜଳ ଛିଞ୍ଚା ହୋଇଥାଏ । ମଙ୍ଗରାଜ ପକ୍‌କା ଖାଇଲାବାଲା । ମୁଁ ତାଙ୍କୁ ସେଇଥିକି 'ଚଖା' ବୋଲି କହେ । ସେ ବସାକୁ ଆସିଲେ ଗୋବିନ୍ଦ ସାଉ ଦୋକାନ ରସଗୋଲାର ଜରୁର ବରାଦ ହେବ । ଜଳଖିଆ ସରିଲେ ମୋ ଗୀତ ଶୁଣା– ତାଙ୍କ ବରାଦି କେତେ ଗୀତ–ଚାଲେ ବେଳବୁଡ଼ଯାଏ । ପ୍ରାୟ ମାସକୁ ୨୦ ଦିନ ଏଇ ଧାରା ।

ମୋର ସେତେବେଳକୁ "କଳାହାଣ୍ଡିଆ" ମେଘ ବୋଲି ଶିଶୁ କବିତା–ଛୋଟ ବହି ଖଣ୍ଡିଏ ସେ ବେଳର ଅରୁଣୋଦୟ ପ୍ରେସରେ ଛାପା ସରିଥାଏ । ମୁଁ କେତେ ଗୀତ ଲେଖି ଗାଇଥାଏ । ଛାପାହେଲା ବହି–ମୋର ଅନ୍ୟତମ ବନ୍ଧୁ ଆଜିର ନାଟ୍ୟକାର ନାଟ୍ୟପ୍ରେମୀ ରେଡ଼ିଓ ଷ୍ଟେସନରେ ମୁତୟନ ହୋଇଥିବା ଶ୍ରୀମାନ ଶାରଦା ନାୟକଙ୍କ ବାପା ବାସୁବାବୁ ଦତ୍ତ ପ୍ରେସର ମ୍ୟାନେଜର ଏଥର ଏ ଗୀତବହି ଖଣ୍ଡିକ ଛପାଇ ଥାଆନ୍ତି–୨୦ଟି ଗୀତ, ବହି ଖଣ୍ଡିକ ନାଆଁ 'ଚରଣ ଡାଲା' ।

ଦିନେ ମଙ୍ଗରାଜ ଆଉ ମୁଁ ସାଥିହୋଇ କଲେଜରୁ ଫେରି ବସାରେ ଜଳଖିଆ ଖାଇ ସାରିଲୁ । ଗୀତ ଶୁଣିବା ବୋଲି ବରାଦ ହେଲା । ହାର୍ମୋନିୟମ ଧରି ଗାଇବାକୁ ଯାଉଛି । ଏତିକିବେଳେ ବାସୁବାବୁ ପାଞ୍ଚଖଣ୍ଡି ଚରଣ ଡାଲା ବହି ଆଣି ଦେଲେ । ଭାରି ଆନନ୍ଦ ମୋର । ସେହି ବହିରୁ ପହିଲି ଗୀତଟି ଗାଇବସିଲି । ଗୀତଟିର ଘୋଷା ପଦ ହେଲା–

*"ମୁଁ ଗ୍ୱହେଁ ପ୍ରଭୁ ଏକାଟି ଯିବି*
*ତମରି ଦୟାର ଦୁଆରେ*
*ବେଶୀ ଦିନ ଆଉ ଜଳିବାକୁ*
*ମନ କଲା ନାହିଁ ଏଇ ନିଆଁରେ"*

ଗୀତଟିର ଏଇ ଦି' ଧାଡ଼ି ଗାଇବା ସଙ୍ଗେ ସଙ୍ଗେ ଗାଲରେ ମୋର ବ୍ରହ୍ମ ଚାପୁଡ଼ାଟାଏ । ଜୁଳ–ଜୁଳିଆ ପୋକ ସତେ ଆଖି ଆଗରେ ଉଡ଼ିଗଲା । ବାସୁବାବୁ

ବସିଥାଆନ୍ତି । ଆମେ ଦିହେଁ ଚଟସ୍ଥ । ମୁଁ ଲୁହ ଛଳ ଛଳ ଆଖିରେ ଗାଲ ଆଉଁଷି ବଡ଼ ବିଗଡି ଉଠି ପଗ୍ଚରିଲି– 'ତୁମେ ମୋତେ ଗ୍ଚପୁଡ଼ା ମାଇଲ କାହିଁକି ?" ମଙ୍ଗରାଜେ କହିଲେ–"ଗୋଟେ ମାରିଲି କଅଣ, ଆହୁରି ମାରିବି। ମୋ ମନ ବୋଧ ହେବାଯାଏ ମାରିବି।" ପୁଣି ହାତ ଉଞ୍ଚାଇଲେ। ମୁଁ ଘୁଞ୍ଚିଗଲି। ବାସୁବାବୁ ବିଗ୍ଚରା ମଧ୍ୟ ନିହାତି ସହି ନପାରି କାରଣ ପଗ୍ଚରିଲେ । ମଙ୍ଗରାଜେ ତାଙ୍କୁ କହିଲେ– 'ଆପଣ ତୁନି ହୁଅନ୍ତୁ । ଆପଣ କଅଣ ଜାଣିବେ ? ଏ ଲୋକଟା ନିହାତି ସ୍ୱାର୍ଥପର । କହୁଛି– ମୁଁ ଗ୍ଚହେଁ ପ୍ରଭୁ ଏକାଟି ଯିବି ତମରି ଦୟାର ଦୁଆରେ" କିହୋ କାହିଁକି ଆମେ ଦିହେଁ ଜୀବନ ଦିଆ ସାଙ୍ଗ–ଯେ ମୋତେ ଛାଡ଼ିଦେଇ ଏକୁଟିଆ ଯିବ ? ସ୍ୱାର୍ଥପର–ଛୋଟଲୋକ ।

ମୁଁ ଆଉ କଅଣ ଉତ୍ତର ଦେବି । ସେଦିନ ଏତିକିରେ ଗୀତ ବନ୍ଦ। ମଙ୍ଗରାଜେ କିଛି ନ କହି ବାହାରକୁ ଉଠିଗଲେ। ନିକଟସ୍ଥ ଗୋବିନ୍ଦ ସାଉ ଦୋକାନରୁ ଥୋଡ଼ାଏ ରସଗୋଲା ଆଣି, ସେଥିରୁ ଗୋଟେ ମୋ ପାଟିରେ ଗୁଂଜିଦେଲେ । ସେ କେମିତି ଏଇଥିରୁ ବନ୍ଧୁସ୍ନେହୀ, ଭାବ–ରସିକ ବୁଝନ୍ତୁ । କିଛିଦିନ ପରେ ଇଦ୍‌ଗା ପଡ଼ିଆରେ କୁଳବୃଦ୍ଧ ମଧୁବାବୁଙ୍କ ଦ୍ୱାରା ଆୟୋଜିତ ଉତ୍କଳ ସମ୍ମିଳନୀ ବସିଲା । ମଙ୍ଗରାଜେ ସେ ସମ୍ମିଳନୀରେ ଥିଲେ ଜଣେ ଯୁବକ କାରପଟ ଓ ଉତ୍କଳର ଗଞ୍ଜାମ ମିଶ୍ରଣ ପାଇଁ ମଧୁବାବୁ ଲାଗିପଡ଼ି ଥାଆନ୍ତି । ସଭାରେ ଖଣ୍ଡେ କାର୍ଡ଼ ସାଇଜର ବହୁରଙ୍ଗୀ ଛବି (ଗଡ଼ୁଣପୀ ଟୃହପକ୍ଷ–ମପଧଳଶୂପୀ ରପଲସପଦ) ବିକିବାରେ ମଙ୍ଗରାଜେ ଭାଗନେଇ କଲେଜରେ ଆମମାନଙ୍କୁ ବିକିଲେ ବହୁତ କପି। ସେଇଠୁ ସେ ଉ.ର. ରେ ଓଠଷଲ କଲେ। ଘଟଣାବହୁଳ ଜୀବନ ଭିତରେ ମୋ ସହିତ ତାଙ୍କ ସଂପର୍କ ତାଙ୍କ ଜୀବନ ଶେଷଯାଏ ଅତୁଟ ରହିଥିଲା ।

ବିନୋଦ ବିହାରୀରେ ଥରକର ଗୋଟିଏ ଧର୍ମ ସଭାରେ ସ୍ୱର୍ଗତ କୁଳଦା ବହ୍ମଗ୍ଚରୀ ବକ୍ତୃତା ଦେଉଥାଆନ୍ତି । ଦୁହେଁ ଯାଇଥିଲୁ । ଭାବବିହ୍ୱଳ ହୋଇ ମୋତେ ସେ "ମହାଭାବ" ଓ ମୁଁ ତାଙ୍କୁ "ରସରାଜ" ବୋଲି ଡକାଡ଼କି ହେଲୁ । ଯେ ବୋଧହୁଏ ୧୯୧୯ର ଘଟଣା । ସେଇଦିନୁ ଡକାହକାରେ ଚିଠିପତ୍ରରେ ଏଇ ଡ଼ାକ ବଜାୟ ରହିଲା । ତାଙ୍କ ପିଲାଏ ବି ଆମ ଏଇ ସଂବନ୍ଧ ସଂପର୍କ ଜାଣି ମୋତେ ସ୍ନେହ ଶ୍ରଦ୍ଧା କରନ୍ତି ।

ଏଇମିତି ତ କେତେ ଦିନେ କେତେ ଘଟଣା ଅଛି । କହିଛି ତ ଲେଖିଲେ ଖଣ୍ଡେ ପୋଥି ହେବ ।

ମଙ୍ଗରାଜେ ଯେମିତି ସ୍ନେହୀ ସେମିତି ରସିକ, ଭାବୁକ, ଦେଶପ୍ରେମୀ, କର୍ମୀ, ସେବକ ଆଉ ନାମଜାଦା ବକ୍ତା ଥିଲେ । ଲୋକଙ୍କୁ କଥା କଥାରେ ରସାଇ, ହସାଇ, ଚତାଇ ବା ମତାଇ ମୋ ଦେଖାନ୍ତରେ ତାଙ୍କ ସରିସମ ଏକା ସିଏ ।

କୁଆଡେ ଗଲେଣି । ଆଜି ସେ ପଛକଥା ଭାଳି ତାଙ୍କ ଉଦ୍ଦେଶ୍ୟରେ ଆଖି ମୋର ଅଜାଣରେ ଦି'ଟୋପା ଲୁହ ଢ଼ାଳୁଛି ।

ଜଗନ୍ନାଥେ ତାଙ୍କ ଦାୟାଦଙ୍କୁ ତାଙ୍କରି ଆଦର୍ଶରେ ଗଢ଼ି ହେବାର ସୁଯୋଗ ଦିଅନ୍ତୁ । ସ୍ୱର୍ଗରେ ଥାଇ ସେ ହେଲେ ଆନନ୍ଦ ହେବ ।

ସେ ଗତାତ୍ମାର ସଦଗତି ହେଉ ।

• • • •

# ଜ୍ୱଳନ୍ତ ଯୁବ-ନେତୃତ୍ୱର ପ୍ରତୀକ ଯଦୁମଣି

## ପଦ୍ମଭୂଷଣ କାଳିନ୍ଦୀ ଚରଣ ପାଣିଗ୍ରାହୀ

ଯଦୁମଣି ବାବୁଙ୍କ ଶ୍ରାଦ୍ଧ ଉପଲକ୍ଷରେ ଏକ ସ୍ମରଣିକା ପ୍ରକାଶିତ ହେଉଛି ଓ ସେଥିଲାଗି ମୋଠାରୁ ଲେଖାଟିଏ ଲୋଡ଼ିବା ପାଇଁ ସେଦିନ ଛାତ୍ରବନ୍ଧୁ, ପରୀକ୍ଷିତ ଆସନ୍ତି । ଯଦୁମଣିବାବୁ ଯେ ଆମ ପାଖରୁ ଚିରଦିନ ପାଇଁ ବିଦାୟ ଘେନି ଯାଇଛନ୍ତି, ପୁଣି ତାଙ୍କର ଶ୍ରାଦ୍ଧ ସଭା ମଧ୍ୟ ଅନୁଷ୍ଠିତ ହେଉଛି, ଏ କଥା ଛାତ୍ର ବନ୍ଧୁଙ୍କ ଅନୁରୋଧ ଶୁଣି ଆଉ ଥରେ ମୋତେ ମନେପକାଇବାକୁ ପଡ଼ିଲା! ପୁଣି ବିଶ୍ୱାସ କରିବାକୁ ହେଲା ଯେ ଆମେ ତାଙ୍କୁ ହରାଇଛୁଁ ।

ହଁ, ତାଙ୍କ ପ୍ରଥମ ଶ୍ରାଦ୍ଧ ସଭାରେ ବୋଧହୁଏ ମୁଁ ପୌରୋହିତ୍ୟ କରିଥିଲି ଆଉ ତାଙ୍କ ଶବ ଉପରେ ଫୁଲମାଳ ଦେଇଥିଲି ମଧ୍ୟ । ତାହା ଆଗରୁ କଟକ ବଡ଼ ଡାକ୍ତରଖାନାରେ ସେ ପୀଡ଼ିତ ଥିବା ଅବସ୍ଥାରେ ତାଙ୍କୁ ଯାଇ ଭେଟିଥିଲି ।

ସେଦିନ ମୋତେ ସେ ତାଙ୍କ ଛାତ୍ର ଜୀବନର ଗୋଟିଏ ଘଟଣା ବର୍ଣ୍ଣନା କରି ଉତ୍କଳ ଗୌରବ ମଧୁସୂଦନଙ୍କ ଉଦ୍ଦେଶ୍ୟରେ ନିଜ ରୋଗଶଯ୍ୟାରେ ଦୁଇହାତ ଯୋଡ଼ି ବାରମ୍ବାର ନମସ୍କାର କରିବାରେ ଲାଗିଥାନ୍ତି । ଘଟଣାଟି ବୋଧହୁଏ ଏହିପରି-

ପ୍ରାରମ୍ଭରୁ ଉତ୍କଳ ସମ୍ମିଳନୀର ଆଭିମୁଖ୍ୟ ଥିଲା ପ୍ରାଦେଶିକ । ତାହାକୁ ଭାରତ ଜାତୀୟ କଂଗ୍ରେସର ଏକ ଅବିଚ୍ଛେଦ୍ୟ ଅଙ୍ଗରୂପେ ବ୍ୟବହାର କରିବା ପାଇଁ ଅନ୍ୟମାନଙ୍କ ମଧ୍ୟରେ ଯୁବନେତା ଯଦୁମଣି ମଧ୍ୟ ନେତୃତ୍ୱ ନେଇଥାନ୍ତି । ସମ୍ମିଳନୀର ଗୋଟିଏ ଅଧିବେଶନରେ ଯଦୁମଣି ତାଙ୍କ ସ୍ୱଭାବ ସୁଲଭ ଜ୍ୱାଳାମୟୀ ଭାଷଣ ଦେଇ ଏହିରୂପେ ସେଥର ଉତ୍କଳ ଗୌରବ ମଧୁସୂଦନ ଓ ତାଙ୍କର ସହକର୍ମୀମାନଙ୍କ ପ୍ରାଦେଶିକ ବା ଆଞ୍ଚଳିକ ଆଭିମୁଖ୍ୟ ଉପରେ ତୀବ୍ର ଆକ୍ରମଣ କରି ଜୟଯୁକ୍ତ ହୋଇଥାନ୍ତି । କାରଣ ସେତେବେଳେ ଉତ୍କଳ ସମ୍ମିଳନୀର ଏକମାତ୍ର ଲକ୍ଷ୍ୟ ଥିଲା ବିଚ୍ଛିନ୍ନ ଅଞ୍ଚଳର ଏକତ୍ରୀକରଣ । ସେଇ ଲକ୍ଷ୍ୟକୁ ଏଡ଼ିଦେଇ ଜାତୀୟ କଂଗ୍ରେସ ସହିତ ସାମିଲ କରିବା ପାଇଁ ସମ୍ମିଳନୀର ପୋଖତ ନେତାମାନେ ଓ ତାଙ୍କ ଅଗ୍ରଣୀ ମଧୁସୂଦନ ଏକମତ ହୋଇନଥିଲେ । ସେଇମାନଙ୍କ ପ୍ରାଦେଶିକତାକୁ କଠୋର ଆକ୍ରମଣ କରିବା ଥିଲା ଯଦୁମଣିଙ୍କ ଭାଷଣର ଲକ୍ଷ୍ୟସ୍ଥଳ । ଯଦୁମଣି ରହୁଥାନ୍ତି କାଠଗଡ଼ା ସାହିରେ ଗୋଟିଏ ଛାତ୍ରାବାସରେ । ଦିନେ ସନ୍ଧ୍ୟାରେ ଆକସ୍ମାତ ଗୋଟିଏ ଘୋଡ଼ାଗାଡ଼ି ଆସି ସେଇ ଛାତ୍ରାବାସ ଆଗରେ ଅଟକିଯାଏ । ବାହାରିଆସନ୍ତି ଗାଡ଼ି ଭିତରୁ ଉତ୍କଳ ଗୌରବ ମଧୁସୂଦନ । "ଯଦୁମଣି" "ଯଦୁମଣି" ଡାକି ଡାକି ସେ ଆସି ପହଞ୍ଚନ୍ତି ତାଙ୍କ ପାଖରେ । ମଧୁବାବୁ ଆସି ତାଙ୍କ ଦ୍ୱାରସ୍ଥ ଏହା ସେ କେବେହେଲେ କଳ୍ପନା କରିପାରି ନଥିଲେ ।

ଏଇଭଳି ସମ୍ପୂର୍ଣ୍ଣ ଅପ୍ରତ୍ୟାଶିତ ଘଟଣାରେ କିଂକର୍ତ୍ତବ୍ୟବିମୂଢ଼ ହୋଇପଡ଼ନ୍ତି ଯଦୁମଣି । ଓଡ଼ିଶାର ଅପ୍ରତିଦ୍ୱନ୍ଦ୍ୱୀ ନେତା ମଧୁବାବୁଙ୍କ ଉପରେ ଯେଉଁ ଅର୍ବାଚିନ ଯୁବକ ତୀବ୍ର ଆକ୍ରମଣ କରିଥିଲା, ତାହାରି ଦ୍ୱାରସ୍ଥ ଆଜି ସ୍ୱୟଂ ମଧୁବାବୁ । ସେଇ ମୋର ଯଦୁମଣିଙ୍କ ସହିତ ଶେଷ ଦର୍ଶନ । ଏଇ ଘଟଣାକୁ କ୍ଷୀଣ କଣ୍ଠରେ ବର୍ଣ୍ଣନା କଲାବେଳେ ତାଙ୍କର ଦୁଇ ଆଖିରେ ଲୁହଭରି ଉଠୁ ଥାଏ । ଦୁଇହାତ ଯୋଡ଼ି ବାରମ୍ବାର ସେ ମଧୁସୂଦନଙ୍କ ଉଦ୍ଦେଶ୍ୟରେ ନମସ୍କାର କରୁଥାନ୍ତି ।

ତାଙ୍କ ସହିତ ପ୍ରଥମ ସାକ୍ଷାତକାରର ସୁଯୋଗ ମୋର ଘଟେ ପୁରୀଠାରେ ଚଳିତ ଶତାବ୍ଦୀର ଦ୍ୱିତୀୟ

ଦଶକରେ ଅନୁଷ୍ଠିତ ନିଖିଳ ଉତ୍କଳ ଛାତ୍ର ସମ୍ମିଳନୀରେ। ଯଦୁମଣିବାବୁଙ୍କ ବକ୍ତୃତା ଶୁଣିବା ହିଁ ସେତେବେଳେ ଛାତ୍ରସମାଜରେ ଏକ ନିଶା ହୋଇପଡ଼ିଥାଏ। ଆଉ କି ଯେ ସେହି ବକ୍ତୃତା, ବକ୍ତୃତା ଦେଲାବେଳେ ଯେମିତି ତାଙ୍କର ମୁଣ୍ଡଠାରୁ ପାଦପର୍ଯ୍ୟନ୍ତ ସମୁଦାୟ ଚେହେରାଟା ଅକସ୍ମାତ କାହିଁକି ବିଲୁପ୍ତ ହୋଇଯାଏ ଆଉ ଭାଷଣ ତାଙ୍କର ଭାସିଆସେ ଖାଲି ଶୂନ୍ୟରୁ।

ଯେମିତି ଅବା ତାଙ୍କର ଗୋଟାସାରାଦେହ ପାଲଟିଯାଇଛି ଖାଲି ଏକ ଅସରନ୍ତି ଭାଷଣରେ ! ବକ୍ତା କାହିଁ ମିଳାଇଯାଏ ଶ୍ରୋତାମାନଙ୍କ ଦେହ ମନରେ ମିଶି ଏକ ହୋଇ। ତାଙ୍କରି ମୁହଁରେ ସମବେତ ଯୁବଗୋଷ୍ଠୀ ହସୁଛନ୍ତି ତ ତାଙ୍କରି କ୍ରୋଧରେ ଜର୍ଜରିତ ହୋଇଉଠିଛନ୍ତି। ଭାଷଣ ତାଙ୍କର ସମଗ୍ର ଚେହେରାକୁ କାହିଁ ଯେମିତି ଲୁଗ୍ଭଇଦିଏ, ନିଆଁ ଯେମିତି ଲୁଗ୍ଭଇଦିଏ ତାର ଆଧାରକୁ।

ଅତୀତରେ ଆଶୁକବି ଯଦୁମଣିଙ୍କର ହାସ୍ୟରସିକତା ମଧ୍ୟରେ ଯେପରି କବିତ୍ୱ ଓ ପ୍ରତ୍ୟୁତ୍ପନ୍ନମତିର ଚମତ୍କାରିତା ଫୁଟିଉଠିଥିଲା, ଏ ଯୁଗର ଶ୍ରେଷ୍ଠ ବାଗ୍ମୀ ଯଦୁମଣିଙ୍କ ଭାଷଣରେ ମଧ୍ୟ ସେଭଳି ଚରମ ରାଜନୈତିକ ଚିନ୍ତାଧାରାର ପରିଚୟ ମିଳିଥାଏ। ତାହା ଯେପରି ଯୁବସୁଲଭ ବୈପ୍ଳବିକ, ସେହିପରି ସତେଜ, ସୁସ୍ପଷ୍ଟ ରସୋତ୍ତୀର୍ଣ୍ଣ।

ପ୍ରାପ୍ତ ବୟସରେ ମଧ୍ୟ ବାର୍ଦ୍ଧକ୍ୟ କେବେହେଲେ ତାଙ୍କ ମନକୁ ଛୁଇଁ ନଥିଲା। ରାଜନୈତିକ ବାତ୍ୟା ଭିତରେ ରହି ତାହା କେବେହେଲେ ଜୀର୍ଣ୍ଣଶୀର୍ଣ୍ଣ ହୋଇନାହିଁ। ସେଇ ଚିର ତାରୁଣ୍ୟର ନିଗଢ଼ ବନ୍ଧୁତ୍ୱ ଆଦର୍ଶକୁ ହିଁ ସେ ଉତ୍ତରପୁରୁଷମାନଙ୍କ ହସ୍ତରେ ଅର୍ପଣ କରିଯାଇଛନ୍ତି।

ଯଦୁମଣିଙ୍କ ଭାଷାରେ 'ନିକିତି ତଉଲା ସାନ ବଡ଼କୁ, ଭାରି ଯେହୁ ସେହୁ ଯାଏ ତଳକୁ" କଥାଟିର ରାଜନୀତିଜ୍ଞ ନେତା ଯଦୁମଣି ଥିଲେ ଜୀବନ୍ତ ପ୍ରତୀକ। ତାଙ୍କଠାରେ ଏଇ କଥାଟିର ଫରକ ଦେଖାଯାଇଥିଲା ଏତିକି ଯେ-ତଳକୁ କିମ୍ବା ଉପରକୁ ନଯାଇ ସେ ତାଙ୍କଠାରୁ ସାନ ବଡ଼ ସବୁରି ସାଥିରେ ଆପଣାକୁ ସମାନ କରି ମିଶାଇଦେଇ ପାରିଥିଲେ। ଯଥାର୍ଥରେ ତାଙ୍କ ପାଖରେ ବୟସ, ବିଦ୍ୟା, ଧନ ସମ୍ମାନ ଆଦି ସାମାଜିକ ସାଧାରଣ ଭେଦବିଗ୍ରହ ଆଦୌ ନଥିଲା।

ଛାତ୍ର ସମ୍ମିଳନୀର ନେତାରୂପେ ତାଙ୍କୁ ମୁଁ ଯେପରି ଦେଖିଥିଲି, ଅବିକଳ ସେହିପରି ସଦାଳାପୀ ସମାନସ୍କନ୍ଧ ବନ୍ଧୁରୂପେ ପାଇଥିଲି ଯେତେବେଳେ ସେ ପ୍ରଥମ କଂଗ୍ରେସ ମନ୍ତ୍ରିମଣ୍ଡଳରେ ପାର୍ଲାମେଣ୍ଟାରୀ ସେକ୍ରେଟାରି ବା ଉପମନ୍ତ୍ରୀ ରୂପେ କାର୍ଯ୍ୟ କରୁଥିଲେ, ଅଥଚ ବୟସ, ଆସନ ପୁଣି ବାଗ୍ମିତା ଓ ବିଚକ୍ଷଣତା ତୁଳନାରେ ତାଙ୍କଠାରୁ ମୁଁ ଯେ ଅନେକ ପଛରେ !

ଯଦୁମଣିଙ୍କ ନେତୃତ୍ୱର ତାହାହିଁ ଥିଲା ଅସାଧାରଣ ବିଶେଷତ୍ୱ। ସେ ନେତୃତ୍ୱ ପାଖରେ କ୍ଷୁଦ୍ରତା ଓ କୁଟିଳତାର ସ୍ଥାନ ନଥିଲା। ସ୍ଫଟିକ ପରି ତାହା ସହଜ ସ୍ୱଚ୍ଛ ସୁନିର୍ମଳ ତୃଣାଦପି ସୁନୀଚେନ ତରୋରିବ ସହିଷ୍ଣୁତା, ଯେଉଁମାନେ ତାଙ୍କ ନିକଟବର୍ତ୍ତୀ ହୋଇଛନ୍ତି ଏହି ଅନୁଭୂତି ହିଁ ସେ ପାଇଥାନ୍ତି।

ମୋର ଶେଷ ଦର୍ଶନ ସମୟରେ ସେ ମଧୁବାବୁଙ୍କ ଉଦ୍ଦେଶ୍ୟରେ ଯେପରି ବାରମ୍ବାର ନମସ୍କାର କରୁଥିଲେ, ସେଇପରି ତାଙ୍କ ସୁମହାନ୍ ସ୍ମୃତି ଉଦ୍ଦେଶ୍ୟରେ ମୁଁ ଆଜି ନମସ୍କାର ଜଣାଏ ବାରମ୍ବାର।

• • • •

# ନେତା ମଙ୍ଗରାଜ

## ଡାକ୍ତର ବୀର କିଶୋର ଭୂୟାଁ

ଓଡ଼ିଶାର ଯେ କେତେଜଣ ବିଶିଷ୍ଟ ନେତା ଆରମ୍ଭରୁ ସ୍ୱାଧୀନତା ଆନ୍ଦୋଳନରେ ଅଗ୍ରଣୀ ହୋଇ ଯୋଗ ଦେଇଥିଲେ ସେହି କେତେଜଣଙ୍କ ମଧ୍ୟରୁ ସ୍ୱର୍ଗତ ଯଦୁମଣି ମଙ୍ଗରାଜ ଅନ୍ୟତମ । ଯଦୁମଣିବାବୁ ଜଣେ ସୁବକ୍ତା ଓ ନିର୍ଭୀକ ନେତା ଥିଲେ ଏଥିରେ ସନ୍ଦେହର ଅବକାଶ ନାହିଁ। ସେ ବଡ଼ କର୍ତ୍ତବ୍ୟନିଷ୍ଠ ଥିଲେ । ଯେତେବେଳେ ମେଦିନପୁର ଓଡ଼ିଶାରୁ ବିଚ୍ଛିନ୍ନ ହୋଇ ବଙ୍ଗଳାର ଅନ୍ତର୍ଭୁକ୍ତ ହେବାକୁ ଗଲା ଓ ଓଡ଼ିଶା ସମ୍ବନ୍ଧରେ ପ୍ରଚ୍ଚାର କରିବାକୁ ସେଠାକୁ ଅନ୍ୟ କର୍ମୀ ବା ନେତା ଯିବାକୁ ସାହାସ କଲେ ନାହିଁ ଯୁବନେତା ମଙ୍ଗରାଜ ସେଠାକୁ ଯାଇଥିଲେ ।

ବଙ୍ଗଳା ତରଫରୁ ଶ୍ରୀ ବୀରେନ୍ଦ୍ର ସାସମଲ ବଙ୍ଗଳା ସହ ମେଦିନପୁର ସମ୍ମିଶ୍ରଣର ପ୍ରଧାନ ଉଦ୍ୟୋକ୍ତା ଓ ନେତା ଥିଲେ । ସେ ସେଠାରେ ବଙ୍ଗଳା ସପକ୍ଷରେ ପ୍ରଚ୍ଚାର ଚଳାଇଥିବାବେଳେ ଓଡ଼ିଶାରୁ ତାର ପ୍ରତିରୋଧ ଲାଗି ମଙ୍ଗରାଜବାବୁ ସେଠାକୁ ଯାଇ ସ୍ଥାନେ ସ୍ଥାନେ ବକ୍ତୃତା ଦେବାବେଳେ ଗୁଣ୍ଡାଶ୍ରେଣୀୟ ଲୋକଙ୍କ ଦ୍ୱାରା ସଭାସ୍ଥଳରେ ତାଙ୍କ ଉପରକୁ ଢେଲା ଫିଙ୍ଗା ଯାଇଥିଲା ଓ ସେ ଆହତ ମଧ୍ୟ ହୋଇଥିଲେ । ତଥାପି ନିର୍ଭୀକ ଯୁବନେତା ତାଙ୍କ କର୍ତ୍ତବ୍ୟ ସୁଚ୍ଚାରୁରୂପେ ସଂପାଦନ କରିଥିଲେ ।

ସୀମା ଆନ୍ଦୋଳନବେଳେ ଯେତେବେଳେ କଟକ ଆକାଶବାଣୀ କେନ୍ଦ୍ର ନିକଟରେ ଶୋଭାଯାତ୍ରା ଉପରେ ଗୁର୍ଖା ପୋଲିସ ଗୁଳି ଚଳାଇଲେ ସେହି ଗୁଳିଗ୍ଭେଟରେ ସୁନିଲ ଦେ ଢ଼ଳିପଡ଼ିଲେ । ତାଙ୍କୁ ମେଡିକାଲ କଲେଜକୁ ଅଣାଯାଇ ଲୋକଙ୍କୁ ଦେଖା କରିବାକୁ ଅନୁମତି ସୁଯୋଗ ଦିଆଯାଇ ନଥିଲା । ହଜାର ହଜାର ଜନତା ମେଡିକାଲ ହତା ଭିତରେ ଜମାହୋଇ ଅପେକ୍ଷାରେ ଥିଲେ ଆଉ ତାର ପରବର୍ତ୍ତୀ କାର୍ଯ୍ୟକ୍ରମ ନେତୃତ୍ୱ ଥିଲା ମଙ୍ଗରାଜବାବୁଙ୍କ ଉପରେ ।

କର୍ମଠ ମଙ୍ଗରାଜବାବୁ ଅଖିଆ ଅପିଆ ସ୍ଥାନେ ସ୍ଥାନେ ଯାଇ ସଭାକରି ରାତ୍ରିଦିନ ଛାତ୍ରମାନଙ୍କୁ ଉଦ୍‌ବୋଧନ ଦେବାବେଳେ ଯେ ଦେଖିଛି ତାଙ୍କ କର୍ମତତ୍ପରତାର ପରିଚୟ ପାଇଛି ।

ସହିଦ ଭବନର ଦିନ ସଭା ପରେ କଟକ ମ୍ୟୁନିସିପାଲ୍‌ଟି ପଡିଆରେ ରାତ୍ରକୁ ପୁନଶ୍ଚ ସଭା ହେବାର ହେଲା । ହଜାର ହଜାର ଲୋକ ରୁଣ୍ଡହୋଇ ପାଟିତୁଣ୍ଡ କରୁଥାନ୍ତି । କେତେ ରକମର କଟୁ ସମାଲୋଚନା ସେମାନଙ୍କ ମଧ୍ୟରେ ଚ୍ଚାଲିଥାଏ । ସେହି ଲୋକଙ୍କ ଗହଳରେ ମିଶିଯାଇ ମଙ୍ଗରାଜବାବୁ ଲୋକଙ୍କ କଥାବାର୍ତ୍ତାରୁ ତଥ୍ୟ ସଂଗ୍ରହ କରୁଥାନ୍ତି । ତାଙ୍କ କାନରେ ପଡିଲା, ଜଣେ ଅନ୍ୟ ଜଣକୁ କହୁଛି "ଆଉ ଗ୍ରେପାଟା ହେବ" ।

ଯେତେବେଳେ ମଙ୍ଗରାଜବାବୁ ବକ୍ତୃତା ଦେଲେ କଥାଛଳରେ କହିପକାଇଲେ "ଆରେ ଭାଇ ଆମେ ତ ଏଠି ଅଗା ବଗା ଖଗା ଏକାଠି ହୋଇଛୁ– ଲୋକେ କହିବାକୁ ଲାଗିଲେଣି "ଗ୍ରେପାଟା ହେବ" । "ଆରେ ଭାଇ ସେହି ଗ୍ରେପାଟା ଇ ହେଉ । ସେଥିରେ ମଧ୍ୟ ବହୁତ କାର୍ଯ୍ୟ ସାଧିତ ହେବ । ଫଳଫୁଲର ଯେପରି ଆଦର, ଗ୍ରେପାର ମଧ୍ୟ ସେହିପରି ଆଦର ଅଛି । ଗ୍ରେପାର ମହତ୍ତ୍ୱ ଅଛି । ବିନା ଗ୍ରେପାରେ ସ୍ୱାଦୁ ମିଳିବ କେଉଁଠୁ ? ଧର ଗୋଟାଏ ପିଆଜ, ତାକୁ ପରସ୍ତ ପରସ୍ତ ଛଡ଼େଇଯାଅ, ଖାଲି ଗ୍ରେପା ବାହାରିବ । କିନ୍ତୁ ଯେତେ ଭଲ ପରିବା ତରକାରୀ କର ସେ ଗ୍ରେପା ତହିଁରେ ନ ପଡ଼ିଲେ ତାର ସ୍ୱାଦୁ ଭଲ ହେବ ନାହିଁ । ତେଣୁ ଗ୍ରେପାର ମଧ୍ୟ ଆଦର ଅଛି ।"

ଦିନେ କହିଲେ ସର୍କାରୀ ଦଳ କେବଳ ମନେରଖିବା ପାଇଁ ମୋତେ ବଡ଼ଚଣା ନିର୍ବାଚନ ମଣ୍ଡଳୀକୁ ପ୍ରାର୍ଥୀ କରି ପଠାଇଥିଲେ । ସେମାନେ ମୋତେ ମନେକରିଥିଲେ ଏ ଗୋଟାଏ କାଳିଆ ବୋଦା - ସେଇଠିକି ଗଲେ ବଳି ପଡିବ ତା ମାନେ ମୁଁ ସେଠାରେ ଜିତିବି ନାହିଁ । ମୋର ବି ପ୍ରାୟ ଅନୁମାନ ସେଇଆ ଥିଲା । କିନ୍ତୁ କଳେ-ବଳେ- କୌଶଳେ ମୁଁ ସେଠୁ ଅର୍ଗଳିରୁ ଖସିଆସିବି ବୋଲି କେହି କଳ୍ପନା ସୁଦ୍ଧା କରିନଥିଲେ ।

ମଙ୍ଗରାଜବାବୁ ମୃତ୍ୟୁ ପର୍ଯ୍ୟନ୍ତ ଥିଲେ କର୍ମପ୍ରବଣ । ଓଡ଼ିଆ ବଜାରରୁ ନେତାଜୀ ଜୟନ୍ତୀ ସଭାରୁ ଫେରୁ ଫେରୁ ତାଙ୍କ ସଙ୍ଗେ ବହୁତ ଆଲୋଚନା ହେଲା ପରେ ସେ ନେତାଜୀଙ୍କ ଅନ୍ତର୍ଦ୍ଧାନ ସମ୍ବନ୍ଧରେ ଖଣ୍ଡେ ପୁସ୍ତକ ଲେଖିବାକୁ ମୋତେ ପରାମର୍ଶ ଦେଇଥିଲେ ।

ହାସ୍ୟରସିକ ମଙ୍ଗରାଜବାବୁ ମଝିରେ ମଝିରେ ଏପରି କଥା କହିଦିଅନ୍ତି ଯହିଁରେ ନ ହସି ରହି ହେବନାହିଁ।

ଥରେ ଆଡ଼ଭୋକେଟ ସୁରଜମଲ ସାହାଙ୍କ ବାସଭବନରେ ଶ୍ରୀଯାଜୀ ସୁନ୍ଦରମ୍, କର୍ଣ୍ଣେଲ ମୋହନ ସିଂ, ମେଜର ଧୀଲନ୍ ଓ ଶ୍ରୀ ଦିବାକର ପଟ୍ଟନାୟକ ପ୍ରଭୃତି ଆସିଥିବାବେଳେ ପ୍ରେସ୍ କନ୍‌ଫରେନ୍ସ୍‌ବେଳେ ଶ୍ରୀ ରାଧାନାଥ ରଥ ପ୍ରଭୃତି ଉପସ୍ଥିତ ଥାଆନ୍ତି । ଆଲୋଚନା ଶେଷରେ ତାଙ୍କ କୋଠାର ଛାତ ଉପରେ ଗୋଟାଏ ଗ୍ରୁପ ଫଟୋ ଉଠାହେବାର ହେଲା । ସମସ୍ତେ ଉପରକୁ ଗଲେ । ମଙ୍ଗରାଜବାବୁ ପରିସ୍ରା କରିବାକୁ ଯାଇଥିବାରୁ ତାଙ୍କର ସାମାନ୍ୟ ଡେ଼ରି ହୋଇଗଲା । ଡେ଼ରିର କାରଣ ପଚ୍ଚାରିବାରୁ ସେ ହସି ହସି କହିଲେ' "ମୁଁ ଟିକେ ନିଶରେ ସେଣ୍ଟ ମାରିବାକୁ ଯାଇଥିଲି, ଫଟରେ ବାସିବ ପରା । ଏଥିରେ ନ ହସିବ କିଏ ?"

ମଙ୍ଗରାଜବାବୁ ବଡ ମେଳାପି ଲୋକ ଥିଲେ । ବୁଢା ପିଲା ସଭିଙ୍କ ସଙ୍ଗେ ସେ ବେଶ୍ ମିଶି ପାରୁଥିଲେ । ଏହାହିଁ ତାଙ୍କ ଚରିତ୍ରରେ ଥିଲା ବିଶେଷତ୍ୱ ।

ମଙ୍ଗରାଜଙ୍କ ପରି ସ୍ପଷ୍ଟବାଦୀ ନେତାଙ୍କ ଅଭାବ ଦେଶ ମର୍ମେ ମର୍ମେ ଅନୁଭବ କରୁଛି ।

• • • • •

# ରସିକ ପୁରୁଷ

## ବୀରଭଦ୍ର ସାହୁ

*"ମଂଗରାଜ ଆଜି ନାହିଁ*
*ସମୀରଣ କହେ ଥରି ଥରି*
*ଏ ଯେ ପୁର ପଲ୍ଲୀ ତଳେ*
*ପ୍ରତିଧ୍ୱନି ଉଠୁଛି ଗୁମୁରି*
*ନିଃସଙ୍ଗ ଏ ଗ୍ରୀଷ୍ମାନଳେ*
*କପୋତର ତାପିତ ପରାଣ*
*ଦିଏ ଡାକ ଏଇ ଦେଖ*
*ନଶ୍ବରତା ଦେହ ଅବସାନ"।*

*(ଗୋଦାବରୀଶ ମହାପାତ୍ର)*

ଉପରୋକ୍ତ ପଦ୍ୟାଂଶ ଯାହାର ଅମୃତ କଲମରୁ ସୃଷ୍ଟି ସେହି ସାର୍ଥକଜନ୍ମା କବି ଗୋଦାବରୀଶ ମହାପାତ୍ର ଆମ୍ଭମାନଙ୍କ ଭିତରେ ଆଉ ନାହାନ୍ତି। ଗୁଣମୁଗ୍‌ଧ ଗୋଦାବରୀଶ ମହାପାତ୍ର ଏବଂ ନିର୍ଭୀକମନା ତଥା ହାସ୍ୟ ରସିକ-ଚୂଡାମଣି ଯଦୁମଣି ମଂଗରାଜ ଉଭୟଙ୍କର ଶ୍ରାଦ୍ଧ ଦିବସ ପ୍ରାୟ ୪ ମାସ ତଫାତ୍-ଯେଭଳି ତଫାତ୍ ଅଛି ସେ ଦୁହିଁଙ୍କ ଭିତରେ। ଜଣଙ୍କର ସ୍ୱଧର୍ମ ଥିଲା କଲମାସ୍ତ୍ର ପ୍ରୟୋଗ କରି ଅବାଂଛିତ ଶକ୍ତିକୁ କ୍ଷତବିକ୍ଷତ କରିବା। ଅପର ବ୍ୟକ୍ତିର ସ୍ୱଧର୍ମ ଥିଲା ଭାଷଣ ପ୍ରସଙ୍ଗରେ ପ୍ରତିପକ୍ଷକୁ ସିଂହ ବିକ୍ରମରେ ଆକ୍ରମଣ କରିବା। ମଂଗରାଜ ସକ୍ରିୟ ରାଜନୀତିରେ ଅଂଶଗ୍ରହଣ କରିଥିଲେ, କିନ୍ତୁ ଗୋଦାବରୀଶ ରାଜନୀତିରେ ସକ୍ରିୟ ଅଂଶଗ୍ରହଣ ନକରି ରାଜନୀତିଜ୍ଞମାନଙ୍କର ଦୁର୍ବଳତା ପ୍ରତି ଶ୍ଳେଷ ପ୍ରହାର କରୁଥିଲେ। ଉଭୟେ ହାସ୍ୟରସରେ ଜାତିକୁ ହସାଇଥିଲେ ମଧ୍ୟ ସ୍ୱସ୍ୱ ପ୍ରତିଭାର ଶିଳ୍ପକଳାକୁ ଶିଳ୍ପୀର ବିଚକ୍ଷଣତା, ଦକ୍ଷତା ତଥା ସ୍ୱାତନ୍ତ୍ର୍ୟରେ ବିଭବଶାଳୀ କରି ଦେଶ ଏବଂ ଜାତି ସମ୍ମୁଖରେ ଚିରକାଳ ପାଇଁ ଆପଣାକୁ ପ୍ରତିଷ୍ଠିତ କରିଯାଇଛନ୍ତି। ଏହି ଚରମ ସଫଳତା ଯେପରି ଅସାମାନ୍ୟ ସେପରି ଗୌରବମୟ ମଧ୍ୟ। କବିଙ୍କ ଭାଷାରେ-

*"ଜୀବନର ଶିରୀ ଫୁଟାଇ ଫୁଟାଇ*
*ଅମୃତ ଧାରା ଛୁଟାଇ ଛୁଟାଇ*
*ଗ୍ଭଲିବାକୁ ଏଇ ମହା ଧରଣୀରେ*
*ଯାରେ ଲାଗେ ନାହିଁ ଭଲ*
*ସେ ଜୀବନ ଗୋଟେ ଜୀବନ ବୋଲି ମୁଁ*
*ସ୍ୱୀକାର କଲେ ରସନା ମୋହର*
*ହେବ ପଙ୍କିଳତର।"*

*(କୃଷ୍ଣଚନ୍ଦ୍ର ତ୍ରିପାଠୀ)*

ଜୀବନର ସକଳ ସୌନ୍ଦର୍ଯ୍ୟ ଫୁଟାଇ ଏବଂ ଦୈନନ୍ଦିନ ଜୀବନରେ ଅମୃତ ଧାରା ଛୁଟାଇ ଜାତିପାଇଁ ଏବଂ ଦେଶପାଇଁ ଯେଉଁ ହାସ୍ୟରୋଳ ଏଇ ମହାମାନବଦ୍ୱୟ ସୃଷ୍ଟି କରିଗଲେ ତାହା ଏହି କୃତଜ୍ଞ ଜାତିପକ୍ଷେ ଅବିସ୍ମରଣୀୟ ହୋଇ ନିଶ୍ଚୟ ରହିବ। ହାସ୍ୟହିଁ ଜୀବନର ମଧୁର ବିକାଶ। ଜୀବନ ହାସ୍ୟରସର ଦୃଢ଼ଭିତ୍ତି ଉପରେ ବିକଶିତ ହୋଇ ଶତ ଗ୍ଳାନି, ବିପଦ, ଲାଞ୍ଛନା ଏବଂ ଅପମାନକୁ ଭ୍ରୂକ୍ଷେପ କରେନା। ହାସ୍ୟ ଏବଂ ରସିକତା ଏ ଦୁଇଟି ଜୀବନର ଉତ୍‌କୃଷ୍ଟ କଳା। ବିଶ୍ୱସାହିତ୍ୟ ଏ ଦୁଇଟିକୁ ବାଦଦେଇ ତିଷ୍ଠି ପାରେନା। ଆଜି ରୁକ୍ଷ, ନୀରସ, ଅତ୍ୟାଧୁନିକ ଜୀବନରେ ହାସ୍ୟ ତଥା ରସିକତାର ପ୍ରୟୋଜନ କେତେ ତାହା ସ୍ପଷ୍ଟ କରିବା ଅନାବଶ୍ୟକ ମନେକରୁ।

କଥାରେ ଅଛି ଗାଁ ପରିମଳ ଧୋବା ତୁଠରୁ ଜଣାପଡ଼େ। ଜାତୀୟ ଜୀବନର ସରସତା, ରସିକତା ଏବଂ ମହନୀୟତା ଜଣାପଡ଼େ ସେହି ଜାତିର ଜନପ୍ରିୟ

ବ୍ୟକ୍ତିର ନିଷ୍କପଟ, ରସିକତାମୟ ହାସ୍ୟମୁଖର ଜୀବନୀରୁ । ଆଧୁନିକ ମାନବ ଜୀବନରେ ଶ୍ରମକାତରତା, ଅଚଞ୍ଚଳତା, ସ୍ଥାଣୁତା, ନୀରସତା ଏବଂ କର୍ମବିମୁଖତା ଚମ୍ପୁ ଭିତରେ ଓଟ ଗ୍ରୀବା ପ୍ରବେଶ କଲାଭଳି, ସ୍ଥାନାଧିକୃତ କରୁଥିଲାବେଳେ ଯଦୁମଣି ମଙ୍ଗରାଜ ସ୍ୱୀୟ ରସିକତାରେ ଜାତିର ଜୀବନକୁ ସରସ, କର୍ମଚଞ୍ଚଳ ଏବଂ ହାସ୍ୟମୁଖର କରି ରଖୁଥିଲେ ଏହାହିଁ ତାଙ୍କ ଜୀବନର ବୈଶିଷ୍ଟ୍ୟ । ମୋଟଉପରେ ଗୋଟିଏ ବାକ୍ୟରେ କହିବାକୁ ଗଲେ ସେ ଜଣେ ଓଡିଆର କର୍ତ୍ତବ୍ୟ ହିଁ କରିଯାଇଛନ୍ତି । ବିଂଶ ଶତାବ୍ଦୀର ଏଇ ଯଦୁମଣି ଆଗାମୀ କେତେ ଶତାବ୍ଦୀ ପର୍ଯ୍ୟନ୍ତ ଏ ଜାତିକୁ ରସିକତାର ରସ-ରତ୍ନାକରରୁ ଅମୂଲ୍ୟରତ୍ନ ବିତରଣ କରି ଦେଇଗଲେ; ଓଡ଼ିଆ ଜାତି ତାର ସୁରକ୍ଷା କରିବ କି ନ କରିବ ତାହା ଦାତାର ଚିନ୍ତାର ବିଷୟ ନୁହେଁ ବରଂ ଦାନଗ୍ରହୀତାର ପବିତ୍ର କର୍ତ୍ତବ୍ୟ । ଆମର ବିଶ୍ୱାସ ଯେ ସେ ଅପାତ୍ରରେ ଦାନ କରିନାହାନ୍ତି । ରାଜନୀତିଜ୍ଞ ବ୍ୟବସ୍ଥାପକ, ବକ୍ତା ଏବଂ ରସିକ ପୁରୁଷ ଏଇ ଯଦୁମଣି ଶ୍ରୀକୃଷ୍ଣଙ୍କ ତୁଲ୍ୟ କପଟ ବା ଛଳନାମୟ ହସର ଆଶ୍ରୟ ନେଇ ନଥିଲେ ବରଂ ସତ୍ୟକୁ କେନ୍ଦ୍ରକରି ତାଙ୍କର ଅପୂର୍ବ ହାସ୍ୟରୋଳ ସୃଷ୍ଟି ରାଜନୀତିର ଧୂଆଁବାଣକୁ ବ୍ୟର୍ଥତାର ଶୂନ୍ୟ ଆକାଶରେ ମିଳାଇ ଦେଉଥିଲେ ।

ତାଙ୍କ ରସିକତାର ସଫଳତା ହିଁ ତାଙ୍କ ଜୀବନର ସଫଳତା ବୋଲି ଧରି ନେବାକୁ ହେବ । ରାଜନୀତିଜ୍ଞ ଜୀବନ ଘଟଣାବହୁଳ ଏବଂ ବିରାମ ବିହୀନ- ମଧ୍ୟ, ଖାଲି ସେତିକି ନୁହେଁ ନାନା ପ୍ରକାର ଉତ୍‌ଥାନ ପତନ ଦେଇ ମଧ୍ୟ ଗତି କରିଥାଏ । ମଙ୍ଗରାଜ କିନ୍ତୁ ଏସବୁକୁ ବିଶେଷ ଗୁରୁତ୍ୱ ଆରୋପ କରୁନଥିଲେ । ସ୍ୱାମୀ ବିବେକାନନ୍ଦଙ୍କ ଭାଷାରେ "ମାନବ ତାର ସ୍ୱାତନ୍ତ୍ର୍ୟ ଯୋଗୁ ସର୍ବତ୍ର ସମ୍ମାନ ପାଏ ।" ମଙ୍ଗରାଜଙ୍କ ସ୍ୱାତନ୍ତ୍ର୍ୟ ତାଙ୍କର ରସିକତା, ଏହାହିଁ ତାଙ୍କର ଯଶ । ବୋଧହୁଏ ଏଥିପାଇଁ କଂଗ୍ରେସ ବିରୋଧୀ ଯଦୁମଣିଙ୍କର ଯେଉଁ ଲୋକପ୍ରିୟତା ଥିଲା କଂଗ୍ରେସୀ ଯଦୁମଣିଙ୍କର ସେହି ଲୋକପ୍ରିୟତା ଅକ୍ଷୁଣ୍ଣ ଥିଲା । ଏହା କେବଳ ଯଦୁମଣି ପକ୍ଷେ ହିଁ ସମ୍ଭବ ।

ବିଂଶ ଶତାବ୍ଦୀର ଏଇ ରସିକ ଶ୍ରେଷ୍ଠ ଆଉ ନାହାନ୍ତି ସତ; କିନ୍ତୁ ତାଙ୍କର ଓଜସ୍ୱିନୀ ଭାଷଣ, ସମାଲୋଚନା, ରସିକତା ଏବଂ ହାସ୍ୟର ମଧୁର ପରିବେଷଣ ତାଙ୍କୁ ଅନେକ କାଳ ପର୍ଯ୍ୟନ୍ତ ଅମର କରି ରଖିବ ଏଥିରେ ସନ୍ଦେହ ନାହିଁ ।

• • • •

# ଦେଶପ୍ରେମୀ ଯଦୁମଣି

ସୁରେନ୍ଦ୍ର ନାଥ ଦ୍ୱିବେଦୀ

ଓଡ଼ିଶାର ବିଶିଷ୍ଟ ବ୍ୟକ୍ତିମାନଙ୍କ ସମ୍ବନ୍ଧରେ ଆଲୋଚନା କଲାବେଳେ ଆମେ ସେମାନଙ୍କର ରାଜନୀତିକ ଦୃଷ୍ଟିକୋଣ ଭିତରକୁ ଯିବା ନାହିଁ। ଏଇଟା ଦ୍ୱନ୍ଦ୍ୱାତ୍ମକ ହୋଇପାରେ- ରାଜନୀତିକ ପରିସ୍ଥିତି ଯେପରି ଦ୍ରୁତଭାବରେ ପରିବର୍ତ୍ତନ ହେଉଛି, ସେଥିରେ କୌଣସି ନିର୍ଦ୍ଦିଷ୍ଟ ପଥକୁ ଆଶ୍ରୟ କରି ଚ଼ଳିବା ସହଜ ନୁହେଁ। ବ୍ରିଟିଶ ସରକାର ସହିତ ସଂଗ୍ରାମ ଦୀର୍ଘଦିନ ଗ୍ଭଲିଲା- ଅହିଂସା ଶାନ୍ତିପୂର୍ଣ୍ଣ ସଂଘର୍ଷ ନାନାରୂପ ନେଇଥିଲା। ସେଥିନିମନ୍ତେ ତେବେ ଶୁଣାଯାଉଥିଲା ନରମପନ୍ଥୀ ଓ ଗରମପନ୍ଥୀ। ଯେପରି ଗୋପାଳକୃଷ୍ଣ ଗୋଖଲେଙ୍କୁ ନରମପନ୍ଥୀ ଓ ବାଳ ଗଙ୍ଗାଧର ତିଲକଙ୍କୁ ଚ଼ରମପନ୍ଥୀ ଆଖ୍ୟା ଦିଆଯାଉଥିଲା। ସେଥିରୁ ପୁଣି ଲାଲ ବାଲ ପାଲ- ଲାଲା ଲଜପତ୍‌ରାୟ ଓ ବିପନ ଚ଼ନ୍ଦ୍ର ପାଲଙ୍କୁ ମଧ୍ୟମପନ୍ଥୀ ବୋଲି ଧରାଯାଉଥିଲା। ଏବେ ପୁଣି ଉଗ୍ରବାଦୀ ବୋଲି ସାଧାରଣ ଭାବରେ ଗଣ୍ୟ କରାଯାଉଥିବା କମ୍ୟୁନିଷ୍ଟଙ୍କ ଭିତରେ ବିଭାଜନ ଘଟି ସି.ପି.ଆଇ. କୁ ସ୍ଥିତିବାଦୀ ଓ କମ୍ୟୁନିଷ୍ଟ ମାର୍କିଷ୍ଟଙ୍କୁ ବିପ୍ଳବପନ୍ଥୀ ବୋଲି ବିଗ୍ଭର କରାଯାଉଛି। ନଇକେ ବାଙ୍କ, ଦେଶକେ ଫାଙ୍କ ପରି ଦେଶର ରାଜନୀତିର ବିଭିନ୍ନ ରୂପ ଆମ ସମ୍ମୁଖରେ।

ସ୍ୱାଧୀନତା ପରେ ଆଉ ପାର୍ଟିମାନଙ୍କର କୌଣସି ନିର୍ଦ୍ଦିଷ୍ଟ ରାଜନୀତିକ ଆଦର୍ଶ ନାହିଁ। କମ୍ୟୁନିଷ୍ଟ ପାର୍ଟିର ମଧ୍ୟ ଚ଼ରିତ୍ର ବଦଳିଗଲାଣି; ବୈପ୍ଳବିକ ଦାନ୍ତଘଷରା ବା ଝଡ଼ିଲାଣି। ସୋଭିଏଟ୍ ଇଉନିୟନ ତାଙ୍କର ଆଦର୍ଶରୂପେ ରହିଥିଲା। ତାହାର ବିଲୋପ ପରେ ସେମାନେ ଚିନ୍ତା-ସଂକଟରେ ଘାଣ୍ଟି ହେଉଛନ୍ତି। ଭାରତର କମ୍ୟୁନିଷ୍ଟମାନେ ଅନ୍ୟ ରାଜନୀତିକ ଦଳଗୁଡ଼ିକ ପରି କ୍ଷମତା-ରାଜନୀତିରେ ଲିପ୍ତ-କେରଳ ଓ ପଶ୍ଚିମବଙ୍ଗରେ କମ୍ୟୁନିଷ୍ଟ ସରକାର କମ୍ୟୁନିଷ୍ଟ ବିପ୍ଳବ ପଥକୁ ସୁହାଇଲା ପରି କୌଣସି କାର୍ଯ୍ୟକ୍ରମ ଅନୁସରଣ କରିପାରିନାହିଁ। ସ୍ଥିତାବସ୍ଥାକୁ ଆହୁରି ମଜ୍‌ବୁତ୍ କରି ନିଜର ଆସ୍ଥାନକୁ ଦୃଢ଼ କରିବା ନିମନ୍ତେ ବଦ୍ଧପରିକର। ସ୍ୱାଧୀନତା ପରେ ଯେତେବେଳେ ଏପରି ଆଦର୍ଶଗତ ଲଢ଼େଇର ଦୁରବସ୍ଥା ସେଥିରେ ସ୍ୱାଧୀନତା ପୂର୍ବର ରାଜନୀତିକୁ କେବଳ ଏକ ଆଦର୍ଶଭିତ୍ତିକ ଦୃଷ୍ଟିରୁ ବିଗ୍ଭର କରାଯାଇପାରେନା।

ରଣକୌଶଳ ବଦଳାଇବାକୁ ପଡୁଥିଲା, ସେହି ହିସାବରେ ଭିନ୍ନ ପନ୍ଥା ଅବଲମ୍ବନ କରିବାକୁ ହେଉଥିଲା। ତେଣୁ ଯେଉଁମାନେ ଦେଶର ସ୍ୱାଧୀନତା ସଂଗ୍ରାମ ଲାଗି ତ୍ୟାଗ କରିଥିଲେ, ପ୍ରାଣବଳି ଦେଇଥିଲେ, ସେମାନଙ୍କୁ ଉତ୍ତରପୁରୁଷମାନେ ନିର୍ଦ୍ଦିଷ୍ଟ ଆଦର୍ଶ ବା ରାଜନୀତିକ ଦୃଷ୍ଟିକୋଣରୁ ବିଗ୍ଭର କଲେ ବାସ୍ତବିକ ମୂଲ୍ୟାଙ୍କନ ହୋଇପାରେନା।

ସ୍ୱର୍ଗତ ଯଦୁମଣି ମଙ୍ଗରାଜଙ୍କୁ ଅନ୍ୟମାନଙ୍କ ଅପେକ୍ଷା ଭିନ୍ନ ଦୃଷ୍ଟିକୋଣରୁ ଦେଖିବାକୁ ପଡ଼ିବ। ଦେଶପ୍ରେମର ବହ୍ନି ତାଙ୍କ ହୃଦୟରେ ଏପରି ଜଳୁଥିଲା ଯେ ସେ ସାଧାରଣ ଧାରାବାହିକ କାର୍ଯ୍ୟ ପ୍ରତି ଆଗ୍ରହୀ ନଥିଲେ। ଗାନ୍ଧିଜୀଙ୍କ ଲୁଣମରା ଆନ୍ଦୋଳନ ଆରମ୍ଭ ହେଲାବେଳେ ମୁଁ ତାଙ୍କ ମୁହଁରୁ ନିଜେ ଶୁଣିଛି -ଆମକୁ ଏ କାମ ପୋଷାଇବ ନାହିଁ। ମୁଁ ହନୁମାନ ପରି ଗ୍ଭରିଆଡ଼େ ଡ଼େଇଁ ବିଦ୍ରୋହ ନିଆଁ ଲଗାଇଦେବି: ବ୍ରିଟିଶ ଶାସନ ଯନ୍ତ୍ରକୁ ଅଥୟ କରିଦେବି। ବାସ୍ତବିକ ଲବଣ ସତ୍ୟାଗ୍ରହବେଳେ ହନୁମାନ ପରି ଓଡ଼ିଶା ସାରା ବୁଲି ସେ ଏପରି ହୁଲ୍‌ସ୍ଥୁଲ କରିଦେଲେ ବ୍ରିଟିଶ ସରକାର ତାଙ୍କୁ କଠିନ ସଶ୍ରମ କାରାଦଣ୍ଡ ଦେଲା ଏବଂ ବିହାରର ହଜାରୀବାଗ ଜେଲ୍‌ରେ ବନ୍ଦୀଜୀବନ କଟାଇଲେ।

ଏହି ବନ୍ଦୀଜୀବନ ଭିତରେ ସେ ତାଙ୍କର ସ୍ତ୍ରୀ

ଚନ୍ଦ୍ରପ୍ରଭା ନାମରେ 'ଚନ୍ଦ୍ରପ୍ରଭା' ବୋଲି ଏକ ଉପନ୍ୟାସ ଲେଖିଥିଲେ । ହାତଲେଖା ଦୁଇଟି ଖାତାର ପାଣ୍ଡୁଲିପି ମୁଁ ମୋର ମାମୁ ପଣ୍ଡିତ ଆକୁଳ ମିଶ୍ରଙ୍କ ପାଖରେ ଦେଖି ପଢିଥିଲି । ତାହା ପରେ ଛପାହେଲା କି ନାହିଁ ମତେ ଜଣାନାହିଁ ।

ଓଡ଼ିଆ ଜାତିର ଜନଜୀବନ ସହ ନିଜକୁ ହଜାଇ ଦେଇଥିଲେ । ଓଡ଼ିଆ ଦେଶ ମିଶ୍ରଣ ଆନ୍ଦୋଳନର ସେ ଥିଲେ ଜଣେ ମୁଖ୍ୟ ନେତା । ବଙ୍ଗଳାର ମେଦିନୀପୁର ଓ ବିହାରର ସିଂହଭୂମି ଅଞ୍ଚଳରେ ଓଡ଼ିଆ ପ୍ରଚାର କରି ଗାଳିଭର୍ତ୍ସନା ଓ ମାଡ଼ ଖାଇବାକୁ ପଶ୍ଚାତ୍‌ପଦ ହୋଇନଥିଲେ । ଆଜି କେତେଜଣ ଏପରି ସାହସ ଦେଖାଉଛନ୍ତି ।

ବକ୍ତା ହିସାବରେ ସେ ଥିଲେ ଅନୁପମ । ଏକାସାଙ୍ଗରେ ଲୋକଙ୍କୁ ହସାଇବା, କନ୍ଦାଇବା ଓ ମତାଇବା କେତେଜଣ କରିପାରନ୍ତି । ବାଗ୍ମିତାର ଏକ ଶୈଳୀ ତାଙ୍କର ନିଜସ୍ୱ–ତାକୁ କାହାରି ଅନୁସରଣ କରି ନୁହେଁ । ପ୍ରଚ୍ଛନ୍ନ ଭାବରେ ତାଙ୍କର ମୌଳିକ ଗୁଣର ପରିଚୟ ମିଳୁଥିଲା ଯେ ଶୁଣିଛି ମୁଗ୍ଧ ହୋଇଛି । ସେଭଳି ବ୍ୟକ୍ତି ଆଉ ମିଳିବେ କି ?

ଏ ସବୁଥିରେ ଥିଲା ତାଙ୍କର ଅତୁଳ୍ୟ ଦେଶପ୍ରୀତିର ଭାବନା । ବ୍ୟକ୍ତିଗତ କୁତ୍ସା ଓ ଅପବାଦ ପରିବର୍ତ୍ତେ ବ୍ରିଟିଶ ଅତ୍ୟାଚାର ଓ ଦମନ ବିରୁଦ୍ଧରେ ତାଙ୍କର ଉଦ୍‌ବୋଧନ ଲୋକମନପ୍ରାଣକୁ ସ୍ପର୍ଶ କରୁଥିଲା । ସେଥିଲାଗି ବ୍ରିଟିଶ ସରକାରର ଏକ କୋକୁଆ ଭୟ ବରାବର ରହିଥିଲା ।

ଦେଶପ୍ରୀତିର ମାପକାଠି ନୁହେଁ କେବଳ ଜେଲଯିବା । ଦେଶପ୍ରେମର ଅସଲ ପରୀକ୍ଷା ହେଉଛି ସମସ୍ତ କାର୍ଯ୍ୟ ଓ ପ୍ରାଣ ଦେଶଲାଗି ନିୟୋଗ କରିବା । ତାଙ୍କର ସମସ୍ତ କାର୍ଯ୍ୟ ଏଇଥିଲାଗି କରୁଥିଲେ ।

ଏପରିକି ପାରଳାଖେମୁଣ୍ଡି ମନ୍ତ୍ରିମଣ୍ଡଳରେ ପାର୍ଲାମେଣ୍ଟାରୀ ସେକ୍ରେଟାରୀ ସରକାରୀ ପଦବୀରେ ଥାଇ ସୁଦ୍ଧା ବିଦ୍ରୋହୀ ଅଣ୍ଡର ଗ୍ରାଉଣ୍ଡରେ ଥିବା ରାମନନ୍ଦନ ମିଶ୍ରଙ୍କୁ ସେ ଆଶ୍ରୟ ଦେଇଥିଲେ । ମୁଁ ବି ସେତେବେଳେ ପୁଲିସ ଗୋଚରର ଅନ୍ତରରେ ରହି ଛପି ଥିଲି । ରାମନନ୍ଦନ ଆସି ମୋ ସହ ମନ୍ତ୍ରଣା କରିଥିଲେ । ପୁଣି ଏକ ସରକାରୀ ଗାଡ଼ି ରାମନନ୍ଦନଙ୍କୁ ଯୋଗାଇ ଦେଇଥିଲେ । ଏଗୁଡ଼ିକ ଚରମ ଦେଶପ୍ରୀତିର ନିଦର୍ଶନ ।

ସେ ଦେଶ ପାଇଁ, ଓଡ଼ିଆ ଜାତି ପାଇଁ ନିଜର ପ୍ରାଣ ଉତ୍ସର୍ଗ କରିବା ବ୍ୟତୀତ ନିଜର ବ୍ୟକ୍ତିଗତ ସଂପତ୍ତି ଅର୍ଜନ କରିନଥିଲେ କିମ୍ବା ସଂପଦ ବଢାଇ ନଥିଲେ ।

ମୁଁ ତାଙ୍କୁ ନମସ୍କାର କରୁଛି ।

**ଅରୁଣାଚଳ ହାଉସ,**
**ନୂଆଦିଲ୍ଲୀ**

• • •

## ଅମୃତ-ଅନୁଭବ

### ଅନ୍ନପୂର୍ଣ୍ଣା ମହାରଣା

ବ୍ରିଟିଶ ଅମଳରେ ଦେଶରେ ଯେଉଁ ସ୍ୱାଧୀନତା ଆନ୍ଦୋଳନ ହୋଇଥିଲା, ସେ ସଂଗ୍ରାମରେ ଝାସଦେଇ ଯେଉଁମାନେ ଜୀବନକୁ ପାଣି ଛଡେଇ ଦେଇଥିଲେ ସ୍ୱର୍ଗତ ଯଦୁମଣି ମଙ୍ଗରାଜ ସେମାନଙ୍କ ମଧ୍ୟରେ ଅନ୍ୟତମ ପ୍ରମୁଖ ବ୍ୟକ୍ତି ଥିଲେ । ୧୯୨୦-୨୧ରେ ଉଚ୍ଚଶିକ୍ଷା ଲାଭ କରିବାର ଉଚ୍ଚାଶାକୁ ଜଳାଞ୍ଜଳି ଦେଇ ସେ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ । ସେତେବେଳେ ଯେଉଁମାନେ ସ୍କୁଲ୍, କଲେଜ୍ ସରକାରୀ ଗ୍ୱକିରି ଆଦି ଛାଡ଼ି ଏ ଆନ୍ଦୋଳନରେ ଯୋଗ ଦେଉଥିଲେ ସେମାନେ ଗୋଟାଏ ଦୃଷ୍ଟିରୁ ଏକଘରକିଆ ହୋଇଯାଉଥିଲେ । କାରଣ ଖଦୀ ପିନ୍ଧିବା, ଛୁଆଁଛୁଇଁ ବାରଣ ନ ମାନିବା, ସର୍ବଶକ୍ତିମାନ୍ ସରକାରଙ୍କ ବିରୋଧରେ ସଭାରେ ବକ୍ତୃତା ଦେବା ଆଦି ସେମାନଙ୍କର କାର୍ଯ୍ୟଗୁଡ଼ିକ ସେମାନଙ୍କୁ ବିଚିତ୍ର ଲାଗୁଥିଲା । କିନ୍ତୁ ଏହି ଅସହଯୋଗକାରୀମାନଙ୍କ ମଧ୍ୟରେ ଯେଉଁ ସ୍ନେହ ସଂପର୍କ ସୃଷ୍ଟି ହୋଇଥିଲା ତାହାଫଳରେ ଜାତି, ଧର୍ମ, ବର୍ଣ୍ଣ, ନିର୍ବିଶେଷରେ ଅସହଯୋଗକାରୀମାନଙ୍କର ଗୋଟାଏ ବିରାଟ ପରିବାର ଗଢ଼ିଉଠିଥିଲା । ଏ ପରିବାର ମଧ୍ୟରେ ରକ୍ତସଂପର୍କ ନଥିଲେ ହେଁ ଗୋଟାଏ ବିରାଟ ଆଦର୍ଶ ଗୋଟାଏ ବିରାଟ ଲକ୍ଷ୍ୟ ସେମାନଙ୍କୁ ଗୋଟାଏ ଅଚ୍ଛେଦ୍ୟ ବନ୍ଧନରେ ବାନ୍ଧି ରଖିଥିଲା । ଆମେ ସେହି ପରିବାରର ପିଲାମାନେ ସେମାନଙ୍କର ସ୍ନେହସ୍ପର୍ଶ ସ୍ନେହଧନ୍ୟ ହୋଇଛୁ । ଅସହଯୋଗକାରୀଙ୍କ ପିଲାମାନେ ସରକାରୀ ପାଠଶାଳାରେ ପାଠ ପଢୁନଥିଲେ । ଏହି ବିରାଟ ପରିବାରର ବୟୋଜ୍ୟେଷ୍ଠମାନଙ୍କର ଭାଷଣ ଓ ଆଳାପ ଆଲୋଚନାରୁ ଆମେ ମାତୃଭାଷା, ଇତିହାସ ଓ ସ୍ୱାଧୀନ ଦେଶମାନଙ୍କରେ ଶାସନ ବ୍ୟବସ୍ଥା ଆଦି ବିଷୟରେ ଜ୍ଞାନଲାଭ କରୁଥିଲୁ । ଦେଶବିଦେଶରେ ସ୍ୱାଧୀନତା ନିମନ୍ତେ ଆତ୍ମତ୍ୟାଗର କାହାଣୀ ଶୁଣାଇ ସେମାନେ ଆମମାନଙ୍କ ମଧ୍ୟରେ ଦେଶାତ୍ମବୋଧକୁ ଉଜ୍ଜୀବିତ କରୁଥିଲେ । ପ୍ରତ୍ୟେକ ବ୍ୟକ୍ତିର ଯେ ନିଜ ଦେଶପାଇଁ କିଛି ଆତ୍ମତ୍ୟାଗ କରିବା ପରମ କର୍ତ୍ତବ୍ୟ ଏ ବିଷୟରେ ସେମାନେ ହିଁ ଆମ ମନରେ ବଦ୍ଧମୂଳ ଧାରଣା ଜନ୍ମାଇଥିଲେ । ସ୍ୱର୍ଗତ ରାଜକୃଷ୍ଣ ବୋଷ ଓ ସ୍ୱର୍ଗତ ଯଦୁମଣି ମଂଗରାଜ ଯୁବନେତା ଓ ସୁବକ୍ତା ହୋଇଥିବା ହେତୁ ସେ ଯୁଗର ତରୁଣ ଗୋଷ୍ଠୀଙ୍କ ଉପରେ ସେମାନଙ୍କ ଭାଷଣ ଗଭୀର ପ୍ରଭାବ ପକାଇଥିଲା ।

ଥରେ ମଂଗରାଜ ମହାଶୟ ତାଙ୍କର ଅସହଯୋଗ ଆନ୍ଦୋଳନରେ ଯୋଗଦେବା ଦିନଟି ଘଟଣା ଆମକୁ ଶୁଣାଇଥିଲେ । ବରୀରେ ଗୋପବଂଧୁ ଚୌଧୁରୀଙ୍କ ସଂଗେ କୌଣସି ବିଷୟରେ ଆଲୋଚନା କରିବା ପାଇଁ ସେ କେନ୍ଦ୍ରାପଡ଼ାରୁ ବରୀ ଷୋଳ ମାଇଲ (ପ୍ରାୟ ପଚିଶ କିଲୋମିଟର) ବାଟ ଗ୍ୱଲିକରି ଯିବା ଫଳରେ ତାଙ୍କର ପାଦ ପୀଡ଼ା ହେଲା । ସେ ବରୀର 'ସେବାଘର' ରେ ରମାଦେବୀଙ୍କ ତତ୍ତ୍ୱାବଧାନରେ ବିଶ୍ରାମ କଲେ । ଏଇଟା ୧୯୩୫-୩୬ ମସିହା ଘଟଣା । ଚ଼ଲାବୁଲା ତ ବନ୍ଦ ହୋଇଥାଏ । ସେଠାରେ ଅବସର ସମୟରେ ଆମେ ତାଙ୍କ ପାଖରୁ ଗପ ଶୁଣୁ । ତାଙ୍କର ହାସ୍ୟରସାତ୍ମକ କଥନ ଶୈଳୀ ସେ ଯୁଗରେ ସର୍ବଜନବିଦିତ ଥିଲା ।

ସେ ୧୯୨୦-୨୧ ରେ ରେଭେନ୍ସା କଲେଜର ଛାତ୍ର ଥିଲେ ଏବଂ କଲେଜ୍‌ର ଛାତ୍ରାବାସରେ ରହୁଥିଲେ । ଅସହଯୋଗ ଆନ୍ଦୋଳନ ଆରମ୍ଭ ହେବା ବେଳକୁ ସେହି କଲେଜ୍‌ର ଅଧ୍ୟକ୍ଷ ଥିଲେ ଜଣେ ଇଂରେଜ । ଅଧ୍ୟକ୍ଷ ମହୋଦୟ ଦିନେ ଅଧ୍ୟାପକ ଓ ଛାତ୍ରମାନଙ୍କର

ଏକ ମିଳିତ ସଭା ଡକାଇ ଅସହଯୋଗ ଆନ୍ଦୋଳନର ଅପକାରିତା ବିଷୟରେ ବୁଝାଇଲେ । କେତେକ ଅଧ୍ୟାପକ ମଧ୍ୟ ଏହି ଆନ୍ଦୋଳନ ବିରୋଧରେ ଭାଷଣ ଦେଲେ । ଶାନ୍ତଶିଷ୍ଟ ଛାତ୍ରମାନେ ଚୁପ୍‌ହୋଇ ବସି ଏହି ଭାଷଣ ଶୁଣିଲେ । ଅଧ୍ୟାପକମାନଙ୍କ ଭାଷଣ ଶେଷହେବା ପରେ ଛାତ୍ର ଯଦୁମଣି ମଂଗରାଜ ଛିଡ଼ାହୋଇ କହିଲେ-ସାର୍ ! ଆପଣମାନେ ପରା ଆମକୁ ଘୋଷାଇଛନ୍ତି-

" Canon to the right of them
canon to the left of them
canon in front of them
volleyed and thundered
In to the valley of death
Road the six hundred
There is not to Question why
There is but to DO AND DIE."

ପୁଣି ଆଜି ଆପଣମାନେ ସ୍ୱାଧୀନତା ପାଇଁ ଲଢ଼ିଲେ କିପରି ଜୀବନ ବିପନ୍ନ ହେବ ଓ ଭବିଷ୍ୟତ ଅନ୍ଧକାର ହେବ ସେ ବିଷୟରେ ବୁଝାଉଛନ୍ତି ।

ଅଧ୍ୟକ୍ଷ ଉପଲବ୍ଧି କଲେ ଯେ ଏ ଛାତ୍ରଟି ସଂକ୍ରମିତ ହୋଇସାରିଲାଣି । ସେ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିକୁ ଯଦୁମଣିଙ୍କ ଉପରେ କଡ଼ା ନଜର ରଖିବାକୁ ନିର୍ଦ୍ଦେଶ ଦେଲେ । ସେହିଦିନୁଁ ଛାତ୍ର ଯଦୁମଣିଙ୍କ ଗତିବିଧି ଯୁଆଡ଼େ ଅଧ୍ୟାପକ ମଧ୍ୟ ସେହି ଆଡ଼କୁ ଗତି କଲେ ।

ଦିନେ କଟକ ସହରରେ ପ୍ରଚାରିତ ହେଲା ଯେ କାଠଯୋଡ଼ି ନଈବାଲିରେ ଅସହଯୋଗ ଆନ୍ଦୋଳନ ବିଷୟରେ ଗୋଟିଏ ସଭା ହେବ । ସଭା ହେବା ଦିନ ଛାତ୍ର ଯଦୁମଣି ସଞ୍ଜବେଳେ କାଠଯୋଡ଼ି କୂଳକୁ ବୁଲି ବାହାରିଲେ । ତତ୍ତ୍ୱାବଧାରକ ଅଧ୍ୟାପକ ମହୋଦୟ ମଧ୍ୟ ତାଙ୍କ ସାଂଗରେ ଗଲେ ଏବଂ ତାଙ୍କୁ ହରହରିଘାଟ ଆଡ଼କୁ ବୁଲିଯିବା ପାଇଁ କହିଲେ । ଛାତ୍ର କହିଲେ ସାର୍ ! ବୁରୁଜ ପାଖଟା ଖୋଲା ମେଲା । ସେଇଠି ବେଞ୍ଚ୍ ଉପରେ ବସିବା । ଅଗତ୍ୟା ଅଧ୍ୟାପକ ମହୋଦୟ ବୁରୁଜ ଆଡ଼କୁ ମୁହାଁଇଲେ ।

ଏଣେ ସଭା ଆୟୋଜନ ଆରମ୍ଭ ହୋଇ ସାରିଥିଏ । ହାତୀଗଡ଼ା ଘାଟବାଟେ ଲୋକେ ସଭାସ୍ଥଳକୁ ଯିବା ଆରମ୍ଭ କରିଦେଇଥାନ୍ତି । ଲୋକ ଜମିବାରୁ ସଭା କାର୍ଯ୍ୟ ଆରମ୍ଭ ହେଲା । ବକ୍ତାମାନେ ଅସହଯୋଗ ଆନ୍ଦୋଳନରେ ଯୋଗ ଦେବା ପାଇଁ ଜନସାଧାରଣଙ୍କୁ ଓ ଛାତ୍ରମାନଙ୍କୁ ଡାକରା ଦେଲେ । ବୁରୁଜ ପାଖକୁ ସେ ବକ୍ତୃତା ଶୁଭୁଥାଏ । ହଠାତ୍ ଛାତ୍ର ମଂଗରାଜ ଅଧ୍ୟାପକ ମହୋଦୟଙ୍କୁ କହିଲେ-ସାର୍ ! ଆପଣ ତ ସେ ଅଜାତିଆ ସଭାଟାକୁ ଯିବେନାହିଁ । ଆପଣ ବସିଥାଆନ୍ତୁ ମୁଁ ସେ ସଭାକୁ ଯାଉଛି । ଅଧ୍ୟାପକ ମହୋଦୟ ଟାଟକା ହୋଇ ଚାହିଁଲେ । ଛାତ୍ର ମଂଗରାଜ ତରବର ହୋଇ ବନ୍ଧରୁ ନଈ ଭିତରକୁ ଓହ୍ଲେଇ ଯାଇ ସଭାସ୍ଥଳକୁ ଚାଲିଗଲେ ।

ସେ କଲେଜ ଛାତ୍ରାବାସକୁ ଆଉ ଫେରିଲେ ନାହିଁ ।

ଗୁଣନିଧି ଭବନ
ଥୋରିଆ ସାହି, କଟକ

• • • •

# ଭାଇ ଯଦୁମଣି ବାବୁ

## ବ୍ରଜ କିଶୋର ଧଳ

ଦୂର ଅତୀତର କଥା । ଓଡ଼ିଶାରେ କଂଗ୍ରେସ ଗଢ଼ିଉଠୁଥିବାବେଳେ ଯେଉଁ କେତେଜଣ ଖ୍ୟାତନାମା ସ୍ୱାଧୀନତା ସଂଗ୍ରାମୀ ନାମ କରିଥିଲେ ସେମାନଙ୍କ ମଧ୍ୟରେ ଜଣେ ବିଶିଷ୍ଟ ଯୋଦ୍ଧା ଥିଲେ ଭାଇ ଯଦୁମଣି ମଙ୍ଗରାଜ । ସେତେବେଳେ ତାଙ୍କର ଜ୍ୱାଳାମୟୀ ବକ୍ତୃତା ଲାଗି ଲୋକେ ତାଙ୍କୁ ଫାୟାର ବ୍ରାଣ୍ଡ ବୋଲି କହୁଥିଲେ । ତାଙ୍କ ଭଳି ତାଙ୍କର ସହକର୍ମୀ ଥିଲେ ଯୋଦ୍ଧା ରାଜକୃଷ୍ଣ ବୋଷ । ଏମାନଙ୍କର ବକ୍ତୃତା ଶୁଣିବା ଲାଗି ସାଧାରଣ ଜନତା ଯେପରି ଆଗ୍ରହ ପ୍ରକାଶ କରୁଥିଲେ, ତାହାଠାରୁ ଅଧିକ ଆଗ୍ରହ ଦେଖାଉଥିଲେ ବ୍ରିଟିଶ ରାଜଭକ୍ତ ପୋଲିସ୍ କର୍ମଚାରୀମାନେ ।

ମଙ୍ଗରାଜଙ୍କ ବକ୍ତୃତା ଶୁଣିଲେ କଂଗ୍ରେସରେ ଯୋଗଦେବା ଲାଗି ସ୍ୱତଃ ମନ ଆକୃଷ୍ଟ ହେଉଥିବା କଥା ବହୁ ବନ୍ଧୁ ଓ ବୁଦ୍ଧିଜୀବୀଙ୍କଠାରୁ ଶୁଣିବାକୁ ପାଇଥିଲି । ତାଙ୍କ ସଙ୍ଗେ ମୋର ପ୍ରଥମ ଦେଖାରେ ସେ ବାଙ୍କୀ ଅନୁଆରିର ମୋର ବନ୍ଧୁ ମନମୋହନ ନାୟକ ଆଡ଼ଭୋକେଟଙ୍କର ସହପାଠୀ ଥିଲେ ବୋଲି କହିଥିଲେ । ସେଦିନ ସେ ଗୋରା ଶାସକ ଓ ରାଜରାଜୁଡ଼ାଙ୍କର ବିରୁଦ୍ଧରେ ଯେଉଁ ଉତ୍ତେଜନାପୂର୍ଣ୍ଣ କଥାମାନ କହିଥିଲେ ତାହା ଏବେ ମଧ୍ୟ ମୁଁ ଭୁଲିନାହିଁ । ତାଙ୍କର ସେ ସବୁ କଥା ଏବେ ମନେପଡ଼ିବା ସଂଗେ ସଂଗେ ତାଙ୍କର ସେ ସୌମ୍ୟ ଚେହେରା ସହିତ ତାଙ୍କ ସହାସ୍ୟ ବଦନ ମୋ ଆଖିଆଗରେ ନାଚିଯାଉଛି ।

ତାଙ୍କ କଥା ମୋ ସ୍ମୃତିପଟରୁ ଲିଭିଯାଇଥିବାବେଳେ ତାଙ୍କର କନ୍ୟା ଶ୍ରୀମତୀ ସଂଯୁକ୍ତାଙ୍କଠାରୁ ଗୋଟିଏ ଚିଠି ପାଇଲି । ସେଥିରେ ତାଙ୍କ ପିତାଙ୍କ ସ୍ମରଣିକା ଲାଗି କିଛି ଲେଖିବା ପାଇଁ ସେ ମୋତେ ଅନୁରୋଧ କରିଛନ୍ତି । ଏଥିପାଇଁ ମୁଁ ତାଙ୍କୁ ଧନ୍ୟବାଦ ଦେବା ସଂଗେ ସଂଗେ ମୋର ଶେଷ ଜୀବନରେ ତାଙ୍କପରି ଜଣେ ବିଶିଷ୍ଟ ଦେଶପ୍ରେମୀଙ୍କ ସଂପର୍କରେ ଦୁଇଧାଡି ଲେଖିପାରୁଥିବାରୁ ଆପଣାକୁ ଧନ୍ୟ ମନେକରୁଅଛି ।

ସେ ମୋର ବନ୍ଧୁଙ୍କର ସହପାଠୀ ଥିବାରୁ ମୁଁ ତାଙ୍କୁ ବଡ଼ଭାଇ ବୋଲି ସଂବୋଧନ କରୁଥିଲି । ଆମେ ଯେଉଁମାନେ ଗଡ଼ଜାତ ଆନ୍ଦୋଳନରେ ସକ୍ରିୟ ଅଂଶଗ୍ରହଣ କରିଥିଲୁ ସେମାନଙ୍କୁ ସେ ଖୁବ୍ ଉତ୍ସାହିତ କରିବା ସଂଗେ ସଂଗେ ଅନ୍ୟମାନଙ୍କ ଆଗରେ ଆମମାନଙ୍କର ଉଚ୍ଚ ପ୍ରଂଶସା କରୁଥିଲେ । ବିଭିନ୍ନ ସମୟରେ ଆନ୍ଦୋଳନ କିପରି ଚାଲିଛି ଜାଣିବା ପାଇଁ ବିଶେଷ ଆଗ୍ରହ ଦେଖାଉଥିଲେ । ମୁଁ ଗଠନ କରିଥିବା ଢେଙ୍କାନାଳ "ଛ ଦେଶ ଲାଲ ବାହିନୀ" (ସ୍ୱେଚ୍ଛାସେବକବାହିନୀ) ଭୂମିକାର ସେ ଖୁବ୍ ତାରିଫ କରୁଥିଲେ । ଏହି ସ୍ୱେଚ୍ଛାସେବକମାନେ ରାଜତନ୍ତ୍ର ବିଲୋପ ନିମନ୍ତେ ସଂଗ୍ରାମ କରିବା ସଂଗେ ସଂଗେ କଂଗ୍ରେସର ବାର୍ତ୍ତା ପ୍ରଚାର କରୁଥିଲେ । ଏମାନେ ଡ୍ରିଲ୍ କରିବା ଜାଣିଥିଲେ । ସାଧାରଣ ସଭାସମିତିରେ କିପରି ଶୃଙ୍ଖଳାରକ୍ଷା କରାଯାଇ ପାରିବ ସେ ତାଲିମ୍ ମଧ୍ୟ ସେମାନଙ୍କୁ ଦିଆଯାଇଥିଲା । ଏମାନେ ନିଶାନିବାରଣ, ଗ୍ରାମ ସଫେଇ ହରିଜନମାନଙ୍କୁ ମନ୍ଦିରରେ ପ୍ରବେଶ କରାଇବା ଓ ଛୁଆଁ ଅଛୁଁଆ ଭାବ ଦୂର କରିବା ପ୍ରଭୃତି କାର୍ଯ୍ୟ ମଧ୍ୟ କରୁଥିଲେ । ଏହି ସ୍ୱେଚ୍ଛାସେବକ ବାହିନୀକୁ ଅଧିକ ସଂପ୍ରସାରିତ କରିବା ପାଇଁ ସେ ମୋତେ ବରାବର କହୁଥିଲେ । ଏ ବାହିନୀ ସଂପର୍କରେ ମୁଁ ମୋ ଆତ୍ମଜୀବନୀ "ଭୁଲିବୁ ନାହିଁ" ପୁସ୍ତକରେ ସର୍ବଶେଷ ବିବରଣୀ ଦେଇଛି । ଆଗ୍ରହୀ ପାଠକମାନେ ତାହା ପାଠକଲେ ସେ ସମୟର ଗଡଜାତ ଶାସନରେ ହେଉଥିବା ଚରମ ଅତ୍ୟାଚାରର ଲୋକେ କିପରି ସମ୍ମୁଖୀନ ହେଉଥିଲେ ତାହା

ଜାଣିପାରିବେ ।

ତାଙ୍କର ପ୍ରେରଣାରେ ୧୯୪୪ ମସିହାରେ ମୁଁ ବାଙ୍କୀ ଅନୁଆରୀ ଗ୍ରାମଠାରେ ଢେଙ୍କାନାଳ, ଆଠଗଡ, ତିଗିରିଆ, ବଡମ୍ବା, ନରସିଂହପୁର, ଖଣ୍ଡପଡା ଓ ନୟାଗଡ ରାଜ୍ୟର ପ୍ରାୟ ଅଶୀ ହଜାର ଖଣ୍ଡାୟତ (କ୍ଷତ୍ରିୟ) ଓ ଅନ୍ୟମାନଙ୍କୁ ନେଇ ଗୋଟିଏ ସମ୍ମିଳନୀର ଆୟୋଜନ କରିଥିଲି । ମୁଁ ଏହାର ସଂପାଦକ ଓ ବନ୍ଧୁ ସ୍ୱର୍ଗତ ମନମୋହନ ନାୟକ, ଏହାର କୋଷାଧ୍ୟକ୍ଷ ଥିଲେ । ଏହି ସମ୍ମିଳନୀ ଜାତୀୟ ସଂହତି ରକ୍ଷା, ଦେଶରୁ ବ୍ରିଟିଶ ତଥା ରାଜରାଜୁଡା ଶାସନର ବିଲୋପ ଲାଗି ସମସ୍ତ ପ୍ରକାର ଚେଷ୍ଟା ଚଳାଇବାକୁ ଲକ୍ଷ୍ୟ ସ୍ଥିର ହୋଇଥିଲା । ଏହି ସମ୍ମିଳନୀ ପରେ ମୁଁ ବିଭିନ୍ନ ରାଜ୍ୟରେ କରୁଥିବା ଆନ୍ଦୋଳନରେ ଜନସାଧାରଣଙ୍କଠାରୁ ଅଧିକ ସମର୍ଥନ ପାଇପାରିଥିଲି । ସାଧାରଣ ଲୋକେ ଅଧିକ ନିର୍ଭୀକ ଭାବେ ଚାଲିଥିବା ଶାସନର କଟୁ ସମାଲୋଚନା କରିବାକୁ ଆରମ୍ଭ କରିଥିଲେ । ଏହା ଅଧିକ ସକ୍ରିୟ ହେବା ପୂର୍ବରୁ ଭାଇ ଯଦୁମଣି ଓ ମନମୋହନଙ୍କ ବିୟୋଗ ହୋଇଯାଇଥିଲା । ମଙ୍ଗରାଜଙ୍କ ପରି ନିଃସ୍ୱାର୍ଥପର ଦେଶସେବୀ, ଉଚ୍ଚକୋଟୀର ତ୍ୟାଗୀ ଆଜି ଯୁଗରେ ବିରଳ । ତାଙ୍କ ସମସାମୟିକ ସଂଗ୍ରାମୀମାନଙ୍କର ନାମ ଆଉ ଏବେ ଶୁଣାଯାଉ ନାହିଁ ।

ସେହି ମହାନ୍ ଆତ୍ମାର ସଦ୍‌ଗତି ବିଧାନ ନିମନ୍ତେ ମୁଁ ପ୍ରଭୁଙ୍କଠାରେ ପ୍ରାର୍ଥନା କରୁଅଛି ।

ଗ୍ରାମ : ଗଂଜେଇଡିହ
ପୋ: ଅ: ଚନ୍ଦ୍ରଶେଖର ପ୍ରସାଦ
ଜିଲ୍ଲା : ଢେଂକାନାଳ

# ମହାନ୍ ଅଗ୍ରଦୂତ

## ମଥୁରାନନ୍ଦ ନାଥ

୧୯୩୦ ମସିହା ବସନ୍ତ ପଞ୍ଚମୀ ସରସ୍ୱତୀ ପୂଜା, ମୁଁ ସାନଅଡଙ୍ଗ ଉଚ୍ଚ ପ୍ରାଇମେରିରେ ପଢୁଥାଏ। ପିଲାମାନେ ସରସ୍ୱତୀଙ୍କ ପୂଜା ପାଇଁ ଗୃହ ସଜ୍ଜାରେ ଲାଗିଥାନ୍ତି। ହଠାତ୍ ପଣ୍ଡିତ ଲୋକନାଥ ମିଶ୍ର ଆସି କହିଲେ ପିଲାମାନେ ପୂଜା ରେ ସମସ୍ତେ ରହିବ। ଆଜି ମଙ୍ଗରାଜ ଆସୁଛନ୍ତି। ସେ ଦେଶ ସ୍ୱାଧୀନତା ସମ୍ବନ୍ଧରେ କହିବେ, ସ୍କୁଲ ସମ୍ମୁଖସ୍ଥ ଖେଳପଡ଼ିଆରେ ସଭାର ଆୟୋଜନ କରାଯାଇଥିଲା। ଏ ସଭାକୁ ଆମ ଗାଁ ଛଡ଼ା ପାଖଆଖ ଦଶଖଣ୍ଡ ଗ୍ରାମରୁ ହଜାର ହଜାର ଶ୍ରୋତା ଆସି ରୁଣ୍ଡ ହେଲେ। ଗାମ୍ଭୀର୍ଯ୍ୟ ପୂର୍ଣ୍ଣ ବାତାବରଣ ଭିତରେ ସଭାଟି ସମ୍ପନ୍ନ ହେଲା। ସର୍ବପ୍ରଥମେ ଉପସ୍ଥିତ ଛାତ୍ରମାନଙ୍କ ମଧ୍ୟରୁ କେବଳ ମୁସଲମାନ ଛାତ୍ରମାନଙ୍କୁ ଛିଡ଼ାହେବା ପାଇଁ କହିଲେ, ଏହା ଶୁଣି ବିଜୁପୁର ଗ୍ରାମର ଛାତ୍ର ମିର୍ଜାହମିନ୍ ବେଗ୍ ଓ ଅନ୍ୟ ଜଣେ ମୁସଲମାନ ଛାତ୍ର ଠିଆହେଲେ। ଏତିକିବେଳେ ମଙ୍ଗରାଜ କହିଉଠିଲେ ସମସ୍ତ ଛାତ୍ର ସରସ୍ୱତୀଦେବୀଙ୍କୁ ନିଶ୍ଚୟ ପୁଷ୍ପାଞ୍ଜଳିଦେଇ ଥିବ। କିନ୍ତୁ ମୁଁ ଦେଇ ନାହିଁ। ତେଣୁ ମୁଁ ବର୍ତ୍ତମାନ ଏଇ ଦୁଇଜଣ ମୁସଲମାନ ଛାତ୍ରଙ୍କ ସହିତ ସରସ୍ୱତୀଦେବୀଙ୍କୁ ପୁଷ୍ପାଞ୍ଜଳି ଦେବାକୁ ଯାଉଛି। ପୁଣି କହିଲେ ମୁଁ ମଧ୍ୟ ମସ୍‌ଜିଦ୍‌କୁ ନମାଜ ପଢିବାକୁ ଅନେକ ସମୟରେ ଯାଏ। ଏହି ଧର୍ମନିରପେକ୍ଷ ମମତାଭରା କଥାରେ ଉପସ୍ଥିତ ସହସ୍ର ଜନତା କରତାଳି ଦେଇ ସମର୍ଥନ ଜଣାଇଲେ। ମଙ୍ଗରାଜ ମହାଶୟ ସେହି ଦୁଇଜଣ ମୁସଲମାନ ପିଲାଙ୍କ ସହ ବିଦ୍ୟାଳୟ ଗୃହରେ ସରସ୍ୱତୀଦେବୀଙ୍କୁ ପୁଷ୍ପାଞ୍ଜଳି ଦେଇ ସଭାସ୍ଥଳିକୁ ଫେରି ତାଙ୍କର ଭାଷଣ ଆରମ୍ଭ କଲେ। ତାଙ୍କ ଦୀର୍ଘ ଭାଷଣରେ ବିଦେଶୀ ଇଂରେଜ ଶାସନର ବହୁ ସମାଲୋଚନା କରିବା ସଂଗେ ସଂଗେ ଶାସନକୁ ହଟାଇ ଜାତୀୟ କଂଗ୍ରେସକୁ ବଳଶାଳୀ କରିବାକୁ ଆହ୍ୱାନ ଦେଇଥିଲେ। ତାଙ୍କ ଦ୍ୱାରା ପ୍ରଭାବିତ ହୋଇ ସେହି ଦିନଠାରୁ ମୁଁ ବ୍ୟକ୍ତିଗତଭାବେ ଇଂରେଜ ଭାଷା ପଢିବାକୁ ମନ ବଳାଇଲି ନାହିଁ। ଉଚ୍ଛବାନନ୍ଦ ସାହୁ, ନଟ ରାଉତ, ଡମ୍ବରୁଧର ମଲ୍ଲ ଓ ମଦନ ମୋହନ ପୃଷ୍ଟି ଇତ୍ୟାଦି ବିଭିନ୍ନ ଗ୍ରାମବାସୀଙ୍କୁ ପାଟକୁରା ଅଞ୍ଚଳକୁ ପଠାଇ ଗାନ୍ଧିଜୀଙ୍କର ଲବଣ ସତ୍ୟାଗ୍ରହ ଆଇନ ଅମାନ୍ୟ ସଂଗ୍ରାମର ବାର୍ତ୍ତା ପ୍ରଚାର କରାଇଲେ। ଏହି ସମୟରେ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ଉଚ୍ଛବାନନ୍ଦ ସାହୁ ମୋତେ ନେଇ ମଙ୍ଗରାଜଙ୍କ ନିକଟରେ ଉପସ୍ଥିତ କରାଇଲେ। ମଙ୍ଗରାଜ ମତେ କୁଜଙ୍ଗର କାଳିଆପାଟ ଲୁଣିମରା କେନ୍ଦ୍ରକୁ କାର୍ଯ୍ୟ କରିବାକୁ ପଠାଇଲେ। ମୋ ବାପା ମୁଁ କାଳିଆପାଟରୁ ଫେରିଲା ପରେ ଆଉ ସ୍କୁଲକୁ ପଠାଇଲେ ନାହିଁ। ତାର ୨ ବର୍ଷ ପରେ ଲବଣ ସତ୍ୟାଗ୍ରହର ଅବସାନ ପରେ ମୁଁ ୧୯୩୪ରେ କୋରୁଆ ମିଃଇଃ ସ୍କୁଲରେ ଅଧ୍ୟୟନ କରି ୧୯୩୫ରେ ଭରନାକୁଲାରରେ ଏମ୍.ଇ., ପାସ୍ କଲି। କିନ୍ତୁ ମଧ୍ୟଇଂରାଜୀ ପରୀକ୍ଷାରେ ଇଂରାଜୀ ପତ୍ର ପରୀକ୍ଷା ଦେଲିନାହିଁ ଏହା କେବଳ ମଙ୍ଗରାଜବାବୁଙ୍କର ଭାଷଣର ମୋ ଉପରେ ପ୍ରଭାବ। ଇଂରାଜୀ ଭାଷାରେ ମାଟ୍ରିକ ଶିକ୍ଷା ଦିଆଯାଇଥିବାରୁ ମୁଁ ଆଉ ମାଟ୍ରିକ ଅଧ୍ୟୟନ କଲିନାହିଁ, ଅଣ୍ଡାଳ ସଂସ୍କୃତ ପାଠଶାଳାରେ ସଂସ୍କୃତ ଅଧ୍ୟୟନ କରି ପାଟକୁରାର ବଙ୍ଗାରି ଗ୍ରାମର ପ୍ରାଇମେରୀ ସ୍କୁଲରେ ଶିକ୍ଷକତା କଲି। ଏହି ସମୟରେ କେନ୍ଦ୍ରପଡ଼ା ଲୋକାଲବୋର୍ଡ଼ ଅଫିସକୁ ସ୍କୁଲ କାର୍ଯ୍ୟରେ ଯାଇ ମଙ୍ଗରାଜଙ୍କ ସହିତ ସାକ୍ଷାତ କରି ତାଙ୍କ ନିର୍ଦ୍ଦେଶାନୁସାରେ କାର୍ଯ୍ୟ କରୁଥିଲି। ପଣ୍ଡିତ ଜବାହାରଲାଲ ନେହେରୁ କଂଗ୍ରେସ୍ ପ୍ରଚାର

କାର୍ଯ୍ୟରେ କେନ୍ଦ୍ରାପଡ଼ା ଆସୁଥିବାରୁ ମଂଗରାଜ ମହୋଦୟ ମତେ ପାଟକୁରାରେ କଂଗ୍ରେସ ପ୍ରଚାର କାର୍ଯ୍ୟରେ ଲଗାଇଲେ। ଏହି କାର୍ଯ୍ୟ ପରେ ତାଙ୍କ ନିର୍ଦ୍ଦେଶାନୁସାରେ ମୁଁ ବରୀଠାରେ ସ୍ୱର୍ଗତ ଗୋପବନ୍ଧୁ ଚୌଧୁରୀଙ୍କ ତତ୍ତ୍ୱାବଧାନରେ ଚାଲିଥିବା ଗାନ୍ଧିଜୀଙ୍କର ଗ୍ରାମ ସଂଗଠନ କାର୍ଯ୍ୟ ଶିକ୍ଷାକେନ୍ଦ୍ରରେ ଯୋଗଦେଲି। ମଙ୍ଗରାଜଙ୍କ ପ୍ରେରଣାରେ ମୋ ପରିବାରର ଅନ୍ୟ ସଦସ୍ୟମାନେ ମଧ୍ୟ ଗ୍ରାମ ସଂଗଠନ କାର୍ଯ୍ୟରେ ଯୋଗ ଦେଇଥିଲେ।

**ବଳିଷ୍ଠ ସଂଗ୍ରାମୀ ଜୀବନ**

୧୯୨୧ ମସିହା ଅସହଯୋଗ ଆନ୍ଦୋଳନରେ ଯୋଗଦେଇ ମଙ୍ଗରାଜ କାରା ଓ ଅର୍ଥଦଣ୍ଡରେ ଦଣ୍ଡିତ ହୋଇଥିଲେ। ୧୯୩୦ ମସିହାରେ ଲବଣ ସତ୍ୟାଗ୍ରହ ଆନ୍ଦୋଳନରେ ଯୋଗଦେଇ ବନ୍ଦୀ ହୋଇଥିଲେ । ଏହି ସମୟରେ ସେ ହଜାରୀବାଗ ଜେଲରେ ଡଃ ରାଜେନ୍ଦ୍ର ପ୍ରସାଦଙ୍କ (ଭାରତର ପ୍ରଥମ ରାଷ୍ଟ୍ରପତି) ସହ କାଳାତିପାତ କରିବାରେ ଯେଉଁ ସବୁ କଷ୍ଟ ନିର୍ଯାତନା ସହିଥିଲେ, ତାହା ସେ ତାଙ୍କ କହିବାଠାଣିରେ ବର୍ଣ୍ଣନା କରି ଯେତିକି ପ୍ରାଣସ୍ପର୍ଶୀ କରାଇ ପାରୁଥିଲେ ତତୋଧିକ ରୋମାଞ୍ଚ ସୃଷ୍ଟି କରି ନିଜେ ଆନନ୍ଦ ବିଭୋର ହୋଇପଡୁଥିଲେ।

୧୯୩୮ ମସିହାରେ ସୁଭାଷ ବୋଷ ହରିପୁର କଂଗ୍ରେସରେ ସଭାପତି ହେବାରେ ସେ ବିଶେଷ ଆନନ୍ଦିତ ହୋଇଥିଲେ। ୧୯୩୯ ରେ ସୁଭାଷ ବୋଷ ତ୍ରିପୁରା କଂଗ୍ରେସରେ କଂଗ୍ରେସ ସଭାପତି ପାଇଁ ଗାନ୍ଧିଜୀଙ୍କ ଅନିଚ୍ଛା ସତ୍ତ୍ୱେ ପ୍ରତିଦ୍ୱନ୍ଦିତା କରି ବିଜୟଲାଭ କରିବାରେ ସୁଭାଷ ବୋଷଙ୍କୁ ତତ୍‌କାଳୀନ ଉଚ୍ଚ କଂଗ୍ରେସ ନେତୃତ୍ୱର ସହଯୋଗରୁ ବଞ୍ଚିତ ହେବାକୁ ପଡିଲା। ଏହି ସମୟରେ ବୋଷ ନିଜ ୩୮/୨-ଏଲଗିନ୍ ରୋଡସ୍ଥିତ (କଲିକତା) ବାସଭବନକୁ ମଙ୍ଗରାଜଙ୍କୁ ଡକାଇଥିଲେ। ମଙ୍ଗରାଜ ସାଙ୍ଗରେ ପଣ୍ଡିତ ନୀଳକଣ୍ଠ ଦାଶ ଓ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କୁ ନେଇ ସୁଭାଷ ବୋଷଙ୍କୁ ଭେଟିଥିଲେ। ମନେହୁଏ, ପରବର୍ତ୍ତୀ ଅବସ୍ଥାରେ ମଙ୍ଗରାଜଙ୍କ ସହ ପଣ୍ଡିତ ନୀଳକଣ୍ଠ ଦାଶ ଓ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କୁ ୧୯୪୨ ଅଗଷ୍ଟ ୯ ଭାରତଛାଡ଼ ପ୍ରସ୍ତାବରେ ଗାନ୍ଧିଜୀଙ୍କ "କର ଅବା ମର" ଡ଼ାକରା ଶୁଭିନଥିଲା। ଏହି ସମୟରେ ମଙ୍ଗରାଜେ ସୁଭାଷବୋଷଙ୍କ ଓଡିଶା ଆଗମନକୁ ଅପେକ୍ଷା କରି ରହିଥିଲେ। ଏହି ସମୟରେ ମଙ୍ଗରାଜେ ପାରଳା ମହାରାଜଙ୍କ ଦେୱାନ ଲକ୍ଷ୍ମୀନାରାୟଣ ପଟ୍ଟନାୟକଙ୍କୁ ପରାମର୍ଶ ଦେଇ ରେଙ୍ଗୁନ ବ୍ୟାଙ୍କରେ ପାରଳା ମହାରାଜଙ୍କର ଥିଲା ସମସ୍ତ ଅର୍ଥ ସୁବାଷ ବୋଷଙ୍କ ସେନା ବାହିନୀକୁ ସାହାଯ୍ୟ କରିବାକୁ ପରାମର୍ଶ ଦେଇଥିଲେ।

୧୯୪୨ ଭାରତ ଛାଡ଼ ଆନ୍ଦୋଳନରେ ସାମିଲ ନ ହୋଇଥିବା କାରଣରୁ ୨ୟ ବିଶ୍ୱଯୁଦ୍ଧ ଅବସାନ ପରେ ୧୯୪୬ ମସିହାରେ ସେ କଂଗ୍ରେସରୁ ବହିଷ୍କାର ହୋଇଥିଲେ ଓ ପୁନର୍ବାର ୧୯୫୭ ମସିହାରେ କଂଗ୍ରେସରେ ଯୋଗଦାନ କରିଥିଲେ।

ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଓ ବିଚ୍ଛିନ୍ନାଞ୍ଚଳ ମିଶ୍ରଣରେ ମଙ୍ଗରାଜେ ସ୍ମରଣୀୟ ଭୂମିକା ଗ୍ରହଣ କରିଥିଲେ। ସେ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ସହ ଚକ୍ରଧରପୁର ଷଢେଇକଳା, ଖରସୁଆଁ, ମେଦିନାପୁର ଆଦି ବିଚ୍ଛିନ୍ନାଞ୍ଚଳରେ କାର୍ଯ୍ୟ କରି ଓଡିଶାର ସଂସ୍କୃତି, କଳା ଓ ପାଇକମାନଙ୍କର ଖଣ୍ଡାଖେଳକୁ ରୂପଦେଇ ପାରିଥିଲେ। ମଙ୍ଗରାଜେ ଏହି ଅଂଚଳରେ ଏକ ବ୍ରାହ୍ମଣ ପରିବାର ସହ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ କନ୍ୟାକୁ ବିବାହ କରାଇ ଏ ଅଞ୍ଚଳ ସହ ଘନିଷ୍ଠ ସଂପର୍କ ରକ୍ଷା କରିଥିଲେ।

୧୯୪୪ ମସିହା ମହାନଦୀରେ ଭୟଙ୍କର ବନ୍ୟା। ମହାନଦୀର ଶାଖାନଦୀ ଲୁଣା ଓ କରାଣ୍ଡିଆ ନଦୀର ଦକ୍ଷିଣପଟ ବନ୍ଧ (ଶାଗୁଣା ଘାଇ) ଭାଙ୍ଗି ଯାଇଥାଏ। ସମସ୍ତ ପାଟକୁରା ଅଞ୍ଚଳ ଭୟଙ୍କର ଭାବେ କ୍ଷତିଗ୍ରସ୍ତ। ଚିତ୍ରୋତ୍ପଳା ନଦୀ ଓ ଲୁଣାନଦୀର ଅବବାହିକାର ସମସ୍ତ ଗ୍ରାମାଞ୍ଚଳ ଜଳମଗ୍ନ, କଂଗ୍ରେସ ନେତୃବର୍ଗ ଅଗଷ୍ଟ ୯ ପ୍ରସ୍ତାବର ଗାନ୍ଧିଜୀଙ୍କ "କର ବା ମର" ଡାକରାରେ ମୃତ୍ୟୁକୁ ତୁଚ୍ଛ ମନେକରି ସ୍ୱାଧୀନତା ସଂଗ୍ରାମରେ କାରାରୁଦ୍ଧ। ଏହି ଅବସ୍ଥାରେ ଲୋକଙ୍କ

ପାଖରେ କେହି ନାହିଁ। ଏତିକିବେଳେ ଯଦୁମଣି ମଙ୍ଗରାଜ ଦୋହଳି ଗ୍ରାମର ଶିକ୍ଷକ-ଗୌରବ ବନମାଳୀ ବ୍ରହ୍ମଗୁରୀଙ୍କ ସହ ଉକ୍ତ ବିପନ୍ନ ଗ୍ରାମାଞ୍ଚଳକୁ ଯାଇ ସରକାରୀ ସାହାଯ୍ୟ ସାଙ୍ଗକୁ ଶୁଷ୍କ ଅଞ୍ଚଳରୁ ଖାଦ୍ୟସାମଗ୍ରୀ ସଂଗ୍ରହ କରି ଲୋକମାନଙ୍କୁ ବଞ୍ଚାଇବାକୁ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ନିଜେ ଓ ଲକ୍ଷ୍ମୀନାରାୟଣ ସାହୁ (ସରଭାଣ୍ଟ୍ ଅଫ୍ ଇଣ୍ଡିଆ ସୋସାଇଟି) ସର୍ବଭାରତୀୟ ସ୍ତରରେ ଶ୍ରୀମତୀ କମଳା ଦେବୀ ଚଟ୍ଟୋପାଧ୍ୟାୟଙ୍କୁ ବନ୍ୟାଞ୍ଚଳକୁ ଆଣି ବିପନ୍ନାଞ୍ଚଳର ଯେଉଁ ନିଖୁଣ ଚିତ୍ର "ଅମୃତ ବଜାର" ପତ୍ରିକାରେ ପ୍ରକାଶ କରିଥିଲେ ତାହାର ସୂଚନା ଶ୍ରୀ ମନମୋହନ ମିଶ୍ରଙ୍କ କବିତାରୁ ଜଣାଯାଏ। ଉକ୍ତ କବିତାକୁ ବନମାଳୀ ବ୍ରହ୍ମଗୁରୀ ଗ୍ରାମାଞ୍ଚଳରେ ଛାତ୍ରଛାତ୍ରୀଙ୍କ କଣ୍ଠରେ ଗାଇ ବିପନ୍ନାଞ୍ଚଳ ଲାଗି ଗୁନ୍ଦା ସଂଗ୍ରହ କରୁଥିଲେ।

କବିତାଟି ଥିଲା-

*"ଭାଷେ ମୁରୁଦାର ନାହା*
*କନାସିରି ଶାଗ ବିଲରୁ ସରିଛି*
*ପାଣିରୁ ସରିଛି ଗେଣ୍ଡ୍ରା*
*ସେ ମାଟି ଦାଣ୍ଡରେ ଖସି ପଡେ ଆଜି*
*ବାଇଶ ବରଷ ଭେଣ୍ଡ୍ରା*
*ମା କୋଳେ ସମ୍ପି ଏ କୋଳର ବଳା*
*ବାପ ଗୁଲିଯାଏ କାହିଁ*
*ଭୋକିଲା ଶିଶୁକୁ ମା ଭଣ୍ଡୁଥାଏ*
*କାଉ କୋଇଲି ଦେଖାଇ (ଇତ୍ୟାଦି)*

ଏହାପରେ ସରକାରୀ ସାହାଯ୍ୟ କାର୍ଯ୍ୟ ତ୍ୱରାନ୍ୱିତ ହେବାକୁ ଲାଗିଲା। ଏହା ଥିଲା ମଙ୍ଗରାଜଙ୍କର ଉଦ୍ୟମର ଫଳ।

# ଅସଲ ବାଣୁଆ ମଙ୍ଗରାଜ

**ପୁରୁଷୋତ୍ତମ ନାୟକ**

ଯଦୁମଣି ମଙ୍ଗରାଜ ପ୍ରକୃତରେ ଥିଲେ ମଙ୍ଗୁଆଳ । ନଈର ସୁ[illegible]ଟି ନାଆଟିକୁ କିପରି କୂଳରେ ଲଗାଯାଇ ପାରିବ, [illegible] କଳା ଓ କୌଶଳରେ ସେ ଥିଲେ ଓସ୍ତାଦ୍ । କଳା ଚେହେରା, ମୁଣ୍ଡରେ ଠେକା, ଠୋସ୍ ଠାସ୍ କଥା ସେଥିରେ ପୁଣି କେତେ ନବଜ, କେତେ ମଉଜ । ଅସଲ ବାଣୁଆ ମଙ୍ଗରାଜ । ସେ ବାଣ ମାରିପାରେ, ବାଣ ସଜିଲି କରିପାରେ । ଏମିତି ବାଣ ଯେ, ଦେହର ଶିରାପ୍ରଶିରା ଭେଦି ଭେଦି ଯାଏ ଲୁହାର ବାଟୁଳି । କଥାରେ ଯେମିତି କାମରେ ସେମିତି । ନଈକୂଳିଆ ମଣିଷ, ଛାତି ଯେତିକି ଚଉଡ଼ା ସେତିକି ପଥୁରିଆ-ଟାଣ, ବାତ୍ୟା ତ ହଲେଇ ପାରିବ ନାହିଁ, ଛାର ପବନ ବା କ'ଣ କରନ୍ତା ତା'ର ।

ଚିହ୍ନା ଜଣା ନଥିଲେ ବି ଶୁଣା ଥିଲା ମଙ୍ଗରାଜଙ୍କ କଥା ଆମ କେନ୍ଦ୍ରାପଡ଼ା ଅଂଚଳର ସବୁ ଲୋକଙ୍କୁ । ୧୯୨୪ ମସିହାରେ ଯଦୁମଣି ମଙ୍ଗରାଜ ନିର୍ବାଚନରେ ଜିତିଲେ କେନ୍ଦ୍ରାପଡ଼ା ଲୋକାଲ୍ ବୋର୍ଡର ସଭାପତି ଭାବେ । ସେ କଂଗ୍ରେସ ଦଳର ନେତା ଓ ଆମେମାନେ କଂଗ୍ରେସ ଦଳର କର୍ମୀ । କେନ୍ଦ୍ରାପଡ଼ା ମ୍ୟୁନିସିପାଲିଟିର ସେ ଥିଲେ କାଉନ୍‌ସିଲର । ଏତେବେଶୀ ଆତ୍ମୀୟତା ନଥାଏ ଯଦୁମଣି ମଙ୍ଗରାଜଙ୍କ ସହିତ ମୋର । ସେତେବେଳେ ତ ସଂଗ୍ରାମର ବେଳ । କଂଗ୍ରେସ କର୍ମୀମାନେ ଗାଁ ଗାଁ ବୁଲି ଜାତୀୟତାର ବାର୍ତ୍ତା ପ୍ରଚାରରେ ଲାଗିଥାନ୍ତି ଆଉ ରଚନାତ୍ମକ କାର୍ଯ୍ୟମାନ କରୁଥାଆନ୍ତି ଯଦୁମଣି ମଙ୍ଗରାଜ ଆଗରେ । ସଭା ସମିତିରେ ଭାଷଣ ଦିଅନ୍ତି ମଙ୍ଗରାଜବାବୁ । ଗୋଟିଏ କଳା ଘୋଡ଼ା ତାଙ୍କର ଥାଏ । ସେ ହେଉଛି ତାଙ୍କର ବାହନ ।

୧୯୩୪ ମସିହାରେ ଗାନ୍ଧିଜୀ ଆସିଲେ ଓଡ଼ିଶା ପଦଯାତ୍ରାରେ-ହରିଜନ ପଦଯାତ୍ରା । ଗାନ୍ଧିଜୀଙ୍କ ସାଥିରେ ଥାଆନ୍ତି ମଙ୍ଗରାଜବାବୁ । ଗାନ୍ଧିଜୀ ଯାହା କହିବେ, ମଙ୍ଗରାଜବାବୁ ତାକୁ ସହଜରେ ଓଡ଼ିଆରେ ଆମ ଲୋକଙ୍କୁ ବୁଝାଇଦେବେ । ମୁଁ ଜଣେ ଅନୁଗାମୀ-ଯାତ୍ରୀ-ସହଯାତ୍ରୀ । ଆତ୍ମୀୟତା, ପ୍ରତ୍ୟକ୍ଷ ସଂପର୍କ ଓ ବ୍ୟକ୍ତିଗତ ପରିଚୟ ମୋର ମଙ୍ଗରାଜ ବାବୁଙ୍କ ସହିତ ସେହିବେଳରେ, ସେହି ପଦଯାତ୍ରା ବେଳରୁ । ସେ ହେଲେ ମୋର ଭାଇ, ବଡ଼ଭାଇ । ମଙ୍ଗରାଜ ଭାଇ ।

୧୯୩୬ରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲାପରେ ବିଧାନସଭା ପାଇଁ ନିର୍ବାଚନ ହେଲା । କେନ୍ଦ୍ରାପଡ଼ା ନିର୍ବାଚନ ମଣ୍ଡଳୀରୁ କଂଗ୍ରେସ ପ୍ରାର୍ଥୀ ଯଦୁମଣି ମଙ୍ଗରାଜ ଓ ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ଲକ୍ଷ୍ମୀଧର ମହାନ୍ତି । ସେତେବେଳେ ସାବାଳକ ଭୋଟ ପ୍ରଥା ନଥିଲା । ମାଟ୍ରିକ୍ ପାସ୍ କରିଥିବା ଲୋକେ ଓ ଟିକସ୍ ଦେଉଥିବା ଲୋକେ ଭୋଟର୍ ଥିଲେ । ଏଣୁ ଗୋଟିଏ ଗ୍ରାମର ମୋଟ ଭୋଟର ସଂଖ୍ୟା ୫/୬ ରେ ସୀମିତ । ରାଜା, ଜମିଦାର, ମହାଜନ, ମକଦ୍ଦମାମାନଙ୍କର ସମସ୍ତ ଚେଷ୍ଟା ଏପରିକି ଭୋଟରମାନଙ୍କୁ ମହାପ୍ରସାଦ ଦେଇ ନିୟମ କରାଯାଇଥିଲେ ମଧ୍ୟ ଯଦୁମଣି ଭାଇ ଜିଣିଲେ, ବହୁ ଭୋଟ୍‌ରେ ଜିଣିଲେ । ବିଶ୍ୱନାଥ ଦାଶ ହେଲେ ଓଡ଼ିଶାର ପ୍ରଧାନମନ୍ତ୍ରୀ । ପଣ୍ଡିତ ନୀଳକଣ୍ଠ ଦାଶ, ପଣ୍ଡିତ ଗୋଦାବରୀଶ ମିଶ୍ର ଓ ବାଗ୍ମୀ ଯଦୁମଣି ମଙ୍ଗରାଜ କଂଗ୍ରେସର ଆଦର୍ଶ ଓ ନେତୃତ୍ୱ ବିରୁଦ୍ଧରେ ସ୍ୱରଉତ୍ତୋଳନ କଲେ । କଂଗ୍ରେସ ଛାଡ଼ିଲେ । ୧୯୩୯ ମସିହାରେ ବିଶ୍ୱନାଥ ଦାଶ ମନ୍ତ୍ରିମଣ୍ଡଳ ଇସ୍ତଫା ଦେବାରୁ ପାରଳା ମହାରାଜା ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ଗଜପତି ଦେବ ହେଲେ

ଓଡ଼ିଶାର ପ୍ରଧାନମନ୍ତ୍ରୀ ଓ ଆମ ଯଦୁମଣି ଭାଇ ହେଲେ ଅର୍ଥ ବିଭାଗର ପାର୍ଲାମେଣ୍ଟାରୀ ସେକ୍ରେଟାରୀ ।

କହିବାର ପଟୁତା ଯଦୁମଣି ଭାଇର ପ୍ରଥମରୁ ଥିଲା । ସେ ଆସିଲେ ସଭା ଜମୁଥିଲା । ଆଜିକାଲିକାପରି ଟ୍ରକ୍ ବସ୍‌ରେ ଲୋକ ଆଣି ସଭା କରିବା ଅଭ୍ୟାସ ନେତାମାନଙ୍କର ନଥିଲା । ଯଦୁମଣି ଭାଇ ସଭା କରୁଛି ଶୁଣିଲେ ପନ୍ଦର କୋଡ଼ିଏ କୋଶ ଦୂରରୁ ଲୋକେ ଆସି ସଭାରେ ପହଞ୍ଚୁଥିଲେ । କଂଗ୍ରେସର ଜାତୀୟତାବାଦର ବାର୍ତ୍ତାକୁ ଆମ ଅଂଚଳରେ ଯଦୁମଣି ଭାଇ ସତରେ ପବନରେ ଉଡ଼େଇ ଉଡ଼େଇ ନେଇ ଲୋକଙ୍କ ପାଖରେ ପହଞ୍ଚାଉଥିଲେ । ଗୋଟିଏ ସଭା କଥା କହୁଛି । କଂଗ୍ରେସସଭା ଆମ ଅଂଚଳରେ । ନବକୃଷ୍ଣ ଚୌଧୁରୀ, ରାଜକୃଷ୍ଣ ବୋଷ, ଅଟଳ ବିହାରୀ ଆଗ୍ରର୍ଯ୍ୟ, ଭାଗିରଥୀ ମହାପାତ୍ର ଓ ସରଳା ଦେବୀ ବକ୍ତୃତା ଦେଲେ । ସଭାପତି ହେଉଛନ୍ତି ମଙ୍ଗରାଜ ଭାଇ–ସବା ଶେଷରେ ତାଙ୍କର ପାଳି । ସରଳା ଦେବୀଙ୍କୁ ହାତ ଦେଖାଇ କହିଲେ, ଏ ଯେଉଁ ମହିଳା ଆମ ସହିତ ଅଛନ୍ତି ତାଙ୍କୁ ପଗ୍ରର, କି କଷଣ ତାଙ୍କୁ ଇଂରେଜ୍‌ମାନେ ଦେଇଛନ୍ତି । ସେ ଭୋଗିଛନ୍ତି, ଆମେ ଶୁଣିଛୁ । ସେହି ଅସହ୍ୟ ଯନ୍ତ୍ରଣା କଥା ଶୁଣି ମୋର ଉଠୁଛି କୋହ, ବୋହିଯାଉଛି ଲୁହ" । ମହିଳାମାନଙ୍କୁ କଂଗ୍ରେସ ସହିତ ସାମିଲ୍ କରିବାକୁ ମଙ୍ଗରାଜ ଭାଇର ଏ ଥିଲା ଉଦ୍ୟମ ।

ଖଣ୍ଡାୟତ (କ୍ଷତ୍ରିୟ) ମହାସଭା ସେ ଗଢିଥିଲେ । ଏଥିରେ ନ ଥିଲା ଜାତିଆଣ ମନୋଭାବ–ଥିଲା ଏକ ମହତ୍ ଉଦ୍ଦେଶ୍ୟ । ଏ ଅଂଚଳର ସଂଖ୍ୟାଗରିଷ୍ଠ ସଂପ୍ରଦାୟକୁ ସଂଗଠିତ କରି ରାଜରାଜୁଡ଼ା ଜମିଦାରୀ ଶାସନ ବିରୁଦ୍ଧରେ ସଂଗ୍ରାମ କରିବାକୁ ଏହା ଥିଲା ଏକ ଉପାୟ ।

୧୯୫୨ ମସିହା ସାଧାରଣ ନିର୍ବାଚନରେ କେନ୍ଦ୍ରାପଡ଼ାରୁ ପ୍ରତିଦ୍ୱନ୍ଦ୍ୱିତା କରୁଥାନ୍ତି ଦୀନବଂଧୁ ସାହୁ କଂଗ୍ରେସରୁ ଓ ଯଦୁମଣି ମଙ୍ଗରାଜ ସ୍ୱାଧୀନ । ଚିହ୍ନ ଥାଏ ଯୋଡ଼ିବଳଦ ଦୀନବଂଧୁ ବାବୁଙ୍କର ଓ ଶିଢ଼ି ଯଦୁମଣି ଭାଇର । ଘମାଘୋଟ ପ୍ରଗ୍ରର । ମୁଁ ଦୀନବଂଧୁ ବାବୁଙ୍କ ତରଫରୁ ପ୍ରଗ୍ରର କାର୍ଯ୍ୟ କରୁଥାଏ । ଦୀନବଂଧୁବାବୁ ନିର୍ବାଚନରେ ଜିତିଲେ; କିନ୍ତୁ ମଙ୍ଗରାଜ ଭାଇ ମକଦ୍ଦମା କରି ତାଙ୍କ ନିର୍ବାଚନକୁ ଅସିଦ୍ଧ କରିଦେଲେ । ଉପ ନିର୍ବାଚନ ହେଲା । ହେଲି କଂଗ୍ରେସ ପ୍ରାର୍ଥୀ ମଙ୍ଗରାଜ ଭାଇଙ୍କ ବିରୁଦ୍ଧରେ । ଭୋଟ୍ ସରିଲା ପରେ ଗଣତି ଆରମ୍ଭ ହେଲା, ମୁଁ ଆଗେଇ ଗ୍ରଲିଥାନ୍ତି, ମଙ୍ଗରାଜ ଭାଇ ପଛାଉ ଥାଆନ୍ତି । ମୋର ଠିକ୍ ମନେଅଛି, ମୋ ପିଠି ଆପୁଡାଇ ଗ୍ରଲିଥାଏ, ମଙ୍ଗରାଜ ଭାଇ ମୋ ପାଖରେ ବସି । ଅବିଚଳିତ ବ୍ୟକ୍ତିତ୍ୱ, ଖେଳୁଆଡ୍ ମନୋଭାବ । ହାରିଗଲେ ଅବଶ୍ୟ କିନ୍ତୁ ସାମାନ୍ୟତମ ଶୋଚନା ନଥାଏ, ସ୍ଫୁର୍ତ୍ତିରେ ସାମାନ୍ୟ ଊଣା ହେବାର ମଧ୍ୟ ଜଣାପଡୁ ନଥାଏ । ମୋତେ କୁଣ୍ଢାଇ ଟେକି ବହେ ନଚେଇଲେ, କହିଲେ, 'ପୁରୁଷୋତ୍ତମ, ତୁ ଆଜିଠାରୁ ମୋର ପ୍ରତିନିଧି ହେଲୁ । ଏଇ କଥା ପଦଟିରେ ମୋର ଜିତିଥିବାର ଗର୍ବ ଖର୍ବ ହୋଇଯାଇଥିଲା ।

୧୯୫୭ ମସିହାରେ ସେ ପୁଣି କଂଗ୍ରେସକୁ ଫେରିଆସିଲେ । ବଡ଼ଚଣା ନିର୍ବାଚନ ମଣ୍ଡଳୀରୁ ନିର୍ବାଚନରେ ଜିଣି ବିଧାନସଭା ସଭ୍ୟ ହେଲେ । ଆମେ ଭାବିଥିଲୁ ମଙ୍ଗରାଜ ଭାଇ ନିଶ୍ଚୟ ମନ୍ତ୍ରୀ ହେବେ । ସେ ହେଲେ ଉପବାଚସ୍ପତି । ପଗ୍ରରିଲି, "ଭାଇ ମନ୍ତ୍ରୀ ହେଲନାହିଁ ?" ଉତ୍ତର ଦେଲେ, "ଆରେ, ମନ୍ତ୍ରୀର ଗୋସେଇଁ ହୋଇଛି " ।

ପୂର୍ବତନ ବିଧାୟକ
କେନ୍ଦ୍ରାପଡ଼ା

• • • •

# ତ୍ୟାଗୀ ଯଦୁମଣି

**ବଳରାମ ପଣ୍ଡା**

୧୯୩୦ ମସିହାରେ ମୁଁ ଅସହଯୋଗ ଆନ୍ଦୋଳନରେ ଯୋଗଦେବା ସମୟରେ ଓଡ଼ିଶାର କଂଗ୍ରେସ ସଭାପତି ପଣ୍ଡିତ ନୀଳକଣ୍ଠ ଦାସଙ୍କ ନେତୃତ୍ୱରେ ସମଗ୍ର ଓଡ଼ିଶାରେ କଂଗ୍ରେସ ବାର୍ତ୍ତାର ପ୍ରଚ୍ଚାର ଓ ପ୍ରସାର ବହୁଳ ମାତ୍ରାରେ ଚ୍ଚାଲିଥିଲା । ତା' ସଂଗେ ସଂଗେ ଓଡ଼ିଶା ପ୍ରଦେଶ ଗଠନ ଓ ସମସ୍ତ ଓଡ଼ିଆ ଅଞ୍ଚଳକୁ ଏକତ୍ରିକରଣ କରିବା ନିମନ୍ତେ ଆନ୍ଦୋଳନ, ପଣ୍ଡିତ ଗୋପବଂଧୁ ଦାସଙ୍କ ନେତୃତ୍ୱରେ ତୀବ୍ରତର ହୋଇଥିଲା । ସେତେବେଳେ ପଣ୍ଡିତ ଗୋପବଂଧୁ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର, ପଣ୍ଡିତ ଲିଙ୍ଗରାଜ ମିଶ୍ର ପ୍ରଚ୍ଚାରକ ଅନନ୍ତ ମିଶ୍ରଙ୍କର ପୂର୍ଣ୍ଣ ସହଯୋଗରେ ସମଗ୍ର ଓଡ଼ିଆଭାଷୀ ଅଞ୍ଚଳକୁ ଏକତ୍ରିକରଣ କରାଯିବା ଉଦ୍‌ଯୋଗ ସମୟରେ ଗଞ୍ଜାମର ଦିବାକର ପଟ୍ଟନାୟକ, କଟକର ଯଦୁମଣି ମଙ୍ଗରାଜ, ବାଲେଶ୍ୱରର ପ୍ରସାଦ ଦାଶ, ଜୟପୁରର ହରିହର ମିଶ୍ର, ପାରଳାର ଶ୍ୟାମ ସୁନ୍ଦର ରାଜଗୁରୁ ପୂର୍ଣ୍ଣପ୍ରାଣରେ ସହଯୋଗ କରୁଥିନ୍ତି । ୧୯୩୪ ସାଲରେ ବ୍ରହ୍ମପୁରଠାରେ ଡ଼ା. ଏସ୍. ସତ୍ୟମୂର୍ତ୍ତିଙ୍କ ସଭାପତିତ୍ୱରେ ଉତ୍କଳ ପ୍ରଦେଶ ଗଠନ ସଂପର୍କରେ ଏକ ବିରାଟ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଠିକ୍ ସେଇ ସମୟରେ କଟକଠାରେ ମଧ୍ୟ ଉତ୍କଳ ସମ୍ମିଳନୀ ବୈଠକ ବସିଥିଲା । ସେତେବେଳେ ପଣ୍ଡିତ ନୀଳକଣ୍ଠ ଦାଶ, ଯଦୁମଣି ମଙ୍ଗରାଜ, ଦିବାକର ପଟ୍ଟନାୟକ ପ୍ରାୟ ଅଧିକାଂଶ ସମୟ କଟକ ସ୍ଥିତ ନବଭାରତ-ପ୍ରେସ୍‌ଠାରେ ଦେଶ ମିଶ୍ରଣ ଓ କଂଗ୍ରେସ ପ୍ରଚ୍ଚାର ନେଇ ବିଚ୍ଚାର ଆଲୋଚନା କରୁଥିଲେ ।

ଏହି ଆନ୍ଦୋଳନ ସମୟରେ ମୋତେ ବହୁବାର କଟକ ଯିବାର ସୁଯୋଗ ମିଳିଥିଲା । ଏଣୁ ୧୯୩୨ ସାଲଠାରୁ ମୋର ମଙ୍ଗରାଜ ବାବୁଙ୍କ ସହ ଘନିଷ୍ଠତା ବଢ଼ିଯାଇଥିଲା । ସେ ମୋତେ ସବୁବେଳେ ତାଙ୍କର ସାନଭାଇ ଭାବରେ ଦେଖୁଥିଲେ । ତାଙ୍କର ହସ ହସ ମୁଖ, ବିଚ୍ଚାରରେ ତୀବ୍ରତା ଓ ଗାମ୍ଭୀରତା ଥିବା ଯୋଗୁଁ ଏବଂ ସେ ଖୋଲା ମତପୋଷଣ କରୁଥିବାରୁ ସେ ସମସ୍ତ କାର୍ଯ୍ୟରେ ସଫଳତା ହାସଲ କରିପାରୁଥିଲେ । ତାଙ୍କର ଭାଷଣ ସମସ୍ତଙ୍କ ଦ୍ୱାରା ଆଦୃତ ହୋଇପାରୁଥିଲା । ଯଦୁମଣି ବାବୁଙ୍କର ହାସ୍ୟରସ ସମ୍ବଳିତ ଅକାଟ୍ୟ ଭାଷଣ ଯୋଗୁଁ ସଭାସ୍ଥାନ୍ ଲୋକାରଣ୍ୟ ହେଉଥିଲା ଏବଂ ସେ ଲୋକଙ୍କ ମୁଖରେ ହସ ଖେଳାଇ ପାରୁଥିଲେ ।

୧୯୩୬ ମସିହାରେ ଉତ୍କଳ ପ୍ରଦେଶ ଗଠନ ପରେ ଓଡ଼ିଶା ବିଧାନସଭା ନିର୍ବାଚନ ନିମନ୍ତେ ପ୍ରାର୍ଥୀ ବାଛିବା ପାଇଁ ସମଗ୍ର ଓଡ଼ିଶା ଗସ୍ତ କରିବାକୁ ଗୋଟିଏ କମିଟି ଗଠନ କରାଯାଇଥିଲା । ଉକ୍ତ କମିଟିରେ ପଣ୍ଡିତ ନୀଳକଣ୍ଠ ଦାଶ, ପଣ୍ଡିତ ଗୋଦାବରୀଶ ମିଶ୍ର, ଯଦୁମଣି ମଙ୍ଗରାଜ, ଦିବାକର ପଟ୍ଟନାୟକ ଓ ବାଲେଶ୍ୱରର ମୁକୁନ୍ଦ ପ୍ରସାଦ ଦାସ ରହିଥାନ୍ତି । ଏହି କମିଟି କାର୍ଯ୍ୟରେ ସହଯୋଗ ଓ ସାହାଯ୍ୟ କରିବାପାଇଁ ମୋତେ ନିର୍ଦ୍ଦେଶ, ପରାମର୍ଶ ତଥା ଦାୟିତ୍ୱ ଦିଆଯାଇଥିଲା ।

ସେତେବେଳେ ଓଡ଼ିଶାରେ ଛଅଗୋଟି ଜିଲ୍ଲା ଥିଲା । ଗଞ୍ଜାମ, କୋରାପୁଟ, ପୁରୀ, କଟକ, ବାଲେଶ୍ୱର, ସମ୍ବଲପୁର ଏବଂ ବିଧାନସଭାର ସଭ୍ୟ ସଂଖ୍ୟା ୪୦ ମଧ୍ୟରେ ସୀମିତ ଥିଲା । ତନ୍ମଧ୍ୟରୁ ୪ ଜଣ ସଭ୍ୟ ରାଜ୍ୟପାଳଙ୍କ ଦ୍ୱାରା ମନୋନୀତ ହେଉଥିଲା । ଜନସଂଖ୍ୟା ଥିଲା ପ୍ରାୟ ୧ କୋଟି ୩୦ ଲକ୍ଷ ତଥା ତତ୍‌କାଳୀନ ବିଧାନସଭାରେ ମାତ୍ର ୩ ଜଣ ମନ୍ତ୍ରୀ

ପଦରେ ଅଧିଷ୍ଠିତ ହେଉଥିଲେ । ପ୍ରଧାନମନ୍ତ୍ରୀ ଥିଲେ ପ୍ରାତଃସ୍ମରଣୀୟ ମହାରାଜା କୃଷ୍ଣଚନ୍ଦ୍ର ଗଜପତି, ଗୋରାଚାନ୍ଦ ପଟ୍ଟନାୟକ ଏବଂ ଲତିଫୁର ରହମନ୍ ଅନ୍ୟତମ ଦୁଇଜଣ ମନ୍ତ୍ରୀ ରହିଥିଲେ । ବାଚସ୍ପତି ଆସନରେ ଅଳଙ୍କୃତ ହୋଇଥିଲେ ମୁକୁନ୍ଦ ପ୍ରସାଦ ଦାସ । ଜଣେ ମାତ୍ର କମିଶନର ମି. ହବାକ୍ ରହିଥିଲେ । ମି. ହବାକ୍ ରାଜ୍ୟପାଳ ଆସନରେ ବସିବାର ସୁଯୋଗ ପାଇଥିଲେ ।

ଦକ୍ଷିଣ ଓଡ଼ିଶାରେ ନିର୍ବାଚନ କମିଟି ଦାୟିତ୍ୱରେ ପଣ୍ଡିତ ନୀଳକଣ୍ଠ ଦାଶ, ଯଦୁମଣି ମଙ୍ଗରାଜ, ଦିବାକର ପଟ୍ଟନାୟକ ରହିଥିଲେ । ତାଙ୍କର ସହକର୍ମୀ ଭାବେ ମୋତେ ଦାୟିତ୍ୱ ତୁଲାଇବାକୁ ହେଉଥିଲା । ଆମର ପ୍ରଥମ ଗସ୍ତ ଥିଲା କୋରାପୁଟ ଜିଲ୍ଲା । ସେତେବେଳେ ଜଣେ ପ୍ରଭାବଶାଳୀ ନେତା ଭାବେ ରାଧାକୃଷ୍ଣ ବିଶ୍ୱାସରାୟ ରହିଥିଲେ । ନବରଂଗପୁରଠାରେ ଶିକ୍ଷକତା କରୁଥିବା ସଦାଶିବ ତ୍ରିପାଠୀ (ଭୂତପୂର୍ବ ମୁଖ୍ୟମନ୍ତ୍ରୀ) ଙ୍କୁ ବିଧାନସଭା ସଭ୍ୟ ନିମନ୍ତେ ମନୋନୀତ କରାଯାଇଥିଲା । କୋରାପୁଟ ଜଂଗଲ ଅଞ୍ଚଳରେ ଅମରକୋଟ ରାସ୍ତାରେ ଆମେ ଗ୍ୱରିଜଣ ଖୋଲା ଫୋର୍ଡଗାଡି ନେଇ ଯାଉଥିବାବେଳେ ଗୋଟିଏ ବିରାଟ ବାଘ ଆମର ରାସ୍ତା ଅବରୋଧ କରିଥିଲା । ଚତୁର କରିତ୍କର୍ମା ବାବୁ ଯଦୁମଣି ମଙ୍ଗରାଜ ନିଜର ଉପସ୍ଥିତ ବୁଦ୍ଧି ପ୍ରୟୋଗ କରି ଉକ୍ତ ଗାଡିକୁ ସେକେଣ୍ଡ ଗିଅରରେ ପକାଇ ବାଘ ଗର୍ଜନ ସହ ସମଗର୍ଜନ କରାଇବାରେ ଆମେ ଉକ୍ତ ରାସ୍ତା ଅତିକ୍ରମ କରିପାରିଥିଲୁ ।

ଅନ୍ୟତମ ଘଟଣା ହେଲା-ରାୟଗଡ଼ାଠାରୁ ପାର୍ବତୀପୁର ଆମେ ଯାଉଥିବା ସମୟରେ ନାଗାବଳୀ ନଦୀ ଅତିକ୍ରମ ହେବାକୁ ପଡିଥିଲା । ସେ ଅଞ୍ଚଳ ବାସିନ୍ଦା ଆଶ୍ୱାସନା ଦେଲେ ଯେ ନଦୀରେ ସେପରି କିଛି ବେଶୀ ପାଣି ନାହିଁ । ଆମେ ନଦୀ ଅତିକ୍ରମ କରିବା ଚେଷ୍ଟା କରିବାବେଳେ ଆକସ୍ମିକ ଭାବେ ଏକ ଦ୍ରୁତଗାମୀ ସ୍ରୋତ ଆମକୁ ଅଟକାଇବା ପାଇଁ ମାଡ଼ିଆସିଲା । ସେତେବେଳେ ମଧ୍ୟ ବାବୁ ଯଦୁମଣି ଉପସ୍ଥିତ ବୁଦ୍ଧି ପ୍ରୟୋଗ କରି ଗାଡ଼ିକୁ ଉଠାଇନେବା ନିମନ୍ତେ ଯତ୍ନ କରିଥିଲେ ଏବଂ ଉକ୍ତ ପଦକ୍ଷେପ ମଧ୍ୟ ସଫଳ ହୋଇଥିଲା । ଏପରି ଏକ ଆକସ୍ମିକ ଦୁର୍ଘଟଣା ନିମନ୍ତେ ଆମେ ପ୍ରସ୍ତୁତ ନଥିଲୁ ତଥାପି ମଙ୍ଗରାଜ ବାବୁଙ୍କର ଚେତନାଧର୍ମୀ ବିଗ୍ରହ ଆମକୁ ଲକ୍ଷ୍ୟ ସ୍ଥଳରେ ପହଞ୍ଚାଇ ପାରିଥିଲା ।

ପାରଳା ମହାରାଜାଙ୍କ ପ୍ରତି ମୋର ଅସୀମ ଭକ୍ତି ଶ୍ରଦ୍ଧା ଓ ଆନୁଗତ୍ୟ ରହିଥିଲା ତେଣୁ ୧୯୩୯ ସାଲରେ ଜିଲ୍ଲା ବୋର୍ଡ ନିର୍ବାଚନ ତାଙ୍କର ଦିବାନଙ୍କ ସହ ହେବା ଅନିବାର୍ଯ୍ୟ ହୋଇପଡିଲା । ସେତେବେଳେ ଦିବାନଙ୍କ ପ୍ରତିପତ୍ତି ଯୋଗୁଁ ମୋର ନିର୍ବାଚନ ଜିଣାରେ ଆଶଙ୍କା ରହିଥିଲା । ଏହିପରି ଏକ ଘଡ଼ିସନ୍ଧି ବେଳରେ ବାବୁ ଯଦୁମଣି ମଙ୍ଗରାଜ ମୋ ପାଇଁ ପାରଳାଖେମୁଣ୍ଡିଠାରେ ଅନୁଷ୍ଠିତ ଏକ ନିର୍ବାଚନ ସଭାରେ ହାସ୍ୟରସ ଉଦ୍ରେକ ଅଗ୍ନିବର୍ଷି ଏକ ଭାଷଣଦେଇ ଜନମତକୁ ମୋ ସପକ୍ଷରେ ଆଣିବାରେ ସକ୍ଷମ ହୋଇଥିଲେ । ଦ୍ୱିତୀୟଥରର ଜିଲ୍ଲା ବୋର୍ଡ଼ ନିର୍ବାଚନ ଜିଣିବା ମୋ ନିମନ୍ତେ ସମ୍ଭବପର ହୋଇଥିଲା । ଏହି ମହାନ୍ ନେତାଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଜଣାଇବାର ସୁଯୋଗ ପାଇ ନିଜକୁ ଧନ୍ୟ ମନେକରୁଛି ।

**ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ**
**ସିଟି ହସ୍ପିଟାଲ ରୋଡ୍, ବ୍ରହ୍ମପୁର**

• • • • •

# ସ୍ୱର୍ଗୀୟ ମଙ୍ଗରାଜ

ଭଗବାନ କର

ମୋର ରାଜନୈତିକ ଗୁରୁ ଥିଲେ ଯଦୁମଣି ମଙ୍ଗରାଜ। ତାଙ୍କ ସହ ମୋର ପ୍ରଥମ ପରିଚୟ ୧୯୩୦ ମସିହା ଅପ୍ରେଲ ୧୩ ତାରିଖ ଦିନ ହୋଇଥିଲା। ସେଦିନ କେନ୍ଦ୍ରାପଡ଼ା ମ୍ୟୁନିସ୍‌ପାଲିଟି ହତା ମଧ୍ୟରେ ଜାଲିଆନାୱାଲାବାଗ ହତ୍ୟାକାଣ୍ଡର ପ୍ରତିବାଦ ସଭା କଂଗ୍ରେସ ପକ୍ଷରୁ କରାଯାଇଥିଲା। ସେତେବେଳେ ମୁଁ ନରସିଂହପୁର ଅଭୟା ସଂସ୍କୃତ ବିଦ୍ୟାଳୟର ମଧ୍ୟମା ଛାତ୍ର। ସ୍କୁଲ ଛୁଟି ପରେ ମୋ ସହ ସ୍ୱର୍ଗୀୟ ଦୀନବନ୍ଧୁ ଶତପଥି, ବାସୁଦେବ ପତି, ବଳଦେବ ମାଇନର ସ୍କୁଲର ଛାତ୍ର ସ୍ୱର୍ଗୀୟ ଡମ୍ବରୁଧର ମଲ୍ଲ, ଦୁଖିଶ୍ୟାମ ଜେନା, ସ୍ୱର୍ଗୀୟ ଅଦ୍ୱୈତ ବଲ୍ଲଭ ରାୟ, ଶ୍ରୀ ରାଜକିଶୋର ମହାନ୍ତି ପ୍ରଭୃତି ଯାଇଥିଲେ। ସଭାରେ ପଞ୍ଜାବର ଜନସାଧାରଣଙ୍କ ପ୍ରତି ଯେଉଁ ଅମାନୁଷିକ ହତ୍ୟାକାଣ୍ଡ ମିଷ୍ଟର ଓଡ଼ାୟାର କରିଥିଲେ ତାର ନିନ୍ଦାକରି ସଭାରେ ଏକ ନିନ୍ଦା ପ୍ରସ୍ତାବ ଗ୍ରହଣ କରାଯାଇଥିଲା। ମଙ୍ଗରାଜବାବୁ ସର୍ବସାଧାରଣଙ୍କୁ କଂଗ୍ରେସରେ ଯୋଗଦେବାକୁ ଏଥିନିମନ୍ତେ ନିବେଦନ କରିଥିଲେ ଓ ସ୍ୱର୍ଗୀୟ ସନ୍ତୋଷ କୁମାର ବୋଷ ଓ ନୃସିଂହ ଚରଣ ପତିଙ୍କ ନିକଟରେ ନାମ ଲେଖାଇବାକୁ କହିଲେ।

ତା ପରଦିନଠାରୁ ମଙ୍ଗରାଜବାବୁଙ୍କ ଘରେ ଭିଡ଼ ଜମିଲା। ଏପ୍ରିଲ ୧୪ କିମ୍ବା ୧୫ ତାରିଖ ଦିନ କେନ୍ଦ୍ରାପଡ଼ା ପୋଲିସ୍ ଇନ୍‌ସପେକ୍ଟର ତାଙ୍କୁ ଗିରଫ କରିଥିଲେ। ଗିରଫ ହେବା ପରେ ଆମ୍ଭମାନଙ୍କୁ ସେ କହିଥିଲେ ଏଥିପାଇଁ ଭୟ ନକରି ମୋ ପରି ଶହ ଶହ ସଂଖ୍ୟାରେ ଗିରଫ ହୋଇ ଜେଲକୁ ଆସ। ସେ କଚେରି ବାରଣ୍ଡାରେ ଠିଆହୋଇ କ୍ରୋଧାନ୍ୱିତ ହୋଇ, ହିଂସା ନ କରିବାକୁ ଜନତାକୁ ଉପଦେଶ ଦେଇ କୋଟି ଭିତରକୁ ଗଲେ। ମାଜିଷ୍ଟ୍ରେଟ ଅଜୟ କୁମାର ଦାସଙ୍କ କୋର୍ଟରେ ବିଗ୍ରର ହୋଇ ତାଙ୍କୁ ୩ବର୍ଷ କାରାଦଣ୍ଡ ଓ ହଜାରେ ଟଙ୍କା ଜୋରିମାନା ହେଲା। ସେ ହସି ହସି ଜେଲ୍ ଭିତରକୁ ଗଲେ। ପରେ ତାଙ୍କର ପ୍ରିୟ ଜୋତାଟିକୁ ନିଲାମ କରି ଜୋରିମାନା ବାବଦକୁ ନିଲାମ ଟଙ୍କା କୋର୍ଟ ନେଲା।

୧୯୩୧ ମସିହାରେ ତତ୍‌କାଳୀନ ଭାରତର ବଡ଼ଲାଟ ଆରୱିନ ଓ ମାହାତ୍ମା ଗାନ୍ଧୀଙ୍କ ସହ ଏକ ଚୁକ୍ତି ହେବାରୁ ସମସ୍ତ ରାଜନୈତିକ ବନ୍ଦୀ ମୁକ୍ତହେଲେ। କଂଗ୍ରେସର ନେତା ଓ କର୍ମୀମାନେ ଜେଲରୁ ମୁକ୍ତିହେବା ପରେ କଟକର ନାଗରିକଙ୍କ ତରଫରୁ ଭବ୍ୟ ସମ୍ବର୍ଦ୍ଧନା କରାଗଲା। କାଠଯୋଡ଼ି ବାଲିରେ ବିରାଟ ସଭା ହେଲା। ତା ପରଦିନ କେନ୍ଦ୍ରାପଡ଼ାରେ ମଧ୍ୟ ବିରାଟ ସାଧାରଣସଭା ହେଲା। ମିର୍‌ପାଟଣାର ସ୍ୱର୍ଗୀୟ ଗୋପାଳକୃଷ୍ଣ ଦାସଙ୍କ ଘରେ ଆଶ୍ରମ ହେଲା। କେନ୍ଦ୍ରାପଡ଼ା, ପାଟକୁରା, ଆଳି, ରାଜନଗର ଓ ମହାକାଳପଡ଼ାକୁ କର୍ମୀମାନଙ୍କୁ କଂଗ୍ରେସ ବାର୍ତ୍ତା ପ୍ରଚାର କରିବାକୁ ପଠାଗଲା। ୧୯୩୨ ମସିହାରେ ବ୍ରିଟିଶ୍ ସରକାର କଂଗ୍ରେସକୁ ବେଆଇନ୍ ଘୋଷଣା କଲା। ଗ୍ରଲିଲା ଗିରଫ୍‌ଦାରୀ। ନେତା ଓ କର୍ମୀମାନେ ହେଲେ ବନ୍ଦୀ। ଓଡ଼ିଶାର ଜେଲ୍‌ମାନଙ୍କରେ ସ୍ଥାନାଭାବ ହେଲା। ବିହାର-ଓଡ଼ିଶା ସରକାର ପାଟନାରେ ଗୋଟିଏ କ୍ୟାମ୍ପ ଜେଲ୍ ଖୋଲି ଓଡ଼ିଶାର ବନ୍ଦୀମାନଙ୍କୁ ସେଠାରେ ରଖିଲେ। ୧୯୩୬ ମସିହାରେ ଓଡ଼ିଶା ସ୍ୱତନ୍ତ୍ର ହେବାପରେ ବିଧାନସଭା ନିର୍ବାଚନ ହେଲା। ସେ ନିର୍ବାଚନ ଥିଲା ରାଜା, ଜମିଦାର ଓ କଂଗ୍ରେସ ମଧ୍ୟରେ। ସେ ନିର୍ବାଚନରେ ମଙ୍ଗରାଜବାବୁ, କନିକାର ଟିକାୟତ ଶୈଳେନ୍ଦ୍ର ନାରାୟଣ ଭଞ୍ଜଦେବଙ୍କୁ ବିପୁଳ

ଭୋଟରେ ହରାଇଲେ । ଆଳିର ସ୍ୱର୍ଗୀୟ ସହଦେବ ଦାସ ଆଳି ମ୍ୟାନେଜରଙ୍କୁ ହରାଇଦେଲେ । ମୋଟରେ ୬ଟିଯାକ ଆସନ କଂଗ୍ରେସ ଜିତି ବିଧାନସଭା ଗଠନ କଲେ । ମଙ୍ଗରାଜବାବୁ ହେଲେ ପାର୍ଲିଆମେଣ୍ଟାରୀ ସେକ୍ରେଟାରୀ । ମଙ୍ଗରାଜବାବୁ ବିହାର-ଓଡ଼ିଶା ବିଶ୍ୱ ବିଦ୍ୟାଳୟର ସିଣ୍ଡିକେଟ୍ ମେମ୍ବର ଥିଲେ । କନିକା ରାଜା ତାଙ୍କ ଓକିଲଙ୍କ ପରାମର୍ଶରେ ମଙ୍ଗରାଜବାବୁଙ୍କୁ ମିଥ୍ୟା ମକଦ୍ଦମାରେ ଜଡିତ କରାଇ ବହୁତ ହଇରାଣ କରିଥିଲେ ମାତ୍ର ସେ ନିର୍ଦ୍ଦୋଷରେ ଖଲାସ ହୋଇଥିଲେ ।

ଓଡ଼ିଶାରେ ସୀମା ଆନ୍ଦୋଳନବେଳେ ମଙ୍ଗରାଜବାବୁ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ଜୀବନସାରା ସେ ଅନ୍ୟାୟ ବିରୁଦ୍ଧରେ ସଂଗ୍ରାମ କରିଥିଲେ । କେନ୍ଦ୍ରାପଡ଼ା ମ୍ୟୁନିସିପାଲିଟି ଥରେ ଆଦେଶ ଦେଲେ ଯେ ବାଉଁଶଗଛ କାଟିବାକୁ । ମହିପାଳଠାରୁ ବାଉଁଶଗଛ କଟା ଗ୍ଲା ଲିଲା । କର୍ମୀମାନେ ମଙ୍ଗରାଜବାବୁଙ୍କୁ ଏକଥା ଜଣାଇଲେ । ସେ ତା ପରଦିନ ମ୍ୟୁନିସିପାଲିଟି ହତା ମଧ୍ୟରେ ବାଉଁଶକଟା ପ୍ରତିବାଦ ସଭା କଲେ । ତତ୍କାଳୀନ ଚେୟାରମ୍ୟାନ ମୁକୁନ୍ଦ ପ୍ରସାଦ ମହାନ୍ତି ଏଥିପାଇଁ ଦୁଃଖପ୍ରକାଶ କଲେ ଓ ବାଉଁଶକଟା ବନ୍ଦ ହେଲା ।

ତାଙ୍କର ସ୍ୱର୍ଗବାସ ଦିନଠାରୁ କେନ୍ଦ୍ରାପଡ଼ା ଶ୍ରୀହୀନ ହୋଇଛି । ଅନ୍ୟାୟ ଓ ଅତ୍ୟାଚାର ବିରୁଦ୍ଧରେ ଆଉ କାହାରି ସ୍ୱରଉତ୍ତୋଳନ ହେଉନାହିଁ ।

୧୯୩୧ ମସିହାରେ କରାଚିଠାରେ ସର୍ବଭାରତୀୟ କଂଗ୍ରେସ ଅଧିବେଶନ ବସିବ ବୋଲି ସ୍ଥିର ହୋଇଥାଏ । ଓଡ଼ିଶାରୁ ଜିଲ୍ଲା ଓ ପ୍ରଦେଶ କମିଟିର ସଭ୍ୟମାନେ କରାଚି କଂଗ୍ରେସ ଅଧିବେଶନରେ ଯୋଗଦେବାକୁ ରେଲ୍ ଟିକେଟ କାଟିଲେ । ମଙ୍ଗରାଜଙ୍କ ପାଖରେ ଅଳି କରିବାରୁ ମୋର ଅର୍ଥାଭାବ ହେତୁ ସେ ମୋ ପାଇଁ ଟିକେଟ କାଟି ସାଙ୍ଗରେ ନେଲେ । ସେ ଖୁବ୍ ଦୟାଳୁ ଥିଲେ । କଂଗ୍ରେସ ଟିକେଟରେ ମହାକାଳପଡ଼ା ନିର୍ବାଚନ ମଣ୍ଡଳୀରୁ ବହୁ ଭୋଟରେ ଜିଣିଥିଲେ । ମଙ୍ଗରାଜବାବୁ ଜିଲ୍ଲା ବୋର୍ଡର ସଭ୍ୟ ଓ ଲୋକାଲ ବୋର୍ଡର ଚେୟାରମ୍ୟାନ ଥାଇ ବହୁ ଅଗମ୍ୟ ସ୍ଥାନକୁ ରାସ୍ତା ଓ ସ୍କୁଲମାନ ପ୍ରତିଷ୍ଠା କରିଥିଲେ ।

**ସ୍ୱାଧୀନତା ସଂଗ୍ରାମୀ**
**କେନ୍ଦ୍ରାପଡ଼ା**

• • • •

*ଯାହାର ମନରେ ଶାନ୍ତି ଏବଂ ଦୃଢତା ନାହିଁ, ସେ ଈଶ୍ୱରଙ୍କୁ ପାଇପାରିବ ନାହିଁ ।*

**-ବାପୁଜୀ**

# ବୀର ଯଦୁମଣି

**ଦୁଃଖିଶ୍ୟାମ ଜେନା**

ଏପରି ଏକ ମହାନ୍ ପ୍ରତିଭା ସମ୍ବନ୍ଧରେ କିଛି ଲେଖିବାବେଳେ ତାଙ୍କର ବ୍ରିଟିଶ ଶାସନ ବିରୁଦ୍ଧରେ ସ୍ୱାଧୀନତା ସଂଗ୍ରାମର ତୂର୍ଯ୍ୟନିନାଦ ଓଜସ୍ୱିନୀ ବକ୍ତୃତା ସ୍ମରଣ କରି ଲେଖିନୀସହ ମୋର ହସ୍ତ-ଶରୀର ଶିହରି ଉଠୁଛି । ମଙ୍ଗରାଜବାବୁ କଲେଜ ଛାତ୍ରାବସ୍ଥାରେ ତତ୍କାଳୀନ ରେଭେନ୍‌ସା କଲେଜ୍ ଅଧ୍ୟକ୍ଷଙ୍କ "ଓଡ଼ିଆ ମେଣ୍ଢା" ତାଚ୍ଛଲ୍ୟ ଉକ୍ତିର ପ୍ରତିବାଦରେ ଓଡ଼ିଆ ଯୁବକଙ୍କୁ ସିଂହଶାବକ ରୂପେ ପ୍ରତିପାଦିତ କରି ପ୍ରଥମ ବିଶ୍ୱଯୁଦ୍ଧରେ ଲମ୍ଫ ପ୍ରଦାନ କରିଥିଲେ । ପରେ ଉତ୍କଳମଣି ଗୋପବନ୍ଧୁ ଦାସ ପ୍ରଭୃତି ପଞ୍ଚସଖାଙ୍କ ସାହଚର୍ଯ୍ୟ ଲାଭକରି ଅସହଯୋଗ ଆନ୍ଦୋଳନରେ ଯୋଗଦାନ ପୂର୍ବକ କେନ୍ଦ୍ରାପଡ଼ା କାହିଁକି ସାରା ଉତ୍କଳରେ ଜଣେ ମହାନ୍ ବିପ୍ଳବୀ ନେତା ଭାବରେ ସୁବିଦିତ ହୋଇଥିଲେ । ଇତ୍ୟବସରରେ ସ୍ୱାୟତ୍ତ ଶାସନ ବିଭାଗରେ କେନ୍ଦ୍ରାପଡ଼ା ଲୋକାଲ ବୋର୍ଡ଼ର ଚେୟାରମ୍ୟାନ ପଦ ଅଳଙ୍କୃତ କରି କେନ୍ଦ୍ରାପଡ଼ାର ବହୁ ଅଂଚଳରେ ପ୍ରାଇମେରୀ ସ୍କୁଲ ପ୍ରତିଷ୍ଠା, ରାସ୍ତାଘାଟ ନିର୍ମାଣ ସାଙ୍ଗକୁ ସ୍ୱରାଜ୍ୟ ବାର୍ତ୍ତା ପ୍ରଚାର କରିବାରେ ତାଙ୍କର ନିର୍ଭୀକ ସଂଗ୍ରାମୀ ଗୁଣରେ ମୁଗ୍ଧହୋଇ ଆଳି ରାଜାସାହେବ ତାଙ୍କୁ ଏକ ଅଶ୍ୱ ପ୍ରଦାନ କରିଥିଲେ ।

ସନ ୧୯୩୦ ମସିହା ଲବଣ ସତ୍ୟାଗ୍ରହ ଓ ଆଇନ୍‌ଅମାନ୍ୟ ଆନ୍ଦୋଳନରେ ଗିରଫ ହୋଇ ହଜାରୀବାଗ ଜେଲ୍‌ରେ କାରାଦଣ୍ଡ ଭୋଗୁଥିବାବେଳେ ମୁଁ ତାଙ୍କର ପଦାଙ୍କ ଅନୁସରଣ ପୂର୍ବକ ବାନରସେନାରେ ଯୋଗଦାନକରି କଟକ ଜେଲ୍‌ରେ ବନ୍ଦୀ ଥିଲି । ତାଙ୍କ ସହ ଜେଲ୍‌ରେ ପତ୍ରାଳାପରେ ଆନ୍ଦୋଳନରେ କେନ୍ଦ୍ରାପଡ଼ାର ଭୂମିକା ଉତ୍ସାହପ୍ରଦ ଜାଣି ପତ୍ର ମାଧ୍ୟମରେ ମୋତେ ସେ ପୁତ୍ରବତ୍ ସ୍ନେହ ଜଣାଇଥିଲେ ।

ସନ ୧୯୩୧ ମସିହା ଗାନ୍ଧୀ-ଇଭରୋଇନ୍ ସନ୍ଧି ମୁହୂର୍ତ୍ତ-ଭାରତର ସମସ୍ତ ରାଜବନ୍ଦୀ କାରାମୁକ୍ତ ହେଲେ । କଟକରେ ଉତ୍କଳର ସମସ୍ତ ନେତା ଓ କର୍ମୀମାନଙ୍କର ଏକ ସମ୍ମିଳନୀ ହେଲା । କାଠଯୋଡ଼ି ନଦୀଶଯ୍ୟାରେ ଏକ ବିରାଟ ସାଧାରଣ ସଭାରେ ନେତାମାନେ ଭାଷଣ ଦେଲେ । ମାତ୍ର ଜନସାଧାରଣ ମଙ୍ଗରାଜବାବୁଙ୍କ ଭାଷଣ ଶୁଣିବାକୁ ବ୍ୟାକୁଳ ଥିଲେ । ସେ ମଞ୍ଚ ଉପରକୁ ଉଠିଲାକ୍ଷଣି କରଧ୍ୱନିରେ (ବାଘ ଉଠିଲା କହି) ସଭାସ୍ଥଳ ପ୍ରକମ୍ପିତ ହେଲା । ମଙ୍ଗରାଜବାବୁ ଭାଷଣରେ ବହୁ ବ୍ୟଙ୍ଗୋକ୍ତି, ଢଗଢମାଳି ଆବୃତ୍ତି କରନ୍ତି । ସେ ଶାସନକୁ ଲକ୍ଷ୍ୟକରି କହିଲେ-

*"ମାରେ ନା ମୁଁ ମଲିଣି,*
*ବଉଠା ଲଗେଇ ଦେଖେନା*
*ମୁଁ ପୋଇଖାଡ଼ି ବାରି ହେଲିଣି"*

ନେତାମାନେ ନିଜ ଅଂଚଳର କର୍ମୀମାନଙ୍କୁ ନେଇ ସଂଗଠନ କାର୍ଯ୍ୟରେ ଲାଗିଗଲେ । ମଙ୍ଗରାଜବାବୁଙ୍କ ନେତୃତ୍ୱରେ ଆମ୍ଭେମାନେ କେନ୍ଦ୍ରାପଡ଼ା ଅଂଚଳରେ ସଂଗଠନ କାର୍ଯ୍ୟରେ ଲାଗିଲୁ ।

୧୯୩୨ ମସିହାରେ କଂଗ୍ରେସ ବେଆଇନ ଘୋଷିତ ହେଲା । ମଂଗରାଜବାବୁ ପୁନଶ୍ଚ ଜେଲ୍ ଗଲେ । ମୁଁ ମଧ୍ୟ ପାଟଣା କ୍ୟାମ୍ପ ଜେଲରେ ବନ୍ଦୀ ହେଲି ।

୧୯୩୪ ମସିହାରେ ମହାତ୍ମା ଗାନ୍ଧୀଙ୍କ ଓଡ଼ିଶା ପଦଯାତ୍ରାରେ ମଂଗରାଜବାବୁ ମହାତ୍ମାଗାନ୍ଧୀଙ୍କୁ କେନ୍ଦ୍ରାପଡ଼ାକୁ ଆଣି ଜାତୀୟ ସଂହତି ଦିଗରେ ମହାନ୍ ଭୂମିକା ଗ୍ରହଣ କରିଥିଲେ ।

୧୯୩୭ ମସିହାରେ ଭାରତରେ ୬ ଗୋଟି ପ୍ରଦେଶରେ କଂଗ୍ରେସ ମନ୍ତ୍ରିମଣ୍ଡଳ ପ୍ରତିଷ୍ଠିତ ହେଲା ।

ଓଡ଼ିଶା ସେଥିମଧ୍ୟରେ ଅନ୍ୟତମ। ମଙ୍ଗରାଜବାବୁ କେନ୍ଦ୍ରାପଡ଼ା ନିର୍ବାଚନମଣ୍ଡଳୀରୁ ଆଡ଼ଭୋକେଟ୍ ଲକ୍ଷ୍ମୀଧର ମହାନ୍ତିଙ୍କ ସହ ପ୍ରତିଦ୍ୱନ୍ଦ୍ୱିତା କରି ଭୋଟରମାନଙ୍କୁ ଆହ୍ୱାନ ଦେଇଥିଲେ-

*"ଚକ୍ଷେ ଛନ୍ତି ବସୁମାତା, ଊର୍ଦ୍ଧ୍ୱରେ ଧର୍ମଦେବତା,*
*ମନମଧ୍ୟେ ଭାବୁଥିବ ଦେଶର ଅବସ୍ଥା।"*

ସେହିଥର ବିପୁଳ ଭୋଟରେ ଜୟଯୁକ୍ତ ହୋଇ ମନ୍ତ୍ରିମଣ୍ଡଳରେ ସ୍ଥାନ ପାଇଥିଲେ।

କଂଗ୍ରେସ ନେତାମାନେ ତାଙ୍କପ୍ରତି ଅସୂୟାଭାବ ପୋଷଣ କରି ତାଙ୍କୁ କଂଗ୍ରେସରୁ ବାସନ୍ଦ କରିଥିଲେ ହେଁ ପରିବର୍ତ୍ତୀ କାଳରେ ତାଙ୍କ ପ୍ରତିଭା ନିକଟରେ ହାର ମାନି ସ୍ୱାଧୀନତା ପର ଓଡ଼ିଶା ବିଧାନସଭାରେ ସମ୍ମାନଜନକ ଉପବାଚସ୍ପତି ପଦରେ ଅଭିସିକ୍ତ କରିଥିଲେ। ମଙ୍ଗରାଜବାବୁ ଏକ ଦିଗରେ ଯେପରି ସ୍ନେହୀ, ମିଷ୍ଟଭାଷୀ ଥିଲେ ଓ କୌତୁକପୂର୍ଣ୍ଣ ହାସ୍ୟୋକ୍ତି ଦ୍ୱାରା ସମସ୍ତଙ୍କୁ ଆକୃଷ୍ଟ କରିପାରୁଥିଲେ ଅନ୍ୟଦିଗରେ ରାଜନୀତି କ୍ଷେତ୍ରରେ ସେହିପରି ଜ୍ୱାଳାମୟୀ ଭାଷଣ ମାଧ୍ୟମରେ ସୂର୍ଯ୍ୟରଶ୍ମିରେ ବାଲୁକା ରାଶି ପରି ଶ୍ରୋତାମାନଙ୍କ ହୃଦୟରେ ତପ୍ତ ଲୌହ ଫୁଟାଇ ଦେଉଥିଲେ।

ଷଢେଇକଳା ଓ ଖରସୁଆଁ ବିଚ୍ଛିନ୍ନବେଳେ ସେ ଓଡ଼ିଶାର ଜନମାନସରେ ଯେଉଁ ବିଦ୍ରୋହାଗ୍ନି ଜାଳିଥିଲେ ତାହା ଭାଷାତୀତ ଅଟେ।

ମୃତ୍ୟୁ ପୂର୍ବରୁ ସେ ଓଡ଼ିଶାର ବିଭିନ୍ନ ଅନୁଷ୍ଠାନ ତରଫରୁ ବୀର-ମଙ୍ଗରାଜ ରୂପେ ସମ୍ମାନିତ ଓ ପୂଜିତ ହୋଇଛନ୍ତି। ସେ କେନ୍ଦ୍ରାପଡ଼ାରେ ବହୁ ଯୁବ-ପ୍ରତିଭା ସୃଷ୍ଟି କରିଯାଇଛନ୍ତି।

ସ୍ୱାଧୀନତା ସଂଗ୍ରାମୀ
ବଗଡ଼ା, କେନ୍ଦ୍ରାପଡ଼ା

• • •

*ଭଗବାନଙ୍କ ବ୍ୟତୀତ ଅନ୍ୟ କାହା ଉପରେ ଭରସା ରଖିବା ବ୍ୟର୍ଥ ଅଟେ।*

-ବାପୁଜୀ

# ମଙ୍ଗରାଜ ସ୍ମରଣେ

## କୃଷ୍ଣଚନ୍ଦ୍ର ତ୍ରିପାଠୀ

୧୯୪୪ ମସିହା। ନେତାଜୀ ସୁଭାଷ ଚନ୍ଦ୍ରଙ୍କର ଅଧିନାୟକତ୍ୱରେ ଆଜାଦ୍‌ହିନ୍ଦ୍ ଫୌଜ ଇମ୍ଫାଲ ଯୁଦ୍ଧ ସାମ୍ମୁଖ୍ୟରେ ସଂଗ୍ରାମ କରୁଅଛନ୍ତି। ନେତାଜୀଙ୍କର ମୁଖ୍ୟ କାର୍ଯ୍ୟାଳୟ ଅପର ବର୍ମାର "ମୋମିଓ" ଠାରେ ଅବସ୍ଥିତ। ସାମରିକ ମୁଖ୍ୟ ଚିକିତ୍ସାଳୟ ମଧ୍ୟ ସେଠାରେ ଥିଲା। ଯୁଦ୍ଧକ୍ଷେତ୍ରରେ କେତେକ ଯବାନ ସାମାନ୍ୟ ଆଘାତ ହୋଇ ସେହି ଡାକ୍ତରଖାନାରେ ଚିକିତ୍ସା ପରେ ଭଲ ହୋଇ ପୁଣି ଯୁଦ୍ଧକ୍ଷେତ୍ରକୁ ଯିବାକୁ ପ୍ରସ୍ତୁତ ହେବା ଅବସରରେ ନେତାଜୀ ଦେଶାତ୍ମବୋଧ ସଂଗୀତ ଆସରର ଆୟୋଜନ କରିଥିଲେ। ଯବାନ୍‌ମାନଙ୍କ ମଧ୍ୟରେ ବିଭିନ୍ନ ଭାଷାର ଦେଶାତ୍ମବୋଧ ସଂଗୀତଜ୍ଞମାନଙ୍କୁ ଏକତ୍ର କରାଇଥିଲେ। ଯବାନମାନଙ୍କ ସମାବେଶରେ ସଂଗୀତ ପରିବେଷିତ ହେଲା। ମୁଁ ସେଥିରେ ଯୋଗଦେଇ ସ୍ୱର୍ଗତ କୃଷ୍ଣ ମୋହନ ପଟ୍ଟନାୟକଙ୍କର ଓଡ଼ିଆ ଦେଶାତ୍ମବୋଧ ସଂଗୀତ ଗାନ କରିଥିଲି। ପରଦିନ ନେତାଜୀ ତାଙ୍କର ଦପ୍ତରକୁ ଡ଼କାଇ ମୋର ଠିକଣା ତଥା କାର୍ଯ୍ୟକଳାପ ସବୁ ପଚ୍ଚାରିବା ସଙ୍ଗେ ସଙ୍ଗେ ଓଡ଼ିଶାର ବିଶିଷ୍ଟ ନେତାମାନଙ୍କ ସମ୍ବନ୍ଧରେ ବିଭିନ୍ନ କଥା ପଚାରିଥିଲେ। ମୁଁ ଗଂଜାମ ଅଧିବାସୀ ଓଡ଼ିଶାର ସବୁ ନେତାମାନଙ୍କ କଥା ନେତାଜୀଙ୍କୁ କହିଲି। ବର୍ମାରେ ଲକ୍ଷେ ଓଡିଆ ରହିଥିବା କଥା କହିଲି। ଦୁଇଟି ଓଡ଼ିଆ ସାପ୍ତାହିକ ଖବରକାଗଜ ରେଙ୍ଗୁନ୍‌ରୁ ପ୍ରକାଶ ପାଉଥିବା କଥା ମଧ୍ୟ କହିଲି। ମୋଠାରୁ ଓଡ଼ିଶାର ସବୁ ନେତାମାନଙ୍କ କଥା ଶୁଣି ଯଦୁମଣି ମଙ୍ଗରାଜକୁ ଜାଣ କି ବୋଲି ସେ ମୋତେ ପଚ୍ଚାରିଲେ। ମୁଁ ତାଙ୍କୁ କେବେ ଦେଖିନାହିଁ କିନ୍ତୁ ଖବରକାଗଜରୁ ତାଙ୍କର ଦେଶପ୍ରେମ ମୂଳକ ଉତ୍ତେଜନାପୂର୍ଣ୍ଣ ଭାଷଣ ପଢ଼ି ଜାଣିଛି। ନେତାଜୀ କହିଲେ ଯେ ଯଦୁମଣିବାବୁ ମୋର ଜଣେ ଅନ୍ତରଙ୍ଗ ବନ୍ଧୁ। ରାଜନୀତିରେ ସେ ମୋର ପୂର୍ଣ୍ଣ ସମର୍ଥକ। ଏହିପରି ମଙ୍ଗରାଜଙ୍କର ସେ ଉଚ୍ଚ ପ୍ରଶଂସା କରିଥିଲେ। ଯୁଦ୍ଧ ଶେଷରେ ମୁଁ ଯୁଦ୍ଧବନ୍ଦୀରୁ ମୁକ୍ତହୋଇ ସ୍ୱଦେଶକୁ ଆସି ବଙ୍ଗପ୍ରବାସୀ ଓଡ଼ିଆ ସଙ୍ଗଠନ କାର୍ଯ୍ୟରେ ନିରତ ରହିଥିଲି। ୧୯୪୭ ମସିହା ଡିସେମ୍ବର ମାସ ୨୭ ଓ ୨୮ ତାରିଖ ଦୁଇଦିନଧରି କମରହାଟୀରେ ବିରାଟ ପ୍ରବାସୀ ଓଡ଼ିଆ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା। ମୁଁ ସେଥିରେ ଉତ୍କଳବାହିନୀ ସ୍ୱେଚ୍ଛାସେବକମାନଙ୍କ ଜି.ଓ.ସି. ହୋଇ କାର୍ଯ୍ୟ ପରିଚାଳନା କରିଥିଲି। ୧୯୪୮ ମସିହା ଜାନୁଆରୀ ମାସ ୧୩ ତାରିଖ ଦିନ କମରହାଟୀ ନିକଟସ୍ଥ ଅଗରପଡ଼ା ହିନ୍ଦୀ-ଉର୍ଦ୍ଦୁ ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷକ ରୂପେ ନିଯୁକ୍ତି ପାଇବା ପରେ କମରହାଟୀ ଓଡ଼ିଆ ସମାଜର ସଭାପତି ରୂପେ ନିର୍ବାଚିତ ହୋଇଥିଲି। ୧୯୫୭ ମସିହାରେ ପ୍ରାକ୍ତନ୍ ଲୋକସଭା ସଦସ୍ୟ ଶ୍ରୀ ଶ୍ୟାମସୁନ୍ଦର ମହାପାତ୍ରଙ୍କର ଉଦ୍ୟମରେ କଲିକତାଠାରେ ବିଶାଳ ଉତ୍କଳ ସଂଗଠନ ନାମରେ ଏକ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା। ସେଥିରେ ଓଡ଼ିଶାର ସବୁଦଳର ବିଶିଷ୍ଟ ନେତାମାନଙ୍କ ସହିତ ମଙ୍ଗରାଜବାବୁ ମଧ୍ୟ ଯୋଗଦେଇ ସୁନ୍ଦର ଭାଷଣ ଦେଇଥିଲେ ଏବଂ ନେତାଜୀଙ୍କର ତ୍ୟାଗପୂତ ଜୀବନୀ ଉପରେ ଆଲୋକପାତ କରି ସମସ୍ତଙ୍କୁ ମୁଗ୍ଧ କରି ଦେଇଥିଲେ। ପରଦିନ କମରହାଟୀ ଓଡ଼ିଆ ସମାଜ ପକ୍ଷରୁ ଆମନ୍ତ୍ରଣ କରି ତାଙ୍କୁ ସମ୍ବର୍ଦ୍ଧନା ଜଣାଇଥିଲେ।

ନେତାଜୀଙ୍କର ସେ ଜଣେ ପ୍ରିୟସଙ୍ଗୀ ବୋଲି ପରିଚୟ ପାଇ ସ୍ଥାନୀୟ ବଙ୍ଗାଳୀ ଯୁବକସଂଘ ପକ୍ଷରୁ ମଧ୍ୟ ତାଙ୍କୁ ସମ୍ବର୍ଦ୍ଧନା କରାଯାଇଥିଲା। ସ୍ୱାଧୀନତା ସଂଗ୍ରାମରେ ତାଙ୍କର ଅବଦାନ ଅବିସ୍ମରଣୀୟ ହୋଇ ରହିବ।

ଆଇ.ଏନ୍.ଏ.
ଗଂଜାମ, ବ୍ରହ୍ମପୁର

# ଏକ ଅନୁକରଣୀୟ ପ୍ରତିଭା

## ବିଶ୍ୱମ୍ଭର ପରିଡ଼ା

ହିମାଳୟଠାରୁ କୁମାରୀକା ପର୍ଯ୍ୟନ୍ତ ବ୍ୟାପ୍ତ ପ୍ରାଚ୍ୟଜଗତର ପ୍ରାଚୀନତମ ସଂସ୍କୃତି ସମ୍ପନ୍ନ ଏକ ବିରାଟ ଭୂଖଣ୍ଡ ଆମର ପବିତ୍ର ଜନ୍ମଭୂମି ଭାରତବର୍ଷରେ ବହୁ ଜାତି, ସଂପ୍ରଦାୟ ଓ ଭାଷା ରହିଛି । କିନ୍ତୁ ସମଗ୍ର ମାନବସମାଜର କଲ୍ୟାଣ ସାଧନ ପାଇଁ ଯୁଗ ଯୁଗ ଧରି ଏହି ଦେଶର ଆଗମନ ଋଷି, ମୁନି, ସାଧକ ସଂକଳ୍ପବଦ୍ଧ ଭାବେ ସାଧନା କରି ମୁକ୍ତିର ମାର୍ଗ ପ୍ରଦର୍ଶନ କରି ଆସିଛନ୍ତି । ଯେତେବେଳେ ଏହି ଭୂଖଣ୍ଡର ଅଧିବାସୀମାନେ ଜାତି, ସଂପ୍ରଦାୟ, ଭାଷା ଓ ଅଂଚଳ ଧ୍ୱନିରେ ପ୍ରଭାବିତ ହୋଇ ବିଭେଦଗ୍ରସ୍ତ ହୋଇଛନ୍ତି, ସେତେବେଳେ ନିଜର ସ୍ୱାତନ୍ତ୍ର୍ୟକୁ ହରାଇ ବସିଛନ୍ତି । ଫଳରେ ସମଗ୍ର ମହାଚ୍ୟୁତିକୁ ପରାଧୀନତା ଅଭିଶାପ ଗର୍ଭରେ ଲୀନ ହେବାକୁ ପଡ଼ିଛି ।

ଇତିହାସର ଏହି କଳଙ୍କମୟ ଅଧ୍ୟାୟ ବିଗତ ପଞ୍ଚଦଶ ଶତାବ୍ଦୀରୁ ଆରମ୍ଭ ହୋଇ ବିଂଶ ଶତାବ୍ଦୀ ଅର୍ଦ୍ଧରେ ଶେଷ ହୋଇଛି । ଦୀର୍ଘ ୬ ଶହ ବର୍ଷ ବିଦେଶୀ ପଠାଣ, ମୋଗଲ, ପରିଶେଷରେ ଇଂରେଜମାନଙ୍କ ଶାସନାଧୀନରେ ରହି ଯେଉଁ ଲୋମହର୍ଷଣକାରୀ ଉତ୍ପୀଡ଼ନର ଶିକାର ହୋଇଛି- ବିଶ୍ୱ ଇତିହାସରେ ତାର ପଟାନ୍ତର ନାହିଁ । ବିଦେଶୀ ଶାସନ କବଳରୁ ମୁକ୍ତିଲାଭ ପାଇଁ ବାରମ୍ବାର ସଂଗ୍ରାମ ସଂଘଠିତ ହୋଇଥିଲେ ମଧ୍ୟ ଏହା ବିଦେଶୀ ଶାସନର ପ୍ରଚଣ୍ଡ ଆକ୍ରମଣରେ ସଫଳ ହୋଇପାରି ନଥିଲା । ପରିଶେଷରେ ଜାତିର ଜନକ ମହାତ୍ମାଜୀଙ୍କ ନେତୃତ୍ୱରେ କଂଗ୍ରେସ ସଂଗଠନ ମାଧ୍ୟମରେ ମାତ୍ର ୨୧ ବର୍ଷର ସଂଗ୍ରାମ ଫଳରେ ଏହା ଫଳପ୍ରଦ ହୋଇଛି । ଫଳରେ ବିଗତ ସନ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ଆମେ ସ୍ୱାଧୀନ ହୋଇଛେ ମାତ୍ର ୪୬ ବର୍ଷ ତଳେ ।

ଜାତିର ଜନକ ମହାତ୍ମା ଗାନ୍ଧୀଙ୍କ ଆହ୍ୱାନରେ ମୁକ୍ତି ସଂଗ୍ରାମରେ ଝାସ ଦେବାପାଇଁ ଯେଉଁମାନେ ଆଗେଇ ଆସିଥିଲେ-ସେମାନଙ୍କ ମଧ୍ୟରେ ସ୍ୱର୍ଗୀୟ ଯଦୁମଣି ମଙ୍ଗରାଜ ଥିଲେ ଅନ୍ୟତମ ।

ସ୍ୱର୍ଗୀୟ ମଙ୍ଗରାଜ କେନ୍ଦ୍ରାପଡ଼ା ଜିଲ୍ଲା ବନ୍ୟା ଓ ମରୁଡ଼ି କବଳିତ ପାଟକୁରା ଥାନା କରିଲୋପାଟଣା ଗ୍ରାମରେ ଗୋଟିଏ ମଧ୍ୟବିତ୍ତ କୃଷକ ପରିବାରରେ ଜନ୍ମଗ୍ରହଣ କରିଥିଲେ । ସନ ୧୯୩୦ ମସିହାରେ ଲବଣ ସତ୍ୟାଗ୍ରହରେ ଅଂଶଗ୍ରହଣ କରି ସାଢ଼େ ୩ ବର୍ଷ କାରାଦଣ୍ଡରେ ଦଣ୍ଡିତ ହୋଇ କଟକ ଜେଲ୍ ଓ ପରେ ହଜାରୀବାଗ ଜେଲ୍‌ରେ ଅବରୁଦ୍ଧ ହୋଇ ରହିଥିଲେ । ପରବର୍ତ୍ତୀ କାଳରେ ସେ ଓଡ଼ିଶାର ଜଣେ ଲବ୍ଧପ୍ରତିଷ୍ଠିତ ଜନନେତା ଭାବରେ ଖ୍ୟାତି ଅର୍ଜନ କରି ବହୁବାର କାରାଦଣ୍ଡରେ ଦଣ୍ଡିତ ହୋଇଛନ୍ତି । ସେ ସମଗ୍ର ରାଜ୍ୟର ଜଣେ ସୁବକ୍ତା ଭାବରେ ଜାତୀୟତା ଭାବ ସୃଷ୍ଟି କରିପାରିଥିଲେ । ବିନା ଅସ୍ତ୍ର ସାହାଯ୍ୟରେ ଚାଲିଥିବା ମୁକ୍ତି ଯୁଦ୍ଧର ସେ ଥିଲେ ଜଣେ ପ୍ରବୀଣ ମହାରଥୀ । ତାଙ୍କ ଉଦ୍‌ବୋଧନରେ ଶତ ଶତ ଶିକ୍ଷିତ ଯୁବକ ଅନୁପ୍ରାଣିତ ହୋଇ ମୁକ୍ତିଯୁଦ୍ଧର ଲେଲିହାନ ଅଗ୍ନିକୁଣ୍ଡକୁ ଡ଼େଇଁପଡୁଥିଲେ । କେବଳ ବକ୍ତୃତା ଛଡ଼ା ଲୋକଙ୍କୁ ପ୍ରଭାବିତ କରିବା ପାଇଁ ତାଙ୍କ ପାଖରେ କିଛି ନଥିଲା । ବକ୍ତୃତା ଶେଷରେ ସେ କହୁଥିଲେ- "ମୋ ନାଁ ଯଦୁ ଖଟୁଆ-ପାନ ନାହିଁ ଗୁଆ ନାହିଁ ଖାଲି

ବଟୁଆ ।"

ସନ ୧୯୩୭ ମସିହା ସ୍ୱାୟତ୍ତ ଶାସନ ପଦ୍ଧତିରେ ଆମ ରାଜ୍ୟରେ ସ୍ୱର୍ଗୀୟ ବିଶ୍ୱନାଥ ଦାସଙ୍କ ଅଧ୍ୟକ୍ଷତାରେ ଯେଉଁ କଂଗ୍ରେସ ମନ୍ତ୍ରିମଣ୍ଡଳ ପ୍ରତିଷ୍ଠିତ ହୋଇଥିଲା ସେଥିରେ ସେ ଜଣେ ପାର୍ଲାମେଣ୍ଟାରୀ ସେକ୍ରେଟାରୀ ଭାବରେ ମାତ୍ର ଅଢ଼େଇ ବର୍ଷ କାଳ କାର୍ଯ୍ୟ କରି ନିଜକୁ ଜଣେ ଦକ୍ଷ ପ୍ରଶାସକ ଭାବରେ ପ୍ରତିଷ୍ଠିତ କରିପାରିଥିଲେ । ସେ ଗତ ସନ ୧୯୬୪ ମସିହାରୁ ଇହଜଗତରୁ ବିଦାୟ ନେଇଥିଲେ ମଧ୍ୟ ଦୀର୍ଘ ୩୦ ବର୍ଷର ବ୍ୟବଧାନ ପରେ ସାଧାରଣସେବୀଙ୍କ ମନରେ ତାଙ୍କର ଓଜସ୍ୱିନୀ ବକ୍ତୃତା ଆଜି ମଧ୍ୟ ପ୍ରତିଧ୍ୱନିତ ହୋଇଯାଉଛି । ଏଁଭଳି ଏକ ଖ୍ୟାତିସଂପନ୍ନ ଜନନେତା ସ୍ୱର୍ଗୀୟ ମଙ୍ଗରାଜଙ୍କ ଜନ୍ମ ଶତବାର୍ଷିକ ପାଳନ ଅବକାଶରେ ତାଙ୍କର ଅମ୍ଳାନ ସ୍ମୃତି ଓ ସଂକଳ୍ପବଦ୍ଧ କୃତି ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଜଣାଉଛି ଏବଂ ଏହି ଉତ୍ସବର ଉଦ୍ୟୋକ୍ତାମାନଙ୍କୁ ଆନ୍ତରିକ ସାଧୁବାଦ ଜଣାଉଛି ।

– ଜୟହିନ୍ଦ୍ –

ମଧୁପାଟଣା ଛକ
କଟକ

• • • •

*ଶ୍ରଦ୍ଧା ଓ ଶୁଭେଚ୍ଛା ସହ :*

**ଓ୍ୱାଇନ୍ କର୍ଣ୍ଣର**

ଅଶୋକ ନଗର
ଭୁବନେଶ୍ୱର – ୯

# ବିପ୍ଳବୀ ନେତା ଯଦୁମଣି

ପ୍ରଫେସର ଡାକ୍ତର ବିକ୍ରମ ଦାସ

ଗ୍ରହୁଁ ଗ୍ରହୁଁ କେତେକାଳ ହୋଇଗଲାଣି। ସେତେବେଳେ ଯେଉଁ ନିଃସ୍ୱାର୍ଥପର ସଂଗ୍ରାମୀ ଜନନେତାମାନେ ଏ ସମାଜର ଅଗ୍ରଣୀ ଥାଇ ଜନତାକୁ ସ୍ୱାଧୀନତା ସମର ପାଇଁ ନିଜର କର୍ମ ଓ ବାଗ୍ମୀତା ଦ୍ୱାରା ଉଦ୍‌ବୁଦ୍ଧ କରୁଥିଲେ ସେମାନେ ଆଉ ନାହାନ୍ତି। ସେମାନଙ୍କ ନାମ ଅନେକେ ଭୁଲିଗଲେଣି। ସ୍ୱାଧୀନତାର ପ୍ରାକ୍‌କାଳରେ କଟକ ମେଡ଼ିକାଲ କଲେଜର, ଆମେ ଉଚ୍ଚଶ୍ରେଣୀ ଛାତ୍ରମାନେ ମାନସିକ ବ୍ୟାଧି ସଂପର୍କରେ ତାଲିମ ପାଇଁ ରାଞ୍ଚି ମାନସିକ ହସ୍‌ପିଟାଲ୍‌କୁ ଯାଇଥିଲୁ। ସେ ହସ୍‌ପିଟାଲରେ ଭାରତର ବହୁ ଅଞ୍ଚଳର ନାନା ଧରଣର ମାନସିକ ରୋଗୀମାନେ ଚିକିତ୍ସା ପାଇଁ ରହିଥାନ୍ତି। ରୋଗର ଉଗ୍ରତା ଅନୁସାରେ ରୋଗୀମାନଙ୍କୁ ଆବଦ୍ଧକରି ରଖାଯାଇଥାଏ। ଆମେ ସେଠାରେ ବିଭିନ୍ନ ବିଭାଗ ଦେଖି ବୁଲୁଥିବାବେଳେ ହଠାତ୍ ଗୋଟାଏ ଘେର ଭିତରୁ ଶୁଭିଲା- "ମୁଁ ଯଦୁମଣି ମଂଗରାଜ। ମୁଁ ଏ ଯୁଗର ହନୁମାନ। ସମୁଦ୍ର ଡେଇଁଯାଇ ବିଲାତ-ଲଙ୍କାରେ ନିଆଁ ଲଗାଇ ଲଂଡନ ସହର ମୁଁ ପୋଡି ପକାଇବି। ସେଠାରେ ବନ୍ଦିନୀଥିବା ଭାରତମାତାକୁ ମୁକୁଳାଇ ଆଣିବି। ମୋତେ ଛାଡିଦିଅ।"

ସେ ସବୁ ଶୁଣି ସେ ବାଡ ଆରପଟେ କିଛିସମୟ ପାଇଁ ଆମ୍ଭେମାନେ ଠିଆ ହୋଇଗଲୁ। ମସ୍ତିଷ୍କ ବିକୃତ ରୋଗୀଟା ନିଜକୁ ବାଗ୍ମୀ ଯଦୁ ମଙ୍ଗରାଜ ମନେକରି ଯଦୁମଣି ବାବୁଙ୍କ ବକ୍ତୃତାର ଅନୁକରଣରେ ବକ୍ତୃତା ଦେଇ ଚାଲିଥିଲା। ସମାଜର ସାଧାରଣ ଲୋକଙ୍କ ଉପରେ ଏପରିକି ମାନସିକ ଭାରସାମ୍ୟ ହରାଇଥିବା ରୋଗୀଙ୍କ ଉପରେ ବି ଯଦୁମଣି ବାବୁଙ୍କ ବକ୍ତୃତାର କି ପ୍ରଭାବ ପଡିଥିଲା ସେଥିରୁ ତାହା ସହଜରେ ଅନୁମେୟ।

ପିଲାଦିନୁ ସେ ଥିଲେ ଜଣେ ବିପ୍ଳବୀ ଦେଶକର୍ମୀ, ସଂଗଠକ ଓ ଛାତ୍ରନେତା। ମନ ନବୁଝିଲେ ସେ କୌଣସି କଥାକୁ ଗ୍ରହଣ କରୁନଥିଲେ। ତତ୍କାଳୀନ ଉତ୍କଳ ସମ୍ମିଳନୀର ମାନ୍ଧାତା ନେତାଙ୍କ କାର୍ଯ୍ୟର ବିରୋଧ କରିବାକୁ ସେ ପଶ୍ଚାତ୍‌ପଦ ହେଉନଥିଲେ। ଅସହଯୋଗ ସ୍ୱାଧୀନତା ଆନ୍ଦୋଳନର ବହୁ ପୂର୍ବରୁ ଥରେ କଟକରେ ଉତ୍କଳ ସମ୍ମିଳନୀର ଅଧିବେଶନ ବସିବାବେଳେ ସମ୍ମିଳନୀର ଉଦ୍ୟୋକ୍ତା ଉତ୍କଳ ଗୌରବ ମଧୁସୂଦନ ପଣ୍ଡିତ ଗୋପବନ୍ଧୁଙ୍କୁ ଲେଖିଥିଲେ "ଏଠାରେ ଛାତ୍ରନେତା ମଙ୍ଗରାଜ ମଙ୍ଗ ମୋଡୁଛି। କଟକ ପିଲାଏ ସ୍ୱେଚ୍ଛାସେବକ ବାହିନୀରେ ଯୋଗଦେବାରେ ସନ୍ଦେହ ଅଛି। ଶୀଘ୍ର ସତ୍ୟବାଦୀ ସ୍କୁଲ ପିଲାଙ୍କୁ ସେ କାର୍ଯ୍ୟପାଇଁ ପଠାଅ।"

ସତ୍ୟବାଦୀ ସ୍କୁଲପିଲା ଶିକ୍ଷକଙ୍କ ଗହଣରେ ଆସି ସେ ସମ୍ମିଳନୀର କାର୍ଯ୍ୟଭାର ଗ୍ରହଣ କଲେ। ମଂଗରାଜ କିନ୍ତୁ ଅଲଗା ନରହି ସେହି ଛାତ୍ରମାନଙ୍କ ସଂଗେ ମିଶିଗଲେ। ଉତ୍କଳ ଗୌରବ ମଧୁସୂଦନ ଇଂରେଜ ସରକାରଙ୍କ ବିରୋଧ ନକରି ଧୀର ମନ୍ଥର ଗତିରେ ବିଦେଶୀ ବର୍ଜନ ପ୍ରଗ୍ରର ଚଳାଇଥିଲେ। ତା ପରେ ପରେ ଅସହଯୋଗ ଆନ୍ଦୋଳନ ଆସିଲା ସେଥିରେ ମଂଗରାଜ ପୂର୍ଣ୍ଣପ୍ରାଣରେ ଯୋଗଦେଲେ। ସେ କେବଳ ବିଦେଶୀ ଦ୍ରବ୍ୟ ବର୍ଜନର ଧ୍ୱନିରେ ତାଙ୍କ ପ୍ରଗ୍ରରକୁ ସୀମିତ ନରଖି, ବିଦେଶୀ ଲୁଗାପୋଡ଼ା ବିଦେଶୀ ଦ୍ରବ୍ୟର ସଂପୂର୍ଣ୍ଣ ବର୍ଜନ ପାଇଁ ଲୁଣମରା, ସୂତାକଟା ପ୍ରଭୃତିରେ ଯୋଗଦେଇ ବହୁବାର କାରାବରଣ କଲେ।

ଇଂରେଜଙ୍କ ଶାସନ ଦପ୍ତରରେ ପଶି ପ୍ରାଦେଶିକ ଶାସନ ହାତରେ ନେଇ ବିପ୍ଳବକୁ ତୀବ୍ର କରିବା ପାଇଁ ଜାତୀୟ କଂଗ୍ରେସ ନିର୍ବାଚନରେ ଯୋଗଦେବାକୁ ସ୍ଥିର କଲେ। ଯଦୁମଣିବାବୁ ନିର୍ବାଚନ ଲଢ଼ି ଜିତିଲେ,

କଂଗ୍ରେସ ପ୍ରାଦେଶିକ ସରକାରଙ୍କ ପାର୍ଲାମେଣ୍ଟାରୀ ସେକ୍ରେଟାରୀ (ଉପମନ୍ତ୍ରୀ) ପଦ ଗ୍ରହଣ କଲେ । କିନ୍ତୁ କଂଗ୍ରେସର ଉଚ୍ଚ କର୍ମକର୍ତ୍ତାମାନେ ଉଗ୍ରନୀତି କୋହଳ କରି କ୍ଷମତାପିପାଶୀ ନୀତି ଧରିବାରୁ ସେ ନିଜପଦରୁ ଇସ୍ତଫାଦେଲେ ।

ନେତାଜୀ ସୁଭାଷ କଟକରେ ମଂଗରାଜଙ୍କର ସମସାମୟିକ ସହପାଠୀ ଥିଲେ । ଛାତ୍ରନେତା ଭାବରେ ଦୁହିଁଙ୍କ ମନୋଭାବ ଏକ ଧରଣର ଥିଲା । ସୁଭାଷ ଜାତୀୟ କଂଗ୍ରେସର ସଭାପତି ନିର୍ବାଚିତ ହୋଇ ମଧ୍ୟ ତୁଂଗନେତାମାନେ ତାଙ୍କ ବୈପ୍ଳବିକ ନୀତିକୁ ଗ୍ରହଣ ନକରିବାରୁ ସେ ପଦରୁ ଇସ୍ତଫାଦେଇ ଫରୱାର୍ଡ଼ ବ୍ଲକ ଗଢି ଭାରତସାରା ବୁଲି ନିଜ ବୈପ୍ଳବିକ ନୀତିର ପ୍ରଗ୍ରର ଚଳାଇଲେ । ଓଡିଶାରୁ ପଣ୍ଡିତ ନୀଳକଂଠ, ପଣ୍ଡିତ ଗୋଦାବରୀଶ, ଦିବାକର ପଟ୍ଟନାୟକ ପ୍ରଭୃତିଙ୍କ ସଂଗେ ଯଦୁମଣି ମଂଗରାଜ ସୁଭାଷଙ୍କ ନୀତିକୁ ସଂପୂର୍ଣ୍ଣ ସମର୍ଥନ କଲେ । ସେମାନଙ୍କ ନିମନ୍ତ୍ରଣରେ ନିଜର ମତ ପ୍ରଗ୍ରର ପାଇଁ ୧୯୩୯ ମଧ୍ୟଭାଗରେ ସୁଭାଷ ଓଡିଶାକୁ ଆସିଲେ । ସେମାନେ ସୁଭାଷଙ୍କୁ କଂଗ୍ରେସ ତୁଂଗନେତାଙ୍କ ବିରୋଧ ସତ୍ତ୍ୱେ ଉଚ୍ଛ୍ୱସିତ ସଂବର୍ଦ୍ଧନା ଜଣାଇଲେ । ଏପରିକି ତାଙ୍କୁ ହାତୀ ଉପରେ ବସାଇ କଟକ ପରିକ୍ରମା କରାଇଲେ । ନୀଳକଂଠ ଓ ମଂଗରାଜ ସୁଭାଷଙ୍କୁ ସାଥୀରେ ନେଇ ସୁଭାଷଙ୍କ ପୁରାତନ ସ୍କୁଲ ରେଭେନ୍‌ସା କଲେଜିଏଟ୍ ଓ ମଧୁ ବିଦ୍ୟାପୀଠ ପ୍ରଭୃତିରେ ଅଭ୍ୟର୍ଥିତ କରାଇ ପିଲାମାନଙ୍କୁ ସୁଭାଷଙ୍କ ବିପ୍ଳବ ବାର୍ତ୍ତା ଶୁଣାଇବାର ସୁଯୋଗ ଦିଆଇଲେ । କଟକର ସଭାସାରି ଟ୍ରେନ୍‌ରେ ସୁଭାଷ ପୁରୀ ଯିବାର ସ୍ଥିର ହେଲା । ସୁଭାଷଙ୍କ ସଂଗେ ତାଙ୍କ ଦଳର ସଂପାଦକ ଅସରଫୁଦ୍ଦିନ୍ ଚୌଧୁରୀ ଓ ଅନ୍ୟ ଜଣେ ସଦସ୍ୟ ରହିଥିଲେ । ଗୋଟିଏ ବଡ ରେଳଡବାରେ, ପଣ୍ଡିତ ନୀଳକଂଠ, ମଂଗରାଜ ଓ ଆମଭଳି ବହୁ ଛୋଟବଡ଼ କର୍ମୀ ସୁଭାଷଙ୍କ ସଂଗେ ପୁରୀ ଅଭିମୁଖେ ଯାତ୍ରା କଲୁ ।

ସେ ସମୟର ଗୋଟିଏ ଦୁଇଟି ଛୋଟ ଘଟଣା ମୋ ମନରେ ରେଖାପାତ କରିଥିଲା । ସୁଭାଷଙ୍କ ସଂଗେ ମଂଗରାଜଙ୍କର କିପରି ଅନ୍ତରଂଗତା ଥିଲା ଓ ମଂଗରାଜ କିପରି ଥଇଲି ଲୋକ ଥିଲେ ସେଥିରୁ ତାହା ଜଣା ପଡିବ । ବାଟସାକ ମଂଗରାଜ ପ୍ରଭୃତିଙ୍କ ଆଳାପ ଆମେ କାନଡେରି ଶୁଣୁଥିଲୁ । ସେ ମଜାମଜା କଥା କହି ସମସ୍ତଙ୍କୁ ହସାଇବାରେ ଲାଗିଥିଲେ । ଯାଉ ଯାଉ ପୁରୀ ନିକଟ ହୋଇଆସିଲା । ଅଳ୍ପଦୂରରୁ ପୁରୀ ବଡ଼ଦେଉଳର ଅଗ୍ରଭାଗ ଦେଖାଗଲା । ଆମେ ସମସ୍ତେ ଚିରାଚରିତ ରୀତିରେ ନୀଳଚକ୍ରକୁ ଦେଖିବାକ୍ଷଣି ମନେ ମନେ ଜଗନ୍ନାଥ ସ୍ତୋତ୍ର ଗାଇ ହାତଯୋଡି ପ୍ରଣାମ କଲୁ । ସେତେବେଳେ ସ୍ୱତଃପ୍ରବୃତ୍ତ ହୋଇ ସୁଭାଷଙ୍କ ଭକ୍ତ ଅସରଫୁଦ୍ଦିନ୍ ନିଜ ଧର୍ମକଥା ଭୁଲି ହାତଯୋଡି ନୀଳଚକ୍ରକୁ ପ୍ରଣାମ କରିପକାଇଲେ । ସଂଗେ ସଂଗେ ମଂଗରାଜ ତାଙ୍କ ହାତକୁ ଧରି କହିଲେ "ମିଆଁସାହେବ ଏ କ'ଣ ? ଆପଣ ମୁସଲମାନ ହୋଇ ଆମ ଦେବତାଙ୍କ ଉଦ୍ଦେଶ୍ୟରେ କିପରି ପ୍ରଣାମ କରୁଛନ୍ତି?" ତାହା ଦେଖି ସୁଭାଷ ମୁରୁକି ମୁରୁକି ହସୁଥାନ୍ତି । ମିଆଁସାହେବ ମଧ୍ୟ ହସି ହସି କହିଲେ" ଆମେ ସବୁ ଭାରତୀୟ ଏକା ସୂତାରେ ବନ୍ଧା ଆମେ ଏକାଠି ଯାଉଥାଇଁ । ଆପଣମାନେ ଆପଣଙ୍କ ଦେବତାଙ୍କଠାରୁ କଅଣ ପାଇବା ଉଦ୍ଦେଶ୍ୟରେ ସମସ୍ତେ ପ୍ରଣାମ କଲେ, ମୁଁ ସେ ପାଇବାରୁ ଏକାକୀ କାହିଁକି ବଞ୍ଚିତ ହେବି ଭାବି ଆପଣଙ୍କର ଅନୁସରଣ କରିବାକୁ ବାଧ୍ୟ ହୋଇଛି ।" ସେ କଥାରେ ବହୁତ ହସ ବୃଷ୍ଟି ହେଲା ।

ସନ୍ଧ୍ୟାରେ ସୁଭାଷଙ୍କ ଗହଣରେ ଜଗନ୍ନାଥ-ଦର୍ଶନ ପାଇଁ ଆମେ ସମସ୍ତେ ମନ୍ଦିରରେ ପଶିଲୁ । ମନ୍ଦିର ଭିତରେ ପଶୁପଶୁ, ଯଦୁମଣିବାବୁ ରହସ୍ୟକରି ସୁଭାଷଙ୍କୁ ପଗ୍ରରିଲେ "ହେ ସୁଭାଷବାବୁ, ହାତେ ଦେଉଳରେ କିପରି ବାରହାତ ଦିଅଁ ରହିଛନ୍ତି ସେକଥା ତୁମେ କହିପାରିବ ?" ସୁଭାଷବାବୁ ସର୍ବଦା ଚିନ୍ତାମଗ୍ନ ଥାଆନ୍ତି । ଯଦୁମଣିବାବୁଙ୍କ କଥାରେ ସେ ଟିକିଏ ଇତସ୍ତତଃ ହୋଇଗଲେ ସଂଗେ ସଂଗେ ପଣ୍ଡିତ ନୀଳକଂଠ ଅଳ୍ପ ହସି ଯଦୁମଣିବାବୁଙ୍କୁ କହିଲେ "ଯଦୁମଣି ତୋ ପ୍ରକୃତିଛଡା ପଣିଆ ଗଲାନାହିଁ ? କାହାକୁ କେତେବେଳେ କଅଣ ପଗ୍ରରୁଛ" ? ତା'ପରେ ସେହିଠାରେ ହାତେ ଉଚ୍ଚର କାନ୍ଥକୁରା ଦେଉଳଟିରେ ଥିବା ବାରଟି ହାତଯୁକ୍ତ ମୂର୍ତ୍ତିଟିକୁ ସୁଭାଷଙ୍କୁ ଦେଖାଇଦେଲେ ।

ମଂଗରାଜଙ୍କ ଖୁସିବାସିଆ ପ୍ରକୃତି ତାଙ୍କୁ ବହୁ ବିପଦ ଓ କଠିନ ସମସ୍ୟାମାନଙ୍କୁ ହସିକରି ଧୈର୍ଯ୍ୟର ସହିତ ସହ୍ୟ କରିବାକୁ ସମର୍ଥ କରି ରଖିଥିଲା । ତେଣୁ ରାଜନୈତିକ ଓ ସାଧାରଣ ଜୀବନ ଯୁଦ୍ଧର ତିକ୍ତତାରେ ତାଙ୍କୁ ଅବସାଦ ଘାରୁନଥିଲା ।

ସ୍ୱାର୍ଥନ୍ୱେଷୀଙ୍କର ଶରବ୍ୟ ହୋଇ ମଧ୍ୟ ସମସ୍ତ କୁତ୍ସାକୁ ଖାତିରି ନକରି ସେ ଗୁରୁ ମହାମନୀଷୀ ନୀଳକଂଠଙ୍କର ଛାଇପରି କାର୍ଯ୍ୟ କରି ଚାଲିଥିଲେ । ପଣ୍ଡିତ ନୀଳକଂଠ ଥିଲେ ତାଙ୍କର ପ୍ରଧାନ ରାଜନୈତିକ ଗୁରୁ ଓ ସମ୍ମାନପ୍ରଦ ବ୍ୟକ୍ତି ତଥାପି ତାଙ୍କ ସାମନାରେ ତାଙ୍କର ବ୍ୟକ୍ତିଗତ ଆଚାର ଓ ବ୍ୟବହାରରୁ ନିବୃତ୍ତ ହେଉନଥିଲେ । ନିଜର ବଦଅଭ୍ୟାସ ମଧ୍ୟ ଲୁଚାଇ ରଖୁନଥିଲେ । ଉତ୍କଳ ଗୁରୁ ନୀଳକଂଠଙ୍କ ଆଧ୍ୟାତ୍ମିକ ଚରିତ୍ରବତ୍ତାକୁ ସମ୍ମାନ ଦେଖାଇ ଅନ୍ୟମାନେ ତାଙ୍କ ନିକଟରେ ସଂକୋଚର ସହିତ ଚଳପ୍ରଚଳ ହେଉଥିଲେ । ବିଡ଼ି, ସିଗାରେଟ ଖାଉଥିବା ଲୋକମାନେ ନୀଳକଂଠଂକୁ ଦେଖିଲେ ସେସବୁ ଲୁଚାଇ ଫିଙ୍ଗିଦେଉଥିଲେ । କିଂତୁ ଯଦୁମଣିବାବୁ ତାଙ୍କ ବିଡ଼ିଖିଆ ଅଭ୍ୟାସକୁ ପଣ୍ଡିତ ନୀଳକଂଠଙ୍କଠାରୁ ଗୁପ୍ତ ରଖିନଥିଲେ । ତାଙ୍କୁ ଯେପରିକି ପଣ୍ଡିତଙ୍କ ସାମନାରେ ବିଡ଼ି ଖାଇବାର ଲାଇସେନ୍‌ସ ମିଳିଥିଲା । ଗୁରୁଙ୍କୁ କିଛି ଲୁଚାଯାଏ ନାହିଁ କହି ମଂଗରାଜ ଅବାଧରେ ବିଡ଼ି ଟାଣୁଥିଲେ ।

ପଣ୍ଡିତ ନୀଳକଂଠ ଓଡ଼ିଶା ବିଧାନସଭାର ବାଚସ୍ପତି ହେବାବେଳେ ଯଦୁମଣିବାବୁ ମଧ୍ୟ ଉପବାଚସ୍ପତି ପଦ ଅଳଙ୍କୃତ କରିଥିଲେ ।

ପଣ୍ଡିତ ନୀଳକଂଠଙ୍କ ଠାରୁ ବୟସରେ ବହୁ କନିଷ୍ଠ ହେଲେ ମଧ୍ୟ ଯଦୁମଣି ପ୍ରଥମେ ବ୍ୟାଧିଗ୍ରସ୍ତ ହୋଇ ଶଯ୍ୟାଶାୟୀ ହେଲେ ।

ଯଦୁମଣିବାବୁ କଟକ ବଡ ଡାକ୍ତରଖାନାର ନର୍ସିଂହୋମ୍‌ରେ ଥିବା ସମୟରେ ତାଙ୍କର ତିରୋଧାନର ଅଳ୍ପଦିନ ପୂର୍ବରୁ ମୁଁ ତାଙ୍କୁ ସାକ୍ଷାତ କରିବାକୁ ଯାଇଥିଲି । ମୋତେ ଦେଖିବା ମାତ୍ରେ ତାଙ୍କ ଆଖିରୁ ଦୁଇଧାର ଲୁହ ତଳକୁ ଗଡିପଡିଲା । ବାଷ୍ପାକୁଳ କଣ୍ଠରେ ମୋତେ କହିଲେ "ନୀଳକଂଠବାବୁଙ୍କୁ କହିବୁ ମୁଁ ଆଗେ ଆଗେ ଚାଲିଲି । ସେ ଆଉ ଯାହା କରିବା କଥା ସେ ସବୁ ସାରି ପଛରେ ଆସନ୍ତୁ" ।

ଯଦୁମଣିବାବୁ ଆମ ପରିବାରର ମୋର ଜଣେ ଗୁରୁଜନ ପରି ଥିଲେ । ତାଙ୍କ ସାନ୍ନିଧ୍ୟରେ ବହୁ ଘଟଣା ଘଟିଯାଇଛି । ସେ ସବୁ କାଗଜ କଲମରେ ରୂପଦେବା ମୋ ପକ୍ଷେ ସଂଭବପର ନୁହେଁ । ଏବେବି ତାଙ୍କର ସେ ସଂଗ୍ରାମୀ ରୂପ ମୋ ଆଖିଆଗରେ ନାଚିଯାଉଛି ।

ବର୍ତ୍ତମାନ ଦେଶର ଏ ଦୟନୀୟ ବିଶୃଙ୍ଖଳ ପରିସ୍ଥିତିରେ ତାଙ୍କ ଭଳି ଦେଶପ୍ରେମୀଙ୍କ ଆଦର୍ଶ ହିଁ ଯୁବ ସମାଜକୁ ଦିଗ୍‌ଦର୍ଶନ ଦେଇପାରିବ । ନୀଳକଂଠ ଗୋପବଂଧୁଙ୍କ ଉଦ୍ଦେଶ୍ୟରେ ଯେଉଁ କବିତା ଲେଖିଥିଲେ ତାହା ମଧ୍ୟ ଯଦୁମଣିଙ୍କ ପ୍ରତି ପ୍ରଯୁଜ୍ୟ ।

ସ୍ମୃତିରେ ପ୍ରଣତି ମିଶୁ-ଯୁବ ଭାବେ ଧରା ହସୁ ଆହେ 'ଦେଶପ୍ରେମୀ' ତୁମେ ଚିର ଅମର ।

ଜେଲ୍ ରୋଡ
କଟକ-୧

• • • •

# ସଂଗୀତପ୍ରିୟ ଯଦୁମଣି

ନବ କୁମାର ଦାସ

ପିଲାଦିନରୁ ଯଦୁମଣିବାବୁଙ୍କୁ ଜାଣିଥିଲି । ଆମେ ସ୍କୁଲରେ ପଢୁଥାଉ । ଅସହଯୋଗ ଆନ୍ଦୋଳନ ସେତେବେଳେ ଖୁବ୍ ଜୋର୍‌ରେ ଚାଲିଥାଏ । କାଠଯୋଡ଼ି ନଈବାଲିରେ ପ୍ରାୟ ପ୍ରତିଦିନ ସଂଧ୍ୟାରେ ସଭା ହୁଏ । ଆମେ ସବୁ ନଈବନ୍ଧ ଉପରେ ବସି ଶୁଣୁ । ସେତେବେଳେ ଶୁଣିଚି ଯଦୁମଣିବାବୁଙ୍କ ଜ୍ୱାଳାମୟୀ ବକ୍ତୃତା–ବ୍ରିଟିଶ ସରକାର ବିରୁଦ୍ଧରେ ଲୋକଙ୍କୁ ମତାଇ ଦେଉଥିଲେ । ପୁଣି ମୁଁ ଓକିଲାତି କଲାବେଳେ ସୀମା ଆନ୍ଦୋଳନ (S. R. C. Movement) ହେଲା, କଟକ ମ୍ୟୁନିସ୍‌ପାଲିଟ୍ ପଡ଼ିଆରେ ପ୍ରତିଦିନ ସଭା ହୁଏ । ଯଦୁମଣିବାବୁ ସେଠି ମଧ୍ୟ ସେହିଭଳି ବକ୍ତୃତା ଦେଉଥାନ୍ତି ।

ଅନେକେ ବକ୍ତୃତା ଦିଅନ୍ତି, କିନ୍ତୁ ଯଦୁମଣିବାବୁ ବକ୍ତୃତା ଦେଲାବେଳକୁ ସମସ୍ତେ ଆବାଳ ବୃଦ୍ଧ ବନିତା ମନଯୋଗ ଦେଇ ଶୁଣନ୍ତି–କାରଣ ତାଙ୍କ ବକ୍ତୃତାରେ ସବୁବେଳେ ସରସତା ଥାଏ, ସେ ବକ୍ତୃତା ଛଳରେ ହସେଇ ପାରନ୍ତି, ତଡ଼େଇ ପାରନ୍ତି, ମତେଇ ପାରନ୍ତି ଓ ରଗେଇ ମଧ୍ୟ ପାରନ୍ତି । କଂଗ୍ରେସର ବିଭିନ୍ନ ସଭାରେ ନିଶ୍ଚୟ ଯଦୁମଣିବାବୁ ଜଣେ ବକ୍ତା ଥିବେ ।

ସମବାୟ ଆନ୍ଦୋଳନରେ ସେ ଜଣେ ଅଗ୍ରଣୀ ଥିଲେ । ଉତ୍କଳମଣି ଗୋପବଂଧୁଙ୍କ ସାଙ୍ଗରେ ସେ କାମ କରିଛନ୍ତି । ସେତେବେଳେ ସମବାୟ ସୂତ୍ରର ପ୍ରଚାର ଆରମ୍ଭ ହୋଇଥିଲା । ମୋର ପିତା ରାମଚନ୍ଦ୍ର ଦାସ ମଧ୍ୟ ସମବାୟ ଆନ୍ଦୋଳନର ଅନ୍ୟତମ ଅଗ୍ରଣୀ ଥିଲେ, ମୋର ପିତା, ଯଦୁମଣିବାବୁ ଓ ଆଉ ଜଣେ କି ଦୁଇଜଣ ସବୁବେଳେ ସମବାୟ ସମ୍ମିଳନୀକୁ ଯାଆନ୍ତି । ସେତେବେଳେ ବିହାର ଓଡ଼ିଶା ଗୋଟିଏ ପ୍ରଦେଶ ଥିଲା । ବିଭିନ୍ନ ସ୍ଥାନରେ ଏହି କଂଗ୍ରେସର ବା ସମ୍ମିଳନୀର ବୈଠକ ହୁଏ । ମୁଁ ମଧ୍ୟ କେତେଥର ସେମାନଙ୍କ ସାଙ୍ଗରେ ଯାଇଛି । ଥରକର ଘଟଣା–ସେ ବର୍ଷ ସମ୍ମିଳନୀ ଭାଗଲପୁରରେ ହେଉଥାଏ । ମୋର ପିତା, ଯଦୁମଣିବାବୁ ଯାଇଥିଲେ, ମୁଁ ତାଙ୍କ ସାଂଗରେ ଯାଇଥିଲି । ଗୋଟିଏ ଧର୍ମଶାଳାରେ ପ୍ରତିନିଧିମାନଙ୍କ ପାଇଁ ରହିବାର ବ୍ୟବସ୍ଥା ହୋଇଥାଏ । ଆମେ ଗୋଟିଏ ବଂଖରାରେ ରହିଲୁ, ସକାଳୁ ଯଦୁମଣି କେତେକ ସିଝା ଅଣ୍ଡା ବାହାର କରି ଖାଇ ତାହାର ଖୋଳପାକୁ ବାରଣ୍ଡାରେ ପକାଇଦେଲେ, ମୋର ପିତା କହିଲେ– "ହଇ ହେ ଯଦୁମଣି, ଏଇଟା ପରା ଧର୍ମଶାଳା, ତୁମେ ଅଣ୍ଡା ଖୋଳପା ପକାଇଲ–ଦେଖିବେ ଯଦି ଆମକୁ ଏଠୁ ଏଇକ୍ଷଣି ବିଦାୟ କରିଦେବେ । ଯଦୁମଣିବାବୁ ହସି ହସି କହିଲେ– "ହେ, ହେ, ସତେ ତ ! ମୋର ଖିଆଲ ନାହିଁ ।" ସାଙ୍ଗେ ସାଙ୍ଗେ ଗୋଟେ ଚାକରକୁ ଡାକି ତାକୁ କିଛି ହାତଗୁଞ୍ଜା ଦେଇ ଅଣ୍ଡାଖୋଳଗୁଡ଼ିକୁ ବାହାରକୁ ପକାଇଦେଲେ ଆଉ କହିଲେ–ବ୍ରାହ୍ମଣ ମତେ ମାଡ଼ରୁ ବଞ୍ଚାଇଦେଲ । ଭାଗଲପୁରରୁ ଆମେ କଲିକତା ଆସିଲୁ, ସେଠି ଦିନେ ରହିବାକୁ ପଡ଼ିଲା । ଯଦୁମଣିବାବୁ କହିଲେ –ହେ ରାମବାବୁ ଏ ଟୋକାଟାକୁ ସାଂଗରେ ନେଇଆସିଚ କାହିଁ, କଲିକତା ଦେଖାଇଲ ? ମତେ କହିଲେ–ଚାଲ, ଆମର ଯିବା –ମୋର ବିଡ଼ି ଆଉ ବାଡ଼ି ଆଉ ତୁ ଏକା । ଟ୍ରାମ୍‌ରେ ବସେଇ ମତେ କଲିକତାରେ ଚାରିଆଡ଼େ ବୁଲେଇ ଆଣିଲେ । ତାଙ୍କର ବ୍ୟବହାର ବୁଢା ଓ ପିଲା ସମସ୍ତଙ୍କ ସାଙ୍ଗରେ ଏକା– ସମସ୍ତଙ୍କ ସାଂଗରେ ମିଶିଯାଆନ୍ତି । ହସେଇ, ରସେଇ, ମଜେଇ ଦିଅନ୍ତି ।

ଆଉ ଥରକର ଘଟଣା–ସେ ନିଜେ ମତେ କହିଛନ୍ତି । ବିଶ୍ୱନାଥ ଦାସ ଥାଆନ୍ତି ସେତେବେଳେ

ପ୍ରଧାନମନ୍ତ୍ରୀ, ଯଦୁମଣିବାବୁ ଥାଆନ୍ତି ତାଙ୍କର ପାର୍ଲିଆମେଣ୍ଟାରୀ ସେକ୍ରେଟାରୀ। ଉତ୍କଳମଣି ଗୋପବଂଧୁଙ୍କ ସାଂଗ ଓ ସ୍ୱାଧୀନତା ସଂଗ୍ରାମୀ ପୁରୀର ବିଶିଷ୍ଟ ଓକିଲ ଓ ଐତିହାସିକ ଜଗବଂଧୁ ସିଂହ ସେକ୍ରେଟେରିଏଟ୍‌କୁ ଆସି ଯଦୁମଣିବାବାଙ୍କୁ କହିଲେ- କିମିତି ତୁମ ପ୍ରଧାନମନ୍ତ୍ରୀଙ୍କ ସାଂଗରେ ଦେଖାହୁଅନ୍ତା- ଯଦୁମଣିବାବୁ କହିଲେ - ହେଃ, ମୁଁ କି ଗାଈର ଗୋବର ଯେ, ମତେ ଆପଣ ଖୋସାମତ କରୁଛନ୍ତି। ସିଧାସଳଖ ଯାଉନାହାନ୍ତି। ଯଦୁମଣିବାବୁଙ୍କ ଏ ରହସ୍ୟ କଥାର ଉତ୍ତରରେ ଜଗବଂଧୁବାବୁ କହିଲେ-କାହିଁକି, ତୁମେ ପରା ପାଟଗାଈର ଗୋବର-ସେ ଗୋବରର ମାହାତ୍ମ୍ୟ କେତେ ଆମେ କଅଣ ଜାଣିନାହୁଁ।

ଏହିପରି ଅନେକ ଛୋଟ ଛୋଟ କଥା ରହସ୍ୟମୟ। ଯଦୁମଣିବାବୁ ଭାରି ସଂଗୀତପ୍ରିୟ ଥିଲେ। ବୋଧହୁଏ କେନ୍ଦ୍ରାପଡ଼ାର ଲୋକ ହୋଇଥିବାରୁ ତାଙ୍କର ସେ ପ୍ରୀତି ଜାତ ହୋଇଥିଲା। କଟକର ସଂଗୀତ ଆସର ବା ସଂଗୀତ ସମ୍ମିଳନୀରେ ସେ ଆସି ସଂଗୀତ ଉପଭୋଗ କରନ୍ତି।

ସବୁବେଳେ ବିଶ୍ରାମ ବିହୀନ ଜୀବନ। ରକ୍ତଚାପ ରୋଗ ହେଲା-ସେଥିପ୍ରତି ଭ୍ରୂକ୍ଷେପ ନାହିଁ। ସେ କହନ୍ତି-ରୋଗ ତା' ବାଟରେ ଚାଲିବ-ମୁଁ ମୋ ବାଟରେ ଅଛି।

ତାଙ୍କର ଜୀବନ ଓ ସଂଗ୍ରାମ ଆଜିକାଲି ଯୁବକମାନଙ୍କ ପାଖରେ ଏକ ଆଦର୍ଶ।

ବିଶ୍ୱରପଟି
ଚେଲେଙ୍ଗା ବଜାର
କଟକ-୯

• • • •

*ଯଦି ସମସ୍ତେ ଗୁରୁ ହେବେ, ତେବେ ଶିଷ୍ୟ କିଏ ହେବ ? ଏଣୁ ଚାଲ ଆମେ ସମସ୍ତେ ଶିଷ୍ୟ ହେବା।*

-ବାପୁଜୀ

# ସ୍ୱାଭିମାନୀ ପୁରୁଷ

**ବିଚିତ୍ରାନନ୍ଦ କର**

ସ୍ୱର୍ଗତ ସମ୍ମାନୀୟ ଯଦୁମଣି ମଙ୍ଗରାଜ ଏଭଳି ଜଣେ ବ୍ୟକ୍ତି ଥିଲେ, ଯାହାଙ୍କ ସଂସ୍ପର୍ଶରେ ଯିଏ ଥରେ ଆସିଛି, ସେ ତାଙ୍କୁ ଭୁଲିବା ସହଜ ନୁହେଁ। ବାଳୁତ ଓ ବୟସ୍କ ଉଭୟଙ୍କର, ସେ ଥିଲେ ପ୍ରିୟ ଓ ଶ୍ରଦ୍ଧେୟ। ଜଣେ ଜଣେ ଅଛନ୍ତି, ସେ ସବୁ ଶ୍ରେଣୀର ଲୋକଂକ ସଂଗେ ମିଶିପାରନ୍ତି ନାହିଁ। ନିଜକୁ ଖାପଖୁଆଇ ପାରନ୍ତି ନାହିଁ। ପିଲାଙ୍କ ମେଳରେ ପିଲାଭଳି, ଯୁବକଙ୍କ ସଂଗେ ଯୁବକ ଭଳି, ବୁଢାଙ୍କ ପାଖରେ ବୁଢାଭଳି ହେବା ଗୋଟାଏ ସ୍ପେଶାଲ ଆର୍ଟ ବା କଳା। ସମସ୍ତଙ୍କ ଦ୍ୱାରା ଏହା ସମ୍ଭବ ଓ ସାଧିତ ହୋଇପାରେନା। କିନ୍ତୁ ସ୍ୱର୍ଗତ ମଙ୍ଗରାଜ ମହାଶୟ ଏ କଳାର ସାଧନା କରିଥିଲେ, ଯେପରି କେହି କେହି ସଂଗୀତ, ନୃତ୍ୟ, ଅଭିନୟ, ଅଂକନ ଇତ୍ୟାଦି କଳାର ସାଧନ କରି କଳାକାର ବା ଆର୍ଟିଷ୍ଟ ବୋଲାଇଥାନ୍ତି ଏଇଭଳି ଜଣେ 'ଆର୍ଟିଷ୍ଟ' ଥିଲେ ମଙ୍ଗରାଜ ମହାଶୟ।

କଳା ମୁଚ ମୁଚ ଚେହେରା, ଗଜରା ନିଶ, ଗମ୍ଭୀର ମୁଖମଣ୍ଡଳ, ଅପେକ୍ଷାକୃତ ବଡ ମୁଣ୍ଡ, ହାତରେ ବାଡି ଓ ଦୋକଛି ଭିଡା ଧୋତି ସାଙ୍ଗକୁ ସାମାନ୍ୟ ଲମ୍ବା ପଞ୍ଜାବୀ ପରିଧେୟ ଏଇଭଳି ମଣିଷଟିଏ ସେ ମୁହଁଟା ଦେଖିଲେ ଭୟ ଲାଗେ। ବାହାରଟା ଅତ୍ୟନ୍ତ ରୁକ୍ଷ ଓ କଠୋର ମନେହୁଏ। କିନ୍ତୁ ଅନ୍ତରଟା ଏକାବେଳେକେ କ୍ଲାନ୍ତ, ଠିକ୍ ନଡ଼ିଆ ଭଳି। ଭାରି ମଉଜିଆ ଓ ନବଜିଆ ଲୋକଟିଏ। ଥଟ୍ଟା, ପହଳି, ପରିହାସ ଓ ଚାହୁଲି, ଟାପରା, ବ୍ୟଙ୍ଗ, ବିଦ୍ରୂପ କରି କଥା କହିବାରେ ଓ ଲୋକଙ୍କ ମନକୁ ରସାଣିତ କରିବାରେ ସେ ଯେତିକି ଧୁରନ୍ଧର, ଅତ୍ୟନ୍ତ ଅଗ୍ନିମୟୀ ଭାଷଣ ଦେଇ ହଜାର ହଜାର ଲୋକଙ୍କୁ ଟଟାଇବାରେ ମତାଇବାରେ ମଧ୍ୟ ସେତିକି ପାରଙ୍ଗମ।

ଭାଷଣ ଦେବାରେ ସେ ଓସ୍ତାଦ୍। ତାଙ୍କ ଭାଷଣ ଯେଉଁମାନେ ଶୁଣିଛନ୍ତି, ସେମାନେ ମୋ ସହିତ ନିଶ୍ଚୟ ଏକମତ ହେବେ ଯେ, ତାଙ୍କ ଭାଷଣରେ ଶ୍ରୋତା ଯେପରି ହସି ହସି ଗଡିଯାନ୍ତି, ଠିକ୍ ସେଇଭଳି ତାତିଉଠି ମାଡିଯାନ୍ତି ଓ କାନ୍ଦି କାନ୍ଦି ଅଥୟ ହୁଅନ୍ତି। ଏକସଙ୍ଗେ ହସାଇ, ରସାଇ, କନ୍ଦାଇ, ଟଟାଇ, ମତାଇ ଭାଷଣ ଦେବା ବ୍ୟକ୍ତି ଖୁବ୍ ବିରଳ ନିଶ୍ଚୟ। ଅନେକଙ୍କ ମତରେ, ମଙ୍ଗରାଜ ମହାଶୟ ଥିଲେ; ଏ କ୍ଷେତ୍ରରେ ଓଡ଼ିଶାରେ ଅଦ୍ୱିତୀୟ। ତାଙ୍କର ରହସ୍ୟ ପାଇଁ ତାଙ୍କୁ ଅନେକେ ନୟାଗଡ଼ର ରସିକ କବି ଯଦୁମଣି (ମହାପାତ୍ର)ଙ୍କ ସଂଗେ ତୁଳିଥାନ୍ତି।

ସେ ଥିଲେ ଜଣେ ନିଷ୍ଠାପର ଓ ନିରଳସ କର୍ମୀ। ନେତା ହେବାକୁ ସେ କେବେ ଲାଳାୟିତ ହୋଇନାହାନ୍ତି। ସେ ବିଧାନସଭାର ସଭ୍ୟ ରୂପେ ନିର୍ବାଚିତ ହୋଇଛନ୍ତି, ଓଡ଼ିଶାର ବିଚ୍ଛିନ୍ନାଞ୍ଚଳ ସିଂହଭୂମି, ଧଳଭୂମି, ଷଡେଇକଳା-ଖରସୁଆଁ, ବସ୍ତର, ଫୁଲଝର ଇତ୍ୟାଦି ଅଞ୍ଚଳରେ ଦିନ ଦିନ ଧରି କାମ କରିଛନ୍ତି, ସଭାସମିତି କରି ଉଦ୍‌ବୋଧନ ଦେଇଛନ୍ତି, ସେଠା ଲୋକଙ୍କ ମନରେ ଜାଗରଣ ଅଣାଇଛନ୍ତି, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ପାଇଁ ଆନ୍ଦୋଳନରେ ସକ୍ରିୟ ଅଂଶ ନେଇଛନ୍ତି, ଦେଶର ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଇଛନ୍ତି ଏବଂ ଏଥିପାଇଁ ନିନ୍ଦା ଅପମାନ ମାଡଗାଳି ସହିଛନ୍ତି ଓ ଥରକୁଥର ଜେଲ୍ ଭୋଗିଛନ୍ତି, କେତେ ନିର୍ଯାତନା ଓ କଷଣ ସହିଛନ୍ତି, କେବେ କିନ୍ତୁ ନେତାର ଗର୍ବ ଅହଙ୍କାର କରିନାହାନ୍ତି।

ମନେପଡ଼େ ଓଡ଼ିଶାର ସେଇ ଐତିହାସିକ ସୀମା ଆନ୍ଦୋଳନ-୧୯୫୫ର ଶେଷାର୍ଦ୍ଧ। ଓଡ଼ିଆଭାଷୀ ବିଚ୍ଛିନ୍ନାଞ୍ଚଳ ବିଶେଷତଃ ଷଡେଇକଳା-ଖରସୁଆଁ

ଓଡ଼ିଶା ସହ ସାମିଲ କରିବା ପାଇଁ ଓଡ଼ିଶାବାସୀଙ୍କର ନ୍ୟାଯ୍ୟ ଦାବୀକୁ ତତ୍‌କାଳୀନ କେନ୍ଦ୍ରସରକାର ପ୍ରତ୍ୟାଖ୍ୟାନ କରିବାରୁ ଓଡ଼ିଶାର ଚ୍ଚରିଆଡ଼େ ଅସନ୍ତୋଷ, ପ୍ରତିବାଦ ଓ ବିକ୍ଷୋଭର ନିଆଁ ଜଳି ଉଠିଥିଲା । ପୁରପଲ୍ଲୀ କୋଣେ କୋଣେ ଆନ୍ଦୋଳନ । ଟ୍ରେନ୍ ବନ୍ଦ, ବସ ବନ୍ଦ, ଦୋକାନବଜାର, କଳକାରଖାନା ବନ୍ଦ ।

ଓଡ଼ିଶାରେ ହରତାଳ ଓ ଧର୍ମଘଟ । ସେତିକିବେଳେ ସ୍ୱର୍ଗତ ଯଦୁମଣି ମଙ୍ଗରାଜଙ୍କୁ ଯିଏ ଦେଖିଥିବ ଓ ଯିଏ ତାଙ୍କର ଭାଷଣ ଶୁଣିଥିବ, ସେ କେବେ ସେଇ ନିର୍ଭୀକ ପୁରୁଷକୁ ଭୁଲିପାରିବ ? ମଙ୍ଗରାଜ ଭାଷଣ ଦେବେ ବା ଦେଉଛନ୍ତି ବୋଲି ଜାଣିଲେ ଜନତାର ବିପୁଳ ସମାବେଶ । ପୁରପଲ୍ଲୀରେ ବୁଲି ଭାଷଣ ଦେଇ ଲୋକଙ୍କ ଭିତରେ ଅପୂର୍ବ ଉଦ୍ମାଦନା, ପ୍ରେରଣା ଓ ପ୍ରରୋଚନା ଆଣିପାରିଥିଲେ କେବଳ ଯଦୁମଣି ମଙ୍ଗରାଜ । ସେଇ ସମୟରେ ଦିନେ ଟାଉନ୍‌ହଲ୍ ପଡିଆରେ ସାଧାରଣ ସଭାରେ ସେ ବଜ୍ରଗମ୍ଭୀର ସ୍ୱରରେ ଘୋଷଣା କଲେ ଯେ ସେ ହେଉଛନ୍ତି ଓଡ଼ିଶାର ଗଭର୍ଣ୍ଣର (ସର୍ବମୟ ଶାସକ) । ତାଙ୍କରି ନିର୍ଦ୍ଦେଶ ହେବ ଗ୍ରହଣୀୟ । ଜନତା ସ୍ତମ୍ଭୀଭୂତ ହୋଇଯାଇଥିଲା ଏହି ବ୍ୟକ୍ତିଟିର ଏଭଳି ନିର୍ଭୀକ କଠୋର ବାଣୀରେ ।

ସେ ନେତାକର୍ତ୍ତା ନଥିଲେ ମଧ୍ୟ, ସେ ଥିଲେ ଏ ଜୀବନ୍ତ ଜାତି-ନୌକାର ଅନ୍ୟତମ ମଙ୍ଗଧାରୀ ମଙ୍ଗରାଜ । ସେ ଏ ଜାତିର ସ୍ମରଣୀୟ । କୌଣସି ଅନ୍ୟାୟ ଅବିଚାର ସହିତ ତାଙ୍କର ସାଲିସ୍ ନଥିଲା । ଓଡ଼ିଆ ଭାଷା ଓ ଜାତିର ଅବମାନନା ତାଙ୍କର ଅସହ୍ୟ ହେଉଥିଲା । ଯେହେତୁ ସେ ଥିଲେ ସ୍ୱାଭିମାନୀ ପୁରୁଷ । ତେଣୁ ନିଜ ପୌରୁଷର ପ୍ରମାଣ ଦେବାଲାଗି ସେ ଥିଲେ ବ୍ୟଗ୍ର, ବ୍ୟାକୁଳ । ଅନାଥ ଅହଙ୍କାର ଓ ଅସମାନ ବିରୁଦ୍ଧରେ ସେ ଲମ୍ଫ ଦେଉଥିଲେ, ସତେ ଯେପରି ଭୟଙ୍କର ବାଘଟାଏ !

**ସଂପାଦକ**
**ମାତୃଭୂମି, କଟକ**

• • • •

*ଈଶ୍ୱରଙ୍କ ନାମ ଅନେକ ଅଛି, କିନ୍ତୁ ଯଦି ଗୋଟିଏ ମାତ୍ର ଖୋଜ ତେବେ ସେ ହିଁ ସତ୍ୟ, ଏଣୁ ସତ୍ୟହିଁ ଈଶ୍ୱର ।*

**-ବାପୁଜୀ**

# ସ୍ୱର୍ଗୀୟ ମଙ୍ଗରାଜ

**ବଳରାମ ମହାନ୍ତି**

ଓଡ଼ିଶାର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ବାଗ୍ମୀ ଯଦୁମଣି ମଙ୍ଗରାଜଙ୍କ ଜନ୍ମ ଶତବାର୍ଷିକୀ ଆସନ୍ତା ଜାନୁଆରୀ ପହିଲାଦିନ ପାଳିତ ହେଉଥିବା ସ୍ୱାଧୀନତା ସଂଗ୍ରାମୀ ତଥା ଓଡିଶାବାସୀଙ୍କ ପକ୍ଷରେ ଅତ୍ୟନ୍ତ ଆନନ୍ଦର କଥା। ସ୍ୱାଧୀନତା ସଂଗ୍ରାମର ପ୍ରଥମ ପର୍ଯ୍ୟାୟରେ ଯେଉଁମାନେ ଅସୀମ ସାହସର ସହିତ ସଂଗ୍ରାମର ଅଗ୍ରଣୀ ହୋଇଥିଲେ ସେମାନଙ୍କ ଭିତରେ ଥିଲେ ସ୍ୱର୍ଗୀୟ ଯଦୁମଣି ମଙ୍ଗରାଜ। ସେତେବେଳେ କୌଣସି ଦୈନିକ ସଂବାଦପତ୍ର ନଥିଲା ତେଣୁ ସ୍ୱାଧୀନତା ସଂଗ୍ରାମର ବାର୍ତ୍ତା ଓଡ଼ିଶାର ସୁଦୂର ଗାଁଗହଳରେ ପହଞ୍ଚାଇବା କାର୍ଯ୍ୟ କରିଥିଲେ ବକ୍ତା ଓ କବିମାନେ। ଏ ଦିଗରେ ଦୁଇଜଣ ବକ୍ତା–ଯଦୁମଣି ମଙ୍ଗରାଜ ଓ ରାଜକୃଷ୍ଣ ବୋଷ ଏବଂ ଦୁଇଜଣ କବି–ବୀରକିଶୋର ଦାସ ଓ ବାଞ୍ଛାନିଧି ମହାନ୍ତିଙ୍କ ମହାନ ଅବଦାନ ଓଡ଼ିଶାର ସ୍ୱାଧୀନତା ସଂଗ୍ରାମର ଇତିହାସରେ ଅବିସ୍ମରଣୀୟ ହୋଇ ରହିବ। ସେତେବେଳର ବ୍ରିଟିଶ ଶାସନର ଅନ୍ୟାୟ ଓ ଅତ୍ୟାଚାର, ଜୁଲମ ଓ ଶୋଷଣ ପରିପ୍ରେକ୍ଷୀରେ ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ଯେଉଁ ଅହିଂସା ସ୍ୱାଧୀନତା ସଂଗ୍ରାମ ଆରମ୍ଭ ହୋଇଥିଲା ତାହା ସରସ ଓ ପ୍ରାଞ୍ଜଳ ଭାବରେ ସଂଗ୍ରାମୀ ଯଦୁମଣି ମଙ୍ଗରାଜ ବୁଝାଇ ଲୋକଙ୍କ ଭିତରେ ଅଭୂତପୂର୍ବ ଉତ୍ସାହ ଓ ଉନ୍ମାଦନା ସୃଷ୍ଟି କରିଥିଲେ ଏବଂ ଏହା ସ୍ୱାଧୀନତା ସଂଗ୍ରାମକୁ ଆଗେଇନେବା ପ୍ରଧାନ ସହାୟକ ହୋଇଥିଲା। କଂଗ୍ରେସ ସଭାମାନଙ୍କରେ ତାଙ୍କ ବକ୍ତୃତା ଶୁଣିବାପାଇଁ ହଜାର ହଜାର ଲୋକ ଏକାଠି ହୋଇଥାନ୍ତି ଓ ସେ ଲୋକଙ୍କୁ ମନ୍ତ୍ରମୁଗ୍ଧ କରି ରଖିବା ଭଳି କରିଥାଆନ୍ତି। ସେ ଲୋକଙ୍କୁ ହସାନ୍ତି ଓ କନ୍ଦାନ୍ତି। ସଭାର ଲୋକେ ଭାବୁଥାନ୍ତି ଯେମିତି ତାଙ୍କ ସଭା ନସରୁ। ସେ ବକ୍ତୃତା ଦେଇ ଗ୍ଲିଥାନ୍ତୁ। ତାଙ୍କ ଜ୍ୱାଳାମୟୀ ବକ୍ତୃତା ଯେ ଶୁଣିଛି, ହସିଛି ଓ କାନ୍ଦିଛି ସେ କେବେ ତାଙ୍କୁ ଭୁଲିପାରିବ ନାହିଁ। ସ୍ୱାଧୀନତା ସଂଗ୍ରାମୀ ଯଦୁମଣି ମଙ୍ଗରାଜ ଓ ରାଜକୃଷ୍ଣ ବୋଷଙ୍କ ବକ୍ତୃତା ଏବଂ ଜାତୀୟ କବି ବୀରକିଶୋର ଦାସ ଓ ବାଞ୍ଛାନିଧି ମହାନ୍ତିଙ୍କ ଆବେଗପୂର୍ଣ୍ଣ ସମର ସଂଗୀତ ଓଡ଼ିଶା ସ୍ୱାଧୀନତା ସଂଗ୍ରାମର ପରମ ସଂପଦ। ଦୁର୍ଭାଗ୍ୟବଶତଃ ଯଦୁମଣି ମଙ୍ଗରାଜଙ୍କ ଭଳି ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀଙ୍କ ଅବଦାନ ଇତିହାସରେ ଲିପିବଦ୍ଧ ହୋଇ ରହିପାରିଲା ନାହିଁ। ସ୍ୱାଧୀନତା ପରେ ସଂଗ୍ରାମର ଯେଉଁ ଇତିହାସ ଲିପିବଦ୍ଧ ହୋଇ ରହିଲା ତାହା ଯେପରି ଅସଂପୂର୍ଣ୍ଣ, ସେହିପରି ବିକୃତ। କଂଗ୍ରେସ ଶାସକଙ୍କ ଅମଳରେ ସ୍ୱାଧୀନତା ସଂଗ୍ରାମର ଯେଉଁ ଇତିହାସ ଲେଖାହେଲା ତାହା ସେତେବେଳର ପୋଲିସ୍ ରିପୋର୍ଟ ଉପରେ ମୁଖ୍ୟତଃ ଭିତ୍ତିକରି ଲେଖାଯାଇଛି। ତାହା ପ୍ରକୃତ ଇତିହାସ ନୁହେଁ। ସ୍ୱାଧୀନତା ସଂଗ୍ରାମର ପ୍ରକୃତ ଇତିହାସ ଲେଖିବାକୁ ହେବ ଏବଂ ସେଥିରେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ବାଗ୍ମୀ ଯଦୁମଣି ମଙ୍ଗରାଜଙ୍କୁ ଯଥାସ୍ଥାନ ଦେବାକୁ ହେବ। ଓଡ଼ିଶାର ସ୍ୱାଧୀନତା ସଂଗ୍ରାମୀ ତଥା ଓଡ଼ିଶାବାସୀ ତାଙ୍କୁ କଦାପି ଭୁଲିପାରିବେ ନାହିଁ। ତାଙ୍କୁ ଭୁଲିଗଲେ ଆମେ ସ୍ୱାଧୀନତା ସଂଗ୍ରାମକୁ ଭୁଲିଯିବୁ। ଏହା ଆମ ପକ୍ଷରେ ଅତ୍ୟନ୍ତ ଦୁର୍ଭାଗ୍ୟର ବିଷୟ ହେବ।

୧୧୩,–ବାପୁଜୀ ନଗର
ଭୁବନେଶ୍ୱର–୯

• • • •

# ପୁରୁଷସିଂହ ଯଦୁମଣି

**ଲକ୍ଷ୍ମଣ ମଲ୍ଲିକ**

ଓଡ଼ିଆ ଜାତି ଯେଉଁମାନଙ୍କୁ ନେଇ ଗର୍ବ କରେ, ଜନ ଉତ୍କଳର ନିର୍ମାଣରେ ଯେଉଁମାନଙ୍କ ଅବଦାନ ଅନିବାର୍ଯ୍ୟ ସେହିଭଳି ଜଣେ ବ୍ୟକ୍ତି ଯଦୁମଣି ମଂଗରାଜ। ଏବେ ବି ତାଙ୍କର ସେହି ସୁଗଠ ସୁନ୍ଦର ଚେହେରା ଆଖିଆଗରେ ନାଚିଯାଏ। ବିଧାନ ସଭାର ସେ ଉପବାଚସ୍ପତି ଥାନ୍ତି, ମୁଁ ଥାଏ ଓଡ଼ିଶା ବିଧାନସଭାର ଜଣେ ପୂର୍ବତନ କନିଷ୍ଠ ବିଧାୟକ। ତାଙ୍କର ସ୍ନେହ ଆଦର ଓ ରସରସିଆ କଥା ଶୁଣିଲେ ଯେ କେହି ଶତ୍ରୁ ମଧ ତାଙ୍କୁ ସମାଲୋଚନା କରିବାକୁ ଡ଼ରିଯିବେ।

ଓଡ଼ିଶାର ଏହି ସ୍ୱାଭିମାନୀ ପୁରୁଷ ଯଦୁମଣି ମଙ୍ଗରାଜ ଯେତେବେଳେ ସଭାରେ ଭାଷଣ ଦେଉଥିଲେ -ଶ୍ରୋତା ଅଭିଭୂତ ହୋଇପଡୁଥିଲେ। ବିଭିନ୍ନାଞ୍ଚଳରେ ସେ ଏଭଳି ଉଦ୍‌ବୋଧନ ଦେଉଥିଲେ ତାହାଦ୍ୱାରା ବିଭିନ୍ନାଞ୍ଚଳରେ ଥିବା ଓଡ଼ିଆ ଭାଷାଭାଷୀ ଭାଇଭଉଣୀମାନଙ୍କ ମଧରେ ସ୍ୱତଃ ଏକ ଉନ୍ମାଦନା ସୃଷ୍ଟି କରୁଥିଲା। ଓଡ଼ିଶାରେ ବାଗ୍ମୀତାରେ ଯେଉଁ ଦୁଇଜଣଙ୍କ ପାରଦର୍ଶିତା ଥିଲା କିଶୋରନଗର ଅଞ୍ଚଳର ବିଶିଷ୍ଟ ସଂଗ୍ରାମୀ ପୂର୍ବତନ ମନ୍ତ୍ରୀ ସ୍ୱର୍ଗତ ରାଜକୃଷ୍ଣ ବୋଷ ଓ ଅନ୍ୟଜଣକ ହେଲେ ପୁରୁଷ ସିଂହ ଯଦୁମଣି।

ସେବେଳର ଓ ଆଜିର ରାଜନୈତିକ ନେତାଙ୍କ ରାଜନୈତିକ ଚରିତ୍ରକୁ ପର୍ଯ୍ୟାଲୋଚନା କଲେ ଆକାଶ ପାତାଳ ତଫାତ। ସେତେବେଳେ ରାଜନୈତିକ କାର୍ଯ୍ୟ ଓ ସାମାଜିକ କାର୍ଯ୍ୟ ସଂପୂର୍ଣ୍ଣ ଅଲଗା ଥିଲା। ବର୍ତ୍ତମାନ ଯେପରି ପ୍ରତିଶୋଧ– ପରାୟଣ ରାଜନୀତି ଗ୍ରୁଲିଛି ସେତେବେଳେ ସେପରି ନଥିଲା। ସେତେବେଳେ ଆଦର୍ଶଗତ ମତଭେଦ ଥିଲା। କିନ୍ତୁ ଆଜି ତାହା ସଂପୂର୍ଣ୍ଣ ବିରଳ। ଯଦୁମଣିବାବୁଙ୍କ ଦେଶପ୍ରେମ ବିଶେଷ ଭାବରେ ଓଡ଼ିଆ ପ୍ରେମ ଆଜିର ସମାଜରେ ଦେଖିବାକୁ ମିଳେନା। ଖଣ୍ଡାୟତ (କ୍ଷେତ୍ରିୟ) ଜାତିର ଐତିହ୍ୟ ଓ ପରମ୍ପରାକୁ ସେ ନୂତନ ଯୁବପୀଢ଼ି ଭିତରେ ପୂରାଇବା ପାଇଁ ଅଦମ୍ୟ ଚେଷ୍ଟା କରିଥିଲେ।

ସୁପ୍ତ ଓଡ଼ିଆ ଜାତିକୁ ଜାଗ୍ରତ କରିବା ପାଇଁ ଜୀବନର ଅନ୍ତିମକ୍ଷଣ ପର୍ଯ୍ୟନ୍ତ ଅବିରତ ଚେଷ୍ଟା କରିଯାଇଛନ୍ତି ଯାହାକୁ ଆଜି ଆମେ ଇତିହାସର ବସ୍ତୁ ବୋଲି ଧରିନେଇଛୁ, କିନ୍ତୁ ଦୁଃଖର ବିଷୟ ଓଡ଼ିଆ ଜାତି ଯଦୁମଣି ମଙ୍ଗରାଜ ଭଳି ଜଣେ ବିଚକ୍ଷଣ ଆଦର୍ଶ ନୀତିବାନ୍ ରାଜନୀତିଜ୍ଞଙ୍କୁ ଠିକ୍‌ଭାବେ ମୂଲ୍ୟାୟନ କରିପାରିନାହିଁ।

୧୯୨୧ ଅସହଯୋଗ ଆନ୍ଦୋଳନରେ ଝାସଦେବା ଦିନଠାରୁ ଭାରତ ସ୍ୱାଧୀନ ହେବା ପର୍ଯ୍ୟନ୍ତ ସେ ରାଜନୀତିର ଅଗ୍ରଭାଗରେ ରହି ଆସିଥିଲେ ମଧ ତାଙ୍କର ସ୍ପଷ୍ଟବାଦୀତା ରାଜନୈତିକ ଉତ୍‌ଥାନରେ ଅନେକ ସମୟରେ ଅନ୍ତରାୟ ହୋଇଥିଲେ ମଧ ସେ ତାକୁ ଭ୍ରୁକ୍ଷେପ ନକରି କାର୍ଯ୍ୟ କରିଯାଇଛନ୍ତି।

ମୁଁ କଲେଜର ଛାତ୍ର ମୋର ସଠିକ ମନେନାହିଁ। ଗୋଟିଏ ସମୟରେ ମେଦିନପୁର ଓଡ଼ିଆବହୁଳ ଅଞ୍ଚଳ ବଙ୍ଗଳା ସହ ରହିଯାଇଥାଏ। ଓଡ଼ିଶା ସହ ମିଶାଇବା ପାଇଁ ଜନମତ ସୃଷ୍ଟି କରିବା ପାଇଁ କୌଣସି ନେତା ଆଗକୁ ବାହାରୁ ନଥାନ୍ତି। ନିର୍ଭୀକ ଓଡ଼ିଆ ବୀର ଯଦୁମଣି ଶତସିଂହର ହୁଂକାର ନେଇ ମେଦିନପୁରରେ ପ୍ରଗ୍ରର କାର୍ଯ୍ୟ ଆରମ୍ଭ କଲେ। ବଙ୍ଗାଳୀ ଭାଇମାନେ ଗୁଣ୍ଡା ପଠାଇ ସଭା ଭାଙ୍ଗିଲେ। ଆକ୍ରମଣ କରି ଯଦୁମଣି ବାବୁଙ୍କ ମୁଣ୍ଡ ଫଟାଇଦେଲେ। କିନ୍ତୁ ସେ କୋଉ ଡ଼ରିବାର ପିଲା ଯେ ଫେରିଆସିବେ ? ସମସ୍ତ ବାଧାବିଘ୍ନ ସତ୍ତ୍ୱେ ପ୍ରଗ୍ରର କାର୍ଯ୍ୟ ଅବ୍ୟାହତ ରଖିଥିଲେ।

ଏହିଭଳି ଏକ ଉତ୍ସର୍ଗୀକୃତ ତ୍ୟାଗୀବୀର ଓଡିଆଙ୍କର କର୍ମମୟ ଜୀବନର ଅବସାନ ହୋଇଗଲା ୧୯୬୪ ମସିହା ଏପ୍ରିଲ ୨ ତାରିଖରେ। ଓଡ଼ିଶାର ଏହି ଯଶସ୍ୱୀ ପୁରୁଷଙ୍କ ସ୍ମୃତିପାଇଁ ଓଡ଼ିଆଜାତି ସେଭଳି କୌଣସି ପଦକ୍ଷେପ ନେଇନାହିଁ ତାହାହିଁ ଦୁଃଖ ଏବଂ ପରିତାପର ବିଷୟ।

# ସେ କାଳର ସ୍ମୃତି

## କହ୍ନାଇ ଚରଣ ସ୍ୱାଇଁ

ସେ କାଳର ରାଜନୀତି ଓ ଏ କାଳର ରାଜନୀତି ମଧ୍ୟରେ ଆକାଶ ପାତାଳ ପ୍ରଭେଦ । ସେତେବେଳେ ରାଜନୀତିରେ ପ୍ରବେଶ କରୁଥିଲେ ସେହିମାନେ ଯେଉଁମାନଙ୍କର ଥିଲା ତ୍ୟାଗ, ନିଷ୍ଠା, ଦେଶପ୍ରୀତି ଓ ଲୋକସେବା ଏବଂ ସର୍ବୋପରି ନିଃସ୍ୱାର୍ଥପରତା । ଏସବୁ ଆଜିକାଲି ରାଜନୀତି କ୍ଷେତ୍ରରେ ବିରଳ । ସବୁକ୍ଷେତ୍ରରେ ମୂଲ୍ୟବୋଧର ଅବକ୍ଷୟ ଦେଖାଯାଉଛି । ରାଜନୀତି କ୍ଷେତ୍ରରେ ମଧ୍ୟ । ସ୍ୱାର୍ଥପରତା, କ୍ଷମତାଲିପ୍ସା, ଦୁର୍ନୀତି ଓ ଦୁରଭିସନ୍ଧି ଦ୍ୱାରା ଏ କାଳର ରାଜନୀତି କଳୁଷିତ ଓ ପ୍ରଦୂଷିତ । ରାଜନୀତି ବର୍ତ୍ତମାନ ଏକ ଲାଭଜନକ ବ୍ୟବସାୟରେ ପରିଣତ ହେବାକୁ ବସିଲାଣି । ବର୍ତ୍ତମାନ ରାଜନୈତିକ ପଟଭୂମିକୁ ଦୃଷ୍ଟିପାତ କଲେ ମନେପଡେ ସେ କାଳର କେତେକ ନିଷ୍ଠାପର ରାଜନୈତିକ କର୍ମୀଙ୍କ କଥା । ଏମାନଙ୍କ ମଧ୍ୟରେ ସ୍ୱର୍ଗତ ଯଦୁମଣି ମଙ୍ଗରାଜ ଥିଲେ ଅନ୍ୟତମ ।

କେନ୍ଦ୍ରାପଡା ଅଞ୍ଚଳର କରିଲୋପାଟଣାରେ ମଙ୍ଗରାଜଙ୍କର ଏକ ମଧ୍ୟବିତ୍ତ ଖଣ୍ଡାୟତ (କ୍ଷତ୍ରିୟ) ପରିବାରରେ ଜନ୍ମ । ତେଣୁ ତାଙ୍କର ରାଜନୈତିକ ଜୀବନର ପ୍ରାରମ୍ଭ ସେହି ଅଞ୍ଚଳରେ ଘଟିଥିଲେ ମଧ୍ୟ ତାହାର ପରିବ୍ୟାପ୍ତି ଓ ପରିସମାପ୍ତି ହୋଇଥିଲା ସାରା ରାଜ୍ୟରେ । ପ୍ରଥମାବସ୍ଥାରେ ସେ କେନ୍ଦ୍ରାପଡା ମ୍ୟୁନିସିପାଲିଟିର ସଭ୍ୟ ଓ ଲୋକାଲ୍ ବୋର୍ଡ ଚେୟାରମ୍ୟାନ୍ ଥାଇ କେନ୍ଦ୍ରାପଡା, ପଟାମୁଣ୍ଡାଇ, ଆଳି, କନିକା ପ୍ରଭୃତି ଅଞ୍ଚଳର ବହୁ ଉନ୍ନତି ସାଧନ କରିଥିଲେ । ଏହିସବୁ ଅଞ୍ଚଳରେ ସେ ଆବାଳ-ବୃଦ୍ଧ-ବନିତା ସମସ୍ତଙ୍କ ନିକଟରେ ପରିଚିତ ଓ ଆଦୃତ ଥିଲେ । କପଟତା କିମ୍ବା ବିଳାସବ୍ୟସନ ଯଦୁମଣିଙ୍କୁ ସ୍ପର୍ଶ କରିନଥିଲା । ସେ ଅତି ସରଳ ଓ ନିରାଡମ୍ବର ଜୀବନଯାପନ କରୁଥିଲେ । ସେ ଅତ୍ୟନ୍ତ ନିର୍ଭୀକ ଓ ସ୍ପଷ୍ଟବାଦୀ ଥିଲେ । ସେ ଲୋକମାନଙ୍କୁ ଆପଣାର ମନେକରୁଥିଲେ ଓ ସମସ୍ତେ ତାଙ୍କୁ ସ୍ନେହ ଓ ଆଦର କରୁଥିଲେ । ପଟାମୁଣ୍ଡାଇ ଅଞ୍ଚଳର ମୋ ଗ୍ରାମ କଷଣ ଅଣ୍ଡାରେ ସେ ଗ୍ରାମବାସୀଙ୍କ ମେଳରେ ରହି ବିଭିନ୍ନ ବିଷୟରେ ଆଲୋଚନା କରିବାର ମୁଁ ନିଜେ ପିଲାବେଳେ ଦେଖିଛି । ସେତେବେଳେ ମୁଁ ନିମ୍ନପ୍ରାଥମିକ ବିଦ୍ୟାଳୟରେ ପଢୁଥାଏ । ଗ୍ରାମକୁ ମଙ୍ଗରାଜ ଆସିଲେ ଲୋକେ ବାଜା ବଜାଇ କୀର୍ତ୍ତନ କରି ମହା ସମାରୋହରେ ତାଙ୍କୁ ଅଭ୍ୟର୍ଥନା କରିବାର ଦୃଶ୍ୟ ଆଜି ମଧ୍ୟ ମୋ ମାନସପଟରେ ବିରାଜିତ ।

ସେତେବେଳେ ପଟାମୁଣ୍ଡାଇ ଅଞ୍ଚଳରେ ଗୋଟିଏ ମାତ୍ର ମାଇନର ସ୍କୁଲ୍ (ମଧ୍ୟଇଂରାଜୀ ବିଦ୍ୟାଳୟ) ଥାଏ । ମୁଁ ଚତୁର୍ଥ ଶ୍ରେଣୀରେ ପଢୁଥାଏ । ସେତେବେଳର କେତେକ ରାଜନୈତିକ କର୍ମୀ ଓ ନେତା ମାଇନର ସ୍କୁଲ୍ ହଷ୍ଟେଲ୍‌କୁ ଆସି ପିଲାମାନଙ୍କୁ ମହାତ୍ମା ଗାନ୍ଧୀଙ୍କ ଅହିଂସାନୀତି, ଅସହଯୋଗ ଆନ୍ଦୋଳନ ଓ ସତ୍ୟାଗ୍ରହ ପ୍ରଭୃତି ବିଷୟରେ ବହୁ ଉପାଦେୟ କଥା ସବୁ କହୁଥିଲେ । ସେମାନଙ୍କ ମଧ୍ୟରେ ଥିଲେ ଯଦୁମଣି ମଙ୍ଗରାଜ ଜଣେ ପ୍ରଧାନ ବକ୍ତା । ଥରେ ଆମେ ଶୁଣିଲୁ ପଟାମୁଣ୍ଡାଇ ମେଲଣ ପଡିଆରେ ଗୋଟିଏ ସାଧାରଣ ସଭା ହେବ । ସେଥିରେ ଯଦୁମଣି ମଙ୍ଗରାଜ ଭାଷଣ ଦେବେ । ଆଖପାଖ ୧୦/୧୫ ଖଣ୍ଡ ଗ୍ରାମରୁ ଲୋକମାନଙ୍କର ଧାଡି ଛୁଟୁଥାଏ । ଆଜିକାଲି ସଭାସମିତିରେ ଯୋଗଦେବା ପାଇଁ ଲୋକମାନଙ୍କୁ ପଇସା ଖର୍ଚ୍ଚକରି ଖାଇବା ପିଇବାକୁ ଦେଇ ଗାଡିମଟରରେ ଅଣାଯାଉଛି । କିନ୍ତୁ ସେ କାଳର ସଭାସମିତିରେ ନେତାମାନଙ୍କ ଭାଷଣ ଶୁଣିବାକୁ

କେହି କାହାକୁ ବାଧ୍ୟ କରୁନଥିଲା। ଲୋକେ ସ୍ୱତଃପ୍ରବୃତ୍ତ ହୋଇ ଧାଉଁଥାନ୍ତି ସଭାସ୍ଥଳକୁ ମଙ୍ଗରାଜଙ୍କ ଭାଷଣ ଶୁଣିବାକୁ । ସେମାନଙ୍କ ମଧ୍ୟରେ ଅପୂର୍ବ ଉତ୍ସାହ ଓ ଉନ୍ମାଦନା।

ସଭା ଆରମ୍ଭ ହେଲା। ଲୋକ ଭରପୂର। ସଭାମଣ୍ଡପକୁ ଉଠିଲେ ମଙ୍ଗରାଜ। ଗ୍ରିଆଡେ କୋଳାହଳ ଓ କରତାଳି। ସେ କାଳର ସ୍ୱାଧୀନତା ଆନ୍ଦୋଳନ ବିଷୟରେ ସେ ଲୋକମାନଙ୍କୁ ଅତି ସରଳଭାଷାରେ ବୁଝାଇଲେ। ତାଙ୍କ ଭାଷଣ ଶୁଣି ଆମେମାନେ ଅବାକ୍। ଗାଉଁଲି ଭାଷାରେ ଢଗଢମାଳୀ ଓ ପ୍ରହେଳିକା ସହିତ ସେ ଦେଶର ବିଭିନ୍ନ ସମସ୍ୟା ବିଷୟରେ ଲୋକମାନଙ୍କୁ ଉଦ୍‌ବୋଧନ ଦେଉଥିଲେ। ନୀରବ ନିଶ୍ଚଳ ହୋଇ ଏକମନ୍ ଓ ଏକ ଧ୍ୟାନରେ ବିରାଟ ଜନତା ତାଙ୍କ ଭାଷଣ ଶୁଣୁଥାନ୍ତି। ମଧ୍ୟେ ମଧ୍ୟେ କରତାଳି। କି ଓଜସ୍ୱିନୀ ଭାଷଣ। କଥା ସଜେଇକରି କହି ଜନମନଙ୍କୁ ରଞ୍ଜେଇବାରେ ତାଙ୍କର ଅସାଧାରଣ ଦକ୍ଷତା ଥିଲା। ବାସ୍ତବିକ ସେ କାଳରେ ମଙ୍ଗରାଜ ଥିଲେ ଜଣେ ପ୍ରଖ୍ୟାତ ବାଗ୍ମୀ। ତାଙ୍କ ଭାଷଣ ହାସ୍ୟରସ ରସାଣିତ ହେଉଥିବାରୁ କେହି କେହି ତାଙ୍କୁ ପରିହାସ ଛଳରେ ଓଡିଆ କବି ଯଦୁମଣିଙ୍କ ସହିତ ତୁଳନା କରି ହାସ୍ୟରସିକ ଯଦୁମଣି ବୋଲି କହିବାର ମୁଁ ଶୁଣିଛି।

୧୯୩୧ରୁ ୧୯୩୪ ମସିହା। ମୁଁ ସେତେବେଳେ ରେଭେନ୍‌ସା କଲେଜିଏଟ୍ ସ୍କୁଲ୍‌ର ଛାତ୍ର। ସ୍କୁଲ୍‌ରେ ଥାନ୍ତି ବିଲାତ ଫେରନ୍ତା ସାହେବ ପ୍ରଧାନଶିକ୍ଷକ। ଇଂରେଜ ଶାସନ ବିରୋଧରେ କାହାର ପାଟି ଫିଟାଇବାର ଜୁ ନାହିଁ। ସେତେବେଳେ ମହାତ୍ମା ଗାନ୍ଧୀଙ୍କ ଆହ୍ୱାନରେ ଦେଶସାରା ସ୍ୱଦେଶୀ ଆନ୍ଦୋଳନ ଜୋର୍‌ସୋର୍‌ରେ ଗ୍ଲିଥାଏ। ଯୁବନେତା ମଙ୍ଗରାଜ ଓ ରାଜକୃଷ୍ଣ ବୋଷ ଏହି ଆନ୍ଦୋଳନର ନେତୃତ୍ୱ `ନେଇଥିଲେ ଓଡିଶାରେ। ସେମାନଙ୍କ ଭାଷଣରେ ପ୍ରଭାବିତ ହୋଇ ବହୁ ଛାତ୍ର ବିଦେଶୀ ଲୁଗା ପରିବର୍ତ୍ତେ ଖଦଡ ପିନ୍ଧିବାକୁ ଆରମ୍ଭ କରିଥିଲେ।

ରାଜନୈତିକ ଜୀବନରେ ଯଦୁମଣି କୌଣସି ପଦପଦବୀ ପାଇଁ ବିଶେଷ ଲାଳାୟିତ ନଥିଲେ। ଦେଶସେବା ଥିଲା ତାଙ୍କର ମୌଳିକ ନୀତି। କର୍ମମୟ ଜୀବନରେ ସେ ବହୁ କଷ୍ଟ ବରଣ କରିଛନ୍ତି ଓ ନାନା ପ୍ରତିଘାତ ଏବଂ ସଂଘର୍ଷ ମଧ୍ୟ ଦେଇ ଜୀବନ ବିତାଇଥିଲେ। ତଥାପି ସେ କୌଣସି କ୍ଷେତ୍ରରେ ଦବି ଯାଇନାହାନ୍ତି। ଆଭ୍ୟନ୍ତରୀଣ କନ୍ଦଳ ଓ ମତପାର୍ଥକ୍ୟ ଯୋଗୁଁ ସେ କିଛିକାଳ ପାଇଁ କଂଗ୍ରେସରୁ ଅଲଗା ହୋଇଯାଇଥିଲେ ମଧ୍ୟ ପରେ ପୁଣି ସେଥିରେ ଯୋଗଦେଇ ଓଡିଶା ବିଧାନସଭାକୁ ନିର୍ବାଚିତ ହୋଇଥିଲେ ଏବଂ ବିଧାନସଭାର ଉପବାଚସ୍ପତି ଆସନ ଅଳଂକୃତ କରିଥିଲେ। ତାଙ୍କପରି ନେତା ଆଜି ବିରଳ।

୨୬, ଗୌତମ ନଗର
ଭୁବନେଶ୍ୱର

• • • •

# ମୋ ବାପା

ବିଜୟକେତନ ମଂଗରାଜ

୧୯୩୨ ମସିହା ଅକ୍ଟୋବର ମାସର ୨୩ ତାରିଖ। ଗୋରା ଶାସନର ନିର୍ମମ ନିଗଡ଼ ମଧ୍ୟରେ ଘୁମନ୍ତ ଛୋଟିଆ କେନ୍ଦ୍ରାପଡା ସହର ହଠାତ୍ ପ୍ରାଣବନ୍ତ ହୋଇଉଠିଲା। ସମସ୍ତଙ୍କ ମୁହଁରେ ଗୋଟିଏ କଥା, ଯଦୁମଣି ମଂଗରାଜ, ଆଜି ହଜାରୀବାଗ ଜେଲରୁ ଖଲାସ ହେଲେ। ତା ପରଦିନ ଶହ ଶହ ଲୋକଙ୍କର ସାଇକେଲ୍ ଯାତ୍ରା "ଜଗତପୁର ଷ୍ଟେସନକୁ" ପ୍ରିୟ ନେତାଙ୍କର ଦର୍ଶନ ପାଇଁ। ସେତେବେଳେ କେନ୍ଦ୍ରାପଡ଼ାଠାରୁ ଜଗତପୁରକୁ ସିଧାସଳଖ ବସ୍ ନଥାଏ, ନିଶ୍ଚିନ୍ତକୋଇଲି ପର୍ଯ୍ୟନ୍ତ ବସ୍ ସେଠାରୁ କଚ୍ଚା ରାସ୍ତାରେ ପାଦରେ କିମ୍ବା ସାଇକେଲ୍‌ରେ ଯିବା କଥା। କଂଗ୍ରେସ କର୍ମୀଙ୍କଠାରୁ ସାଧାରଣ ଲୋକେ ସମସ୍ତେ ଜଗତପୁର ଆଡକୁ ମୁହାଁଇଛନ୍ତି, ତୁଣ୍ଡରେ ଗୋଟିଏ ଧ୍ୱନି,"ମହାତ୍ମା ଗାନ୍ଧୀ କି ଜୟ"

"ଯଦୁମଣି ମଂଗରାଜ ଜିନ୍ଦାବାଦ୍"

ମୋର ବୟସ ସେତେବେଳେ ମାତ୍ର ସାତବରଷ, ମୋ ଜନ୍ମ, ୧୯୨୫ ମସିହା ବେଳକୁ ବାପା କଟକ ଜେଲ୍‌ରେ ବନ୍ଦୀ। ଶ୍ୟାମସୁନ୍ଦରପୁରଠାରେ ମୁଁ ଜନ୍ମ ହେବାର ମାତ୍ର ଆଠମାସ ପରେ ଉପଯୁକ୍ତ ଚିକିତ୍ସା ଅଭାବରେ ମୋ ମା' ବାମାସୁନ୍ଦରୀ ପ୍ରାଣତ୍ୟାଗ କରିଥାନ୍ତି, ତେଣୁ ଆଈମା ଓ ମାଉସୀଙ୍କ କୋଳରେ ବଢୁଥାଏ। କେନ୍ଦ୍ରାପଡା ସହରରେ ଯେଉଁଠି ଅଜାଙ୍କର ଖଣ୍ଡିଏ ଛୋଟିଆ କଚେରି ଘର.ଥାଏ। ଅଜା ମୁକ୍ତାରୀ କରି ଅନେକ ଟଂକା ରୋଜଗାର କରିଥିଲେ ସେଥିପାଇଁ କେନ୍ଦ୍ରାପଡାରେ କଚେରି ଘରଟିଏ କରିଥାନ୍ତି। ୧୯୨୭ ମସିହାରେ ଆମ ଶ୍ୟାମସୁନ୍ଦରପୁର ଘର ପୋଡି ଦିଆଗଲା, ତେଣୁ ଆଈମା ମୋତେ ଓ ମାଉସୀଙ୍କୁ ନେଇ କେନ୍ଦ୍ରାପଡା ଚାଲିଆସିଲେ। କିପରି ଚଳୁଥିଲେ କିଏ ବା ଖାଇବାକୁ ଦେଉଥିଲା ସେ ସବୁ କଥା ମୋର ମନେନାହିଁ। କିନ୍ତୁ ବାପା ଜଣେ ଜେଲ୍ ଓିଡ଼ରଙ୍କୁ ନେହୁରା ହୋଇ ଖଣ୍ଡିଏ ମାତ୍ର ଚିଠି ପଠାଇଥିଲେ, ଆଈମା ପାଖକୁ। ସେଥିରେ ଲେଖିଥିଲେ–

"ବୋଉ ମୁଁ ଶୁଣିଲି ତୁ କାନ୍ଦୁଛୁ ମୋ ପାଇଁ। ତୁ ଯଦି କାନ୍ଦୁଥାଉ ତା'ହେଲେ ଦେଶର ଶହ ଶହ ମା'ଙ୍କର ଆଖିର ଲୁହ କିଏ ପୋଛିବ ? ଏ ଦେଶ ନିଶ୍ଚୟ ସ୍ୱାଧୀନ ହେବ। ମୁଁ ନିଶ୍ଚେ ଦିନେ ଫେରିବି। ବହୁତ ନେହୁରା ହୋଇ ଏ ଚିଠିଖଣ୍ଡିକ ଜଣେ ଜେଲ୍ ଓିଡର ଭାଇଙ୍କ ପଗଡି ମଧ୍ୟରେ ଲୁଚାଇ ପଠାଇଲି। ଇତି ତୋର' ଯଦୁ ।

ଏ ଚିଠିରେ ଥିଲା ସ୍ୱାଧୀନତାର ସ୍ୱପ୍ନ, ସ୍ୱାଧୀନ ହେବାର ଦୁର୍ବାର କାମନା, କିନ୍ତୁ ପଦେହେଲେ ନଥିଲା ମୋ ବୋଉ କିପରି ମଲା ଅବା, ତାଙ୍କ ପୁଅ ବିଜୟ କିପରି ଅଛି।

୨୪.୧୦.୧୯୩୨ ମସିହା ଅପରାହ୍ନରେ କେନ୍ଦ୍ରାପଡ଼ା କଚେରି ପଡିଆରେ ବିରାଟ ସଭା ବାପାଙ୍କୁ ସମ୍ବର୍ଦ୍ଧନା ଜଣାଇବା ପାଇଁ। ପୋଲିସ୍ ଘେର ଭାଙ୍ଗି ହଜାର ହଜାର ଲୋକ। ପ୍ରଥମଥର ପାଇଁ ସ୍ତ୍ରୀ ଲୋକମାନେ ସଭାରେ ଯୋଗ ଦେଇଥାନ୍ତି। ମୁଁ ବାପାଙ୍କୁ ଏଇଦିନ ପ୍ରଥମ ଦେଖିଲି ସେ କୋଳକୁ ନେଇ ଆଦରରେ କହିଲେ, ତୋ ନାମ ବିଜୟକେତନ ରଖିଛନ୍ତି ପଣ୍ଡିତ ଗୋପବଂଧୁ। ତୁ ଏ ଦେଶ ପାଇଁ ବିଜୟକେତନ ଉଡାଇବୁ।"

ବାପା ରାଜକନିକାରେ ପାଠପଢ଼ା ଆରମ୍ଭ କରିଥିଲେ, ତାଙ୍କ ବଡ଼ଭାଇ କ୍ଷେତ୍ରବାସୀ ମଂଗରାଜଙ୍କ ପାଖରେ ଏବଂ ସେଠାରୁ କଟକର ପ୍ୟାରୀମୋହନ ଏକାଡ଼େମୀରୁ ପରୀକ୍ଷା ଦେଇ ମାଟ୍ରିକ୍ ପାସ୍ କରିଥିଲେ,

ପାଟଣା ବିଶ୍ୱବିଦ୍ୟାଳୟରୁ । ୧୯୧୭ ମସିହାରେ ବାପା ରେଭେନ୍‌ସା କଲେଜରେ ଯୋଗଦାନ କଲେ । କଲେଜରେ ପାଦ ଦେବା ପରେ ପରେ ତାଙ୍କର ସାକ୍ଷାତ ହେଲା ପଣ୍ଡିତ ଗୋପବଂଧୁ ଦାସଙ୍କ ସହିତ । କଲେଜ ଜୀବନ ସହିତ କଂଗ୍ରେସର ସକ୍ରିୟ କର୍ମୀରୂପେ ବାପା କଂଗ୍ରେସରେ ଯୋଗଦାନ କଲେ ଏବଂ ୧୯୨୦ ମସିହାରେ ଉତ୍କଳମଣି ଗୋପବଂଧୁଙ୍କ ସଭାପତିତ୍ୱରେ ଓଡିଶାରେ ଉତ୍କଳ ପ୍ରଦେଶ କଂଗ୍ରେସ କମିଟି ଗଠିତ ହେଲା । ଏଥିରେ ଶ୍ରୀ ଭାଗିରଥୀ ମହାପାତ୍ର ସମ୍ପାଦକ ଓ ସଦସ୍ୟ ହେଲେ । ଆସିକାର ଶ୍ରୀ ନିରଞ୍ଜନ ପଟ୍ଟନାୟକ, ପଣ୍ଡିତ ଲିଙ୍ଗରାଜ ମିଶ୍ର, ଆଗ୍ରର୍ଯ୍ୟ ହରିହର ଦାଶ, ପଣ୍ଡିତ ନୀଳକଣ୍ଠ, ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ, ଶ୍ରୀ ନନ୍ଦକିଶୋର ଦାସ, ଶ୍ରୀ ଏକରାମ ରସୁଲ, ହାଜି ଶ୍ୟାମସୁଦ୍ଦିନ୍ ଖାଁ ଓ ଯଦୁମଣି ମଂଗରାଜ ।

୧୯୨୧ ମସିହା ମଇ ମାସ ୧୬ ତାରିଖରେ ଗାନ୍ଧିଜୀ ପ୍ରଥମଥର ପାଇଁ ଓଡ଼ିଶା ଆସିଲେ । କାଠଯୋଡ଼ି ନଈବାଲିରେ ସଭା ହେଲା । ରେଭେନ୍‌ସା କଲେଜରୁ ଯେପରି କେହି ଜଣେହେଲେ ଏ ସଭାରେ ଯୋଗ ନ ଦିଅନ୍ତୁ ଏହା ଥିଲା ସରକାରୀ ନିର୍ଦ୍ଦେଶ । ଯିଏ ଯେମିତି ଯୋଉ ବାଟେ ହେଲେ ଏ ସଭାରେ ଯୋଗଦେବାକୁ ଗଲେ, କିନ୍ତୁ ଯଦୁମଣି ମଂଗରାଜଙ୍କୁ ଜଗିବା ଦାୟିତ୍ୱ ଥିଲା ପ୍ରାଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଉପରେ । ରେଭେନ୍‌ସା ପୂର୍ବ ଛାତ୍ରାବାସର ଏକ କୋଠରିରେ ଗୁରୁ ଶିଷ୍ୟ ଉଭୟ ବସିରହିଲେ । ବେଳ ଗଡ଼ିଯାଉଛି ସଭା ଆରମ୍ଭ ହୋଇଯିବ । କିନ୍ତୁ ସାର୍ ଛାଡ଼ିବା ଲୋକ ନୁହଁନ୍ତି । ତେଣୁ ଗୋଟିଏ ଉପାୟ ବାପାଙ୍କ ମନକୁ ଆସିଲା । ସାର୍‌ଙ୍କର ରସଗୋଲା ଖାଇବାର ଏବଂ ଦୁର୍ବାରି ଲାଳସା ଥାଏ । ବାପା ପ୍ରସ୍ତାବ କଲେ, ସାର୍, ସମସ୍ତେ ତ ଗାନ୍ଧୀଙ୍କ ସଭାକୁ ଗଲେ । ଆମେ ଚାଲନ୍ତୁ ରସଗୋଲା ଖାଇଆସିବା କଲେଜ ସମ୍ମୁଖ ଆନନ୍ଦ ସାହୁଙ୍କ ଦୋକାନରୁ । ଅନେକ ପ୍ରବର୍ତ୍ତାଇଲା ପରେ ସାର ରାଜିହେଲେ ଓ ଦୁହେଁ ରସଗୋଲ ଖାଇବାକୁ ଗଲେ । ସେତେବେଳକୁ ଦିନ ୪ଟା । ସାର୍‌ଙ୍କ ହାତରେ ଚାରିଟି ବଡ଼ ରସଗୋଲା ଧରାଇ ବାପା ଚାଲିଲେ ନଈବାଲିକୁ ଗାନ୍ଧିଜୀଙ୍କ ଦର୍ଶନ ପାଇଁ । ସେହି ବର୍ଷ ନାଗପୁର କଂଗ୍ରେସ ଅଧିବେଶନରେ ମଧ୍ୟ ବାପା ଯୋଗଦାନ କଲେ । ଆର୍ତ୍ତବାବୁ ପରବର୍ତ୍ତୀ କାଳରେ ଲେଖିଲେ "ଯଦୁ ମତେ ଠକିଦେଲା", ସେଇ ଯେ ଗଲେ ଆଉ ଫେରିଲେ ନାହିଁ । କଲେଜ ପାଠପଢ଼ା ସେଇଠି ଶେଷ ହେଲା ।

ସ୍ୱାଧୀନତାର ଅନିର୍ବାଣ ଶିଖା ଜଳି ଉଠିଲା । ତା'ପରେ କେତେ ନିର୍ଯାତନା କେତେ ଅସହଣି କଷଣ ସେ ସବୁର ହିସାବ ନିକାଶ ଇତିହାସରେ ମାତ୍ର । ୧୯୩୬ ମସିହାରେ ବିହାରରୁ ଅଲଗା ହୋଇ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା । ୧୯୩୭ ମସିହା ଜୁଲାଇ ମାସରେ ପ୍ରଥମ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହେଲା । ଏଥିରେ ପ୍ରଧାନମନ୍ତ୍ରୀ ହେଲେ ଶ୍ରୀ ବିଶ୍ୱନାଥ ଦାସ ଏବଂ ମନ୍ତ୍ରୀଭାବେ ରହିଲେ ସର୍ବଶ୍ରୀ ରାଜକୃଷ୍ଣ ବୋଷ, ଅବଦୁସ୍ ଶୋଭାନ ଖାଁ, ବୋଧରାମ ଦୁବେ, ରାଧାକୃଷ୍ଣ ବିଶ୍ୱାସରାୟ ଓ ଯଦୁମଣି ମଂଗରାଜ । ୧୯୩୭ ମସିହା କେନ୍ଦ୍ରାପଡ଼ା ହାଇସ୍କୁଲରୁ ଆସି ମୁଁ ବାପାଙ୍କ ସହିତ ମଣିସାହୁ ଛକ ଏକ ଛୋଟିଆ ଘରେ ରହିଲି ଏବଂ ପ୍ୟାରୀମୋହନ ଏକାଡ଼େମୀରେ ୯ମ ଶ୍ରେଣୀରେ ଯୋଗଦାନ କଲି । ବାପା ପ୍ରାୟତଃ ରହୁନଥାନ୍ତି ତେଣୁ ବାପାଙ୍କୁ ଦେଖିବା ସାତସପନ । ମୋର ଚାଲି ଚାଲି ଯିବାରେ ଅସୁବିଧା ହେବାରୁ ବାପା ମତେ ଏକାଡ଼େମୀ ସ୍କୁଲ ହଷ୍ଟେଲରେ ନେଇ ରଖାଇଲେ । ଅଧିକାଂଶ ସମୟରେ ମଣିସାହୁ ଛକରୁ ବର୍ତ୍ତମାନର ସିଟି ହସ୍‌ପିଟାଲ ପର୍ଯ୍ୟନ୍ତ ବାପା ହାତଟଣା ରିକ୍‌ସାରେ ବସିଯାନ୍ତି ବେଳେ ବେଳେ ପାଦରେ ଚାଲି । ଏଇ ସିଟି ହସ୍‌ପିଟାଲ ହିଁ ପ୍ରଥମ ମନ୍ତ୍ରୀ ଦପ୍ତର ଓଡ଼ିଶାର । ହଷ୍ଟେଲରେ ଖର୍ଚ୍ଚ ମାସକୁ ଟ୬ଙ୍କା ଏହାଛଡ଼ା ଆଇମା ଲୁଗାଇ ମୋ ପାଖକୁ ଟ୧୦ଙ୍କା ପଠାଉଥାନ୍ତି ଜଳଖିଆ ଖାଇବାକୁ । ଥରେ ସେଇ ଟଂକାରୁ ଏକଟଂକା ବାରଣା ଦେଇ ମୁଁ ବିଲାତର ମାଞ୍ଚେଷ୍ଟାର ତିଆରି ତିନି ପିସ୍ତଲ ମାର୍କା ଧୋତିଟିଏ ଓ ଜାପାନରୁ ଆସୁଥିବା "ଫୁଜୀ" ସିଲ୍‌କ ପଞ୍ଜାବିଟିଏ କିଣି ପିନ୍ଧୁଥାଏ ସାଂଗସାଥୀ ମେଳରେ । ଅନେକ ଦିନ ପରେ ହଠାତ୍ ଦିନେ ବାପା ମତେ ଦେଖିବାକୁ ଆସିଲାବେଳକୁ ମୁଁ ସେଇ ଧୋତି ପଞ୍ଜାବି ପିନ୍ଧି ବସିଛି । ବାପା କାହା ଉପରେ ରାଗିବାର ମୁଁ ଦେଖିନି,

ବିଶେଷରେ ପରିବାର ଲୋକଙ୍କ ପ୍ରତି । ମୋ ପାଦରୁ ମୁଣ୍ଡଯାଏ ଅନାଇଲେ ଏବଂ ହଠାତ୍ ଗୋଟିଏ ଗୃପୁଡ଼ା ମାରିଲେ ସମସ୍ତଙ୍କ ସମ୍ମୁଖରେ । ମୋ ବଂଧୁମାନଙ୍କ ସହିତ ମିଶାଇ ମତେ କହିଲେ "ଗାନ୍ଧିଜୀଙ୍କ ବିଦେଶୀ ଜିନିଷ ବର୍ଜନ ଡାକ ତମ କାନରେ ପଡିଲାନି । ତମେ ସବୁ ବିଦେଶୀ ବସ୍ତ୍ର ଗୁଡ଼େଇ ହେଲ, କଥା କଥାକେ ଇଂରାଜୀ ବଖାଣିଲ । ଏଥିରେ ଦେଶ ସ୍ୱାଧୀନ ହେବ କିପରି ? ବିଦେଶୀ ବେପାରୀଙ୍କ କବଳରୁ ଏ ଦେଶ ମୁକୁଳିବ କିପରି ? ଜନ୍ମରୁ ମୃତ୍ୟୁଯାଏ ଆଣ୍ଠୁଲୁଗ୍ର ଖଦଡ ଧୋତି, ପଞ୍ଜାବି ସାଧାରଣ ଚପଲ ଓ ବେତବାଡିଟିଏ ଧରି ସେ ଜୀବନ୍ ବିତାଇଦେଲେ । ଆଜି ମୋ ପରିଣତ ବୟସରେ ଭାବୁଛି ମୋ ଜୀବନରେ ଏ ଉପଦେଶରୁ ଶିକ୍ଷାକରି କେତେ, ପାଳନ ବା କଲି କେତେ ?

ମୁଁ ୧୯୪୦ ମସିହାରେ ପାଟଣା ବିଶ୍ୱବିଦ୍ୟାଳୟରୁ ମାଟ୍ରିକ୍ ପାସ୍କଲି । ବାପା ଥା'ନ୍ତି ପାଟଣା ବିଶ୍ୱବିଦ୍ୟାଳୟ ସିଣ୍ଡିକେଟ ମେମ୍ବର ଏବଂ B.N.R. (ବର୍ତ୍ତମାନ) ଇଷ୍ଟର୍ଣ୍ଣ ରେଳବାଇର ପରାମର୍ଶଦାତା ବୋର୍ଡ ସଦସ୍ୟ । ପାଟନାଠାରେ ସିଣ୍ଡିକେଟ୍ ବୈଠକ ପରଦିନ ସଂଧ୍ୟାରେ କଲିକତାର ଗାର୍ଡନରିଚ୍ ରେଳବାଇ ସଦର ଦପ୍ତରଠାରେ ଥାଏ ପରାମର୍ଶଦାତା ବୋର୍ଡ ବୈଠକ । ଜଣେ ସମ୍ମାନିତ ସଦସ୍ୟଭାବେ ପ୍ରଥମଶ୍ରେଣୀରେ ନିଶୁଳ୍କ ଯାତ୍ରାର ସୁଯୋଗ ଥାଏ । ସିଣ୍ଡିକେଟ ମିଟିଂ ସାରି ବାପା ତରବରରେ ପାଟଣା ଷ୍ଟେସନଠାରେ କଲିକତାଗାମୀ ଟ୍ରେନର ଏକ ମିଲିଟାରୀ ଡ଼ବାରେ ଚଢ଼ିଗଲେ । ସେଥିରେ ଥିବା ଗୋରା ସୈନିକ ତାଙ୍କୁ ଗାଡିରୁ ଓହ୍ଲାଇ ଯିବାକୁ ଠେଲାପେଲା କଲେ । ପରବର୍ତ୍ତୀ ରହଣିରେ ସେ ଓହ୍ଲାଇଯିବେ କହି ତଳେ ବସିରହିଲେ । ପରବର୍ତ୍ତୀ ରହଣି ସ୍ଥାନରେ ସେମାନେ ଜଣେ ଭ୍ରାମ୍ୟମାଣ ଟିକଟ ପରୀକ୍ଷକଙ୍କୁ ଡାକି ବାପାଙ୍କୁ ଓହ୍ଲାଇଦେଲେ ଗାଡିରୁ । ଟି. ଟି. ମହାଶୟ ଖାଲି ଓହ୍ଲାଇ ଦେଲେନି ବିନା ଟିକଟ ଯାତ୍ରାପାଇଁ ଜୋରିମାନା କରି ରସିଦ ଧରାଇ ଛାଡି ଗୁଲିଗଲେ । ପରବର୍ତ୍ତୀ ଗାଡିକୁ ଅପେକ୍ଷାକରି ବସିଥିଲାବେଳେ ଷ୍ଟେସନ ମାଷ୍ଟର ଜାଣିଲେ ଯଦୁମଣି ମଂଗରାଜ ପରାମର୍ଶଦାତା ବୋର୍ଡ ସଦସ୍ୟ , ତେଣୁ ସେ ଫୋନ୍ କରିବାରୁ ଗାର୍ଡନରିଚ୍‌ରୁ ସେଲୁନଟିଏ ଆସି କଲିକତା ନେଇଗଲା' ବୋର୍ଡ ବୈଠକ ଆରମ୍ଭ ମାତ୍ରେ ବାପା ସେଇ ଟି. ଟି.ଙ୍କୁ ତାଙ୍କ କର୍ତ୍ତବ୍ୟନିଷ୍ଠା ପାଇଁ ତୁରନ୍ତ ପଦୋନ୍ନତିର ସୁପାରିଶ୍ କଲେ । ସେ ଭଦ୍ରଲୋକ ପରବର୍ତ୍ତୀ କାଳରେ ଉଚ୍ଚପଦବୀକୁ ଉଠିପାରିଥିଲେ ଓ ବାପାଙ୍କୁ ପ୍ରତିବର୍ଷ ଦଶହରାରେ ଖଦଡ଼ ଧୋତି ପଞ୍ଜାବିଟିଏ ପଠାଉଥିଲେ । ସହନଶୀଳତା ଓ ନ୍ୟାଯୋଚିତ ବିଗ୍ୱରଧାରା ମୋ ଜୀବନରେ ଯେ କି ପ୍ରଭାବ ପକାଇଛି ତାହା ଭାବିପାରୁନି ?

ଆଉ ଏମିତି ଏକ ଛୋଟ ଘଟଣା । ୧୯୪୨ ଅଗଷ୍ଟ ୧୫ ତାରିଖ ସ୍ୱାଧୀନତା ଆନ୍ଦୋଳନର ଅନ୍ତିମପର୍ବ । ଗାନ୍ଧିଜୀଙ୍କର "କର ବା ମର", ନିର୍ଦ୍ଦେଶ ଧ୍ୱନିତ ହେଲା ଆଉ ସେଇ ବଜ୍ର ନିର୍ଘୋଷରେ ଆମେ ସ୍ଥିର କଲୁ ଏଇ କଲେଜକୁ ପୋଡ଼ିଦେବାକୁ ହେବ; ଯାହା କେବଳ ଦେଶପ୍ରେମୀ ମଣିଷ ପରିବର୍ତ୍ତେ ବର୍ଷ ବର୍ଷ ଧରି ବାନ୍ତି କରୁଛି ଅମଣିଷ ଗୋଷ୍ଠୀ । ଯୋଜନା ହେଲା ପ୍ରଥମେ କଲେଜ ଅଫିସ ପୋଡ଼ିବାକୁ ହେବ । ୧୯୪୨ ଅଗଷ୍ଟ ୧୫ ତାରିଖ କଲେଜ ଫାଟକ ସମ୍ମୁଖରେ ପୁଲିସ୍ ଛାଉଣି । ସଭା ହେଲା । ଶ୍ରୀ ବୈଷ୍ଣବ ମହାନ୍ତି S. P. ଙ୍କର ପୁତ୍ର, ସାଥୀ ନୀଳମାଧବ ପ୍ରଥମେ ପତାକା ଉତ୍ତୋଳନ କଲା ଓ ଆମେମାନେ କଲେଜରେ ସ୍ପିରିଟ୍ ବୋତଲ ଢାଳି କଲେଜ ଅଫିସରେ ଅଗ୍ନିସଂଯୋଗ କଲୁ । ପୁଲିସ୍ ଫୌଜ କଲେଜ ଭିତରେ ପ୍ରବେଶ କଲେ ସେତେବେଳର ଆଇ. ଜି. ପୁଲିସ୍ ହାଭ୍‌ଗ୍ରେଭିସ୍‌ଙ୍କ ନେତୃତ୍ୱରେ, ଲୁହବୁହା ଗ୍ୟାସ ଓ ଗୁଳିର ଫାଙ୍କା ଆବାଜରେ ଛାତ୍ର ଓ ଜନତା ଛତ୍ରଭଂଗ ଦେଲେ । ସମଗ୍ର କଟକ ସହରରେ ବିଭିନ୍ନ ସ୍ଥାନରେ ଅଗ୍ନିକାଣ୍ଡ ହେଲା । କଲେଜ ଅଫିସଠାରୁ ମୋତେ ମିଃ ହାଭ୍‌ଗ୍ରେଭିସ୍ ଗୋଇଠାମାରି ଘୋଷାରି ନେଇ ପୁଲିସ୍ ଗାଡ଼ିରେ ବସାଇଲେ । ସେତେବେଳକୁ ବୁଟ୍ ମାଡ଼ରେ ମୋ ବାଁ ହାତ କହୁଣି ହାଡ଼ ଖସିଯାଇ ଫୁଲିଗଲା ଓ ଭୀଷଣ କଷ୍ଟ ହେଉଥିଲା । ମୋ ସାଥିରେ ସେଦିନ ସ୍ୱର୍ଗତ ଶୈଳେନ୍ ମହାପାତ୍ର, ଅମିତାଭ ମହାପାତ୍ର , ସୁରଜମଲ ସାହା ଓ ପରବର୍ତ୍ତୀ କାଳରେ କେନ୍ଦ୍ର ଆଇନ୍ ମନ୍ତ୍ରୀ ଶ୍ରୀ ବିବୁଧେନ୍ଦ୍ର ମିଶ୍ର ଆରେଷ୍ଟ ହେଲେ । ସଂଧ୍ୟାରେ ବାପା ମତେ ଲାଲବାଗ୍ ଥାନାରେ

ଦେଖାକଲେ। ବାଁ ହାତଟି ଫୁଲି ବ୍ୟଥା ହେଉଥିଏ। ତାକୁ ଲକ୍ଷ୍ୟ କରି ବାପା ପଗ୍ଭରିଲେ "କିରେ କଅଣ କଷ୍ଟ ହେଉଛି ? ଏଇ କଷ୍ଟର ନିଶ୍ଚେ ଫଳ ମିଳିବ ଦିନେ, ଏଇତ ଆରମ୍ଭ ମାତ୍ର। ଜାଲିଆନାୱାଲାବାଗ୍ ଅତ୍ୟାଗ୍ଭରଠୁ ଏହା କ'ଣ ବେଶୀ ?" ସେତିକି ମାତ୍ର କହି ବାପା ଫେରିଗଲେ। ମୁଁ ଜେଲଗଲି। ବାପା ଘରକୁ ଫେରିଗଲେ, ମୋ ପାଠପଢ଼ାର ଡ଼ୋରି ବନ୍ଧା ହେଲା। ମୁଁ ସେଇଦିନଠୁ ଶିଖିଲି ସ୍ୱାଧୀନତାର ମୂଲ୍ୟବୋଧ, ବାପା ଯାହା କହିଥିଲେ ତା'ର ପ୍ରତିଫଳନ ରୂପେ ମୁଁ ଆଜି ଜଣେ ଗର୍ବିତ ସ୍ୱାଧୀନତା ସଂଗ୍ରାମୀ।

୧୯୪୮ ମସିହାରେ ସ୍ୱାଧୀନତା ଆସିଲା। ବାପା ତାଙ୍କ ବାଟରେ ଓ ମୁଁ ମୋ ବାଟରେ। କାରାମୁକ୍ତ ହୋଇ ଖୋଜୁଥିଏ ଗ୍ଭକିରିଟିଏ ଆଉ ପାଞ୍ଚ ଜଣଙ୍କ ପରି। ଥରେ ବୋଉ ମୋର ବାପାଙ୍କୁ କହିଲା 'ପିଲାଟା ଏଣେତେଣେ ବୁଲୁଛି ଗ୍ଭକିରିଟିଏ ପାଇଁ' କୋଉ ମନ୍ତ୍ରୀଙ୍କୁ କହି ଖଣ୍ଡେ କାମ କରାଇ ଦେଉନ ? ବାପା ମୋତେ ଡ଼ାକିଲେ ଏବଂ ପଗ୍ଭରିଲେ "ତୁ ମୋ ବାପାଙ୍କ ନାମ ଜାଣିଛୁ–ତାଙ୍କ ନାମ ଭିକାରୀ ମଂଗରାଜ। ସେ ଦୁଖାନ କଂସାଏ ଧରି ବିଲକୁ ଯାଉଥିଲେ ହଳ କରିବା ପାଇଁ" ତାଙ୍କରି ପୁଅ ମୁଁ–ମୁଁ ଆଜି ମୋ ପାଇଁ ଓଡ଼ିଶାରେ ଜାଗା କରିନେଇଛି କିଂତୁ ତୁ ନିଜେ ତୋ ପାଇଁ ଯଦି କିଛି ନ କରିପାରୁ ତା'ହେଲେ ମୋ ଘରୁ ବାହାରି ଯା। ସତକୁସତ ଅଭିମାନରେ ମୁଁ ଘରଛାଡି ବୁଲିଲି ଓ ସେଇବର୍ଷ ଆକାଶବାଣୀରେ ଘୋଷକ ରୂପେ ଯୋଗଦାନ କରିବାର ସୁଯୋଗ ପାଇଲି ମାସକୁ ଷାଠିଏ ଟଙ୍କା ବେତନରେ। ବଡ଼ ଗ୍ଭକିରିଟିଏ ମିଳିଲାନାଇଁ ହେଲେ, ମୋର ଆତ୍ମସନ୍ତୋଷ ଯେ ମୁଁ ଯଦୁମଣି ମଂଗରାଜଙ୍କ ସନ୍ତାନ। ସ୍ୱାଧୀନ ଭାରତର କେତେ ଆଶା ନିରାଶା ମଧ୍ୟରେ ବାପା ସମୟ ବିତାଇଲେ। ସଂଗ୍ରାମରତ ଜଣେ ସ୍ୱାଧୀନଚେତା ମଣିଷ ଭାବରେ ବାପା ଜୀବନଯାତ୍ରାରେ ଆଗୁସାର ହେଲେ ଘାତ–ପ୍ରତିଘାତ ମଧ୍ୟରେ। ଏହି ସମୟଠାରୁ ଆଜି ପର୍ଯ୍ୟନ୍ତ, ଗୋଷ୍ଠୀବାଦ, ବ୍ୟକ୍ତିତ୍ୱବାଦ, ଭାରତର ରାଜନୈତିକ ପଟ୍ଟଭୂମିର ରୂପାୟିତ। ଏମିତି କନ୍ଦଳ ମଧ୍ୟରେ ସ୍ୱର୍ଗତ ଆଇନମନ୍ତ୍ରୀ ଦୀନବନ୍ଧୁ ସାହୁ ଓ ଯଦୁମଣି ମଂଗରାଜଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତାରେ କେନ୍ଦ୍ରାପଡା ଅଞ୍ଚଳର ଘରେ ଘରେ ଦୁଇ ନେତାଙ୍କ ପକ୍ଷଭୁକ୍ତ ପାରିବାରିକ କନ୍ଦଳ। ଦୁହେଁ ଦୁହିଁଙ୍କର ରାଜନୈତିକ ବନ୍ଧୁ ଓ ଶତ୍ରୁ ମଧ୍ୟ।

ଦୀନବଂଧୁବାବୁଙ୍କ କନ୍ୟାର ବିବାହ ଉତ୍ସବ ଅନୁଷ୍ଠିତ ହେଲା। ଏ ବିବାହ ଏକ ଆଡ଼ମ୍ବରପୂର୍ଣ୍ଣ ବିବାହ। ସହସ୍ରାଧିକ ଲୋକଙ୍କୁ ନିମନ୍ତ୍ରଣ କେବଳ ବାପାଙ୍କୁ ବାଦ୍‌ଦେଇ। ବିବାହ ଦିନ ବାପା କେନ୍ଦ୍ରାପଡାରେ ପହଞ୍ଚିଲେ ଓ ତିନିମୁହାଣିଠାରୁ ଜଣ ଜଣ କରି ସମସ୍ତଙ୍କୁ ନିମନ୍ତ୍ରଣ କରି ନିଜେ ଦୀନବଂଧୁଙ୍କ ଘରେ ପହଞ୍ଚିଲେ। ତାଙ୍କୁ ଦେଖି ଦୀନବଂଧୁବାବୁ ତାଙ୍କ ପରିବାରଙ୍କ ସହିତ ଦୋତାଲାକୁ ଗ୍ଭଲିଗଲେ। ସଂଧ୍ୟାହେଲା ରୋଷେଇଘର ତଦାରଖ କରୁ କରୁ ଲୋକେ ଆସିଲେ ପରେ ପଡିଲା, ବାପା ନିଜେ ସମସ୍ତଙ୍କ ଭୋଜନ ତଦାରଖ କରି ପ୍ରଥମ ଦଫାରେ ଖାଇଥିବା ଲୋକଙ୍କ ପତର କେଇଖଣ୍ଡ ଉଠାଇନେଲେ। କେନାଲରେ ମୁହଁ ହାତ ଧୋଇ ବାହାରି ପଡିଲେ ରାସ୍ତାକୁ। ଦୀନବଂଧୁବାବୁ ସପରିବାରେ ଆସି ବାଟ ଓଗାଳିଲେ ଓ ଖାଇ ଯିବାକୁ ଅଳିକଲେ। କହିଲେ "ଝିଅ ବିଦା ନ କରି ବାହାରିଲ କୁଆଡ଼େ"?

ବାପା କହିଲେ "ଦୀନବଂଧୁ ତମର ମୋର ରାଜନୈତିକ ମତଭେଦ" କିଂତୁ ଝିଅ ବିଦାବେଳେ ମୋତେ ତୁମେ କେମିତି ଭୁଲିଗଲ। ତା'ପରେ ଦୁଇବଂଧୁଙ୍କ ମଧ୍ୟରେ କୋଳାକୋଳି ଓ ଆଖିରେ ଲୁହଭରା, ଏ ଦୃଶ୍ୟ ମୁଁ ଦେଖିଛି।

ସମୟର ସ୍ରୋତରେ ବାପା, ଦୀନବଂଧୁଙ୍କୁ ନିର୍ବାଚନରେ ଅବୈଧ ନିୟମ ଲଂଘନ ପାଇଁ ସୁପ୍ରିମକୋର୍ଟରେ କେସ୍ କଲେ ଏବଂ ଦୀନବଂଧୁ ମନ୍ତ୍ରୀପଦ ହରାଇଲେ। ତା'ପରେ କ୍ୟାନ୍‌ସର ରୋଗରେ ଆକ୍ରାନ୍ତ ହୋଇ ବାପା କଟକ ମେଡ଼ିକାଲ ନର୍ସିଂହୋମ୍‌ରେ ପ୍ରାଣତ୍ୟାଗ କଲେ ୧୯୬୪ ମସିହା ଅପ୍ରେଲ ୩ ତାରିଖରେ। ସ୍ୱର୍ଗତ ବୀରେନ୍ ମିତ୍ର ମୁଖ୍ୟମନ୍ତ୍ରୀ ଥିଲେ ଓ ରାତିଅଧରେ ବାପାଙ୍କ ମୃତ୍ୟୁ ସଂବାଦ ମୁଁ କାନ୍ଦି କାନ୍ଦି ତାଙ୍କୁ ଫୋନ୍‌ରେ କହିଲି। ସେ ତତ୍‌କ୍ଷଣାତ୍ କହିଲେ "ବାପା ମଲେ କ'ଣ ହେଲା" ମୁଁ, "ବଡଭାଇ ବଞ୍ଚିଛି ପରା" ସେ ଆମ ସମସ୍ତଙ୍କ ବାପା, ତେଣୁ ତୁମର କ୍ରିୟାକର୍ମ କରିବାର ଅଧିକାର ନାହିଁ।

ସ୍ୱର୍ଗତ କିପାଂୟତ ଭାଇଙ୍କୁ ନେଇ ଦୀନବଂଧୁବାବୁ ଆସିଲେ । ବିରାଟ ପଟୁଆର ମଧ୍ୟରେ ନିଜେ କାନ୍ଧଦେଇ ଖାନନଗର ଶ୍ମଶାନରେ ଶବଦାହ କରାଇଲେ ମୁଖାଗ୍ନିଦେଇ । ଶେଷ ପର୍ଯ୍ୟନ୍ତ ରହି ସଂଧ୍ୟା ୬ ଟାରେ ତାଙ୍କ ପାଉଁଶ ବିସର୍ଜନ କରି କାଠଯୋଡ଼ି ନଦୀରେ ସ୍ନାନକରି ତାଙ୍କ ଘରକୁ ଫେରିଲେ ।

ରାଜନୈତିକ ଶତ୍ରୁତା ଆଖିଲୁହରେ ସବୁ ପୋଛି ହୋଇଗଲା ସହନଶୀଳତା ଓ ବଂଧୁପ୍ରେମର ଏ ନିଦର୍ଶନ ମୋର "ଅଭୁଲା ସ୍ମୃତି" ।

୧୯୧୮ ମସିହାରେ ବାପାଙ୍କର ବିବାହ ସଂପନ୍ନ ହୋଇଥିଲା କେନ୍ଦ୍ରାପଡ଼ା ଅଞ୍ଚଳର ଏକ ଧନୀ ପରିବାରରେ । ଅଜା ଆମର ଜଣେ ଶିକ୍ଷିତ ପିଲା ଖୋଜୁଥିଲେ ଯିଏ ହାକିମ ଗ୍ଧକିରି ପାଇବ । ଅଜାଙ୍କର ବହୁଦିନର ମେହେନତ୍ ଫଳରେ ସେ ତତ୍କାଳୀନ କଲେକ୍ଟର "କୋର୍ଲ" ସାହେବଙ୍କୁ ମନାଇ ରଖିଥିଲେ ଜ୍ୱାଇଁ ତାଙ୍କର ହାକିମପଦ ପାଇବ ବୋଲି । ହଠାତ୍ ତାଙ୍କର ମୋହ ଭଂଗ ହେଲା, ବାପା କଲେଜ ପଢ଼ା ନ ସରୁଣୁ କଂଗ୍ରେସରେ ସକ୍ରିୟ ସଦସ୍ୟରୂପେ ଯୋଗଦେଲେ । ଏ ଖବର ଗୁଇନ୍ଦା ସୂତ୍ରରେ ଖବର ପାଇ କଲେକ୍ଟର "କୋର୍ଲ" ସାହେବ ଚିଠି ଦେଲେ ବାପାଙ୍କ ଶ୍ୱଶୁର ରାଧାମୋହନଙ୍କୁ । ସେ ଲେଖିଥିଲେ ତୁମ ଜ୍ୱାଇଁ ଯଦୁମଣି ଯଦି କଂଗ୍ରେସ ଛାଡ଼ି ଆସେ, ତା'ହେଲେ ଗୋଟିଏ ଡେପୁଟି ପଦ ଦିଆଯିବ । ଚିଠି ଖଣ୍ଡିକ ଧରି ଅଜା ବାପାଙ୍କ ପାଖକୁ ଗଲେ ଓ ଗାନ୍ଧିଜୀଙ୍କ ଆନ୍ଦୋଳନରେ ନ ମିଶିବା ପାଇଁ ପ୍ରବର୍ତ୍ତାଇଲେ । ବାପା "କୋର୍ଲ" ସାହେବଙ୍କ ଚିଠି ପାଇବା ପରେ ସାହେବଙ୍କୁ ଚିଠି ଖଣ୍ଡେ ଲେଖିଲେ ।

Sir, I have read your letter. Carefully by abiding your offer I shall only be known by peons Sub-ordinates. I have taken vow to serve my countrymen without only power. Hence with utmost humitity I decline the offer. Thanking you. Jadumani Mangaraj.

ବାପା ସେଦିନ ଡେପୁଟି ହୋଇଥିଲେ । ଅନ୍ତତଃ ମଲାବେଳକୁ କୋଠାଟିଏ ଧନସମ୍ପତ୍ତି ଛାଡ଼ି ଯାଇଥାନ୍ତେ ଆମପାଇଁ । କିନ୍ତୁ ଛାଡିଗଲେ, ମଲାବେଳକୁ ୪ହଜାର ଟଂକା ଆମ ସମସ୍ତଙ୍କ ପାଇଁ । ଆଜି ଭାବୁଛି ଆମ ପରିବାରର ସଦସ୍ୟମାନଙ୍କର ଏ ଉପହାସିତ ଦାରିଦ୍ର୍ୟ ପାଇଁ ବାପା ଠିକ୍ କରିଥିଲେ ନା ଭୁଲ୍ କରିଥିଲେ ଏ ପ୍ରଶ୍ନର ଉତ୍ତର ଦେବ କିଏ ?

ଆଉ ଗୋଟିଏ ଛୋଟିଆ କଥା, ଯାହା ଆଈଙ୍କଠାରୁ ଶୁଣିଛି । ବିବାହ ପାଇଁ ବାପା ଉତ୍କଳମଣିଙ୍କଠାରୁ ମାତ୍ର ୧୫ ଦିନ ଛୁଟିନେଇ ଗାଁକୁ ଆସିଥିଲେ । ରହୁ ରହୁ ରହିଗଲେ ମାସାଧିକ । ସେତେବେଳକୁ କଣାସ ଅଞ୍ଚଳରେ ପ୍ରବଳ ବନ୍ୟା । ସରକାରୀ ସାହାଯ୍ୟର କାଣିକଉଡ଼ିଟିଏ · ମଧ୍ୟ ଦେଖାନଥିଲା । ସେତେବେଳେ ବାପାଙ୍କ ଅନୁପସ୍ଥିତି ଗୋପବଂଧୁଙ୍କୁ ବଡ଼ ବାଧିଲା । "ଖଣ୍ଡିଏ ଚିଠିଲେଖି ପଠାଇଥିଲେ ବାପାଙ୍କ ପାଖକୁ" ସ୍ନେହର ଯଦୁ, କଣାସ ଅଞ୍ଚଳରେ ପ୍ରବଳ ବନ୍ୟା । କୃପାସିନ୍ଧୁ (ପଣ୍ଡିତ କୃପାସିନ୍ଧୁ ହୋତା) କିଛି ଚୁଡ଼ା ଗୁଡ଼ଳ ଧରି କଣାସ ଅଞ୍ଚଳକୁ ଯାଇଛନ୍ତି । ତମର ଯଦି ଘର ସଂସାର ଯୋଡ଼ିବାକୁ ଏତେ ମନ ଥିଲା ଦେଶ ସେବାପାଇଁ ଆଗେଇ ଆସିଲ କାହିଁକି ? ଚିଠି ପାଇ ବସିଲା ଜାଗାରୁ ଉଠିଯିବ କଣାସ ଅଞ୍ଚଳକୁ । ସେଠାରେ କାମସାରି କୃପାସିନ୍ଧୁଙ୍କୁ ଧରି କଟକ ସ୍ୱରାଜ୍ୟ ଆଶ୍ରମକୁ ଫେରିଆସିବ । ଇତି, ତୁମର "ଗୋପଭାଇ" । ଚିଠି ପାଇବା ସଙ୍ଗେ ସଙ୍ଗେ ବାପା କୁଆଡ଼େ ଭାତଥାଳିରୁ ଉଠି ଗ୍ଧଲିଯାଇଥିଲେ । ଏହା ମୁଁ ଆଈଙ୍କଠାରୁ ଶୁଣିଥିଲି । ଦେଶସେବା ପାଇଁ ଏହି ଆକୁଳ ଆବେଦନ । ଜନଗଣର ଦୁଃଖଯାତନା ଲାଘବ ପାଇଁ ଏଇ ଏକନିଷ୍ଠା ସେବା ଆଜି ମଧ୍ୟ ରାତ୍ରୀର ଦୁଃସ୍ୱପ୍ନ ଭଳି । ଆଜିର ସେବା, ପ୍ରଗ୍ଧର ସର୍ବସ୍ୱ– ସେ ଦିନର ସେବା ଅମଳୀନ ମାନବିକତା । ଆଜି ଭାବୁଛି ବିବାହ କଲେ ମଧ୍ୟ ସେଦିନ ଦେଶସେବାରୁ ଛୁଟି ନଥିଲା ଆଜି କିନ୍ତୁ ବିପନ୍ନଙ୍କୁ ସାହାଯ୍ୟ କେବଳ ପଞ୍ଚତାରକା ହୋଟେଲ କିମ୍ବା ଶୀତତାପ ନିୟନ୍ତ୍ରଣ କୋଠରିରେ ସଭା କରିବା ଅବା ହେଲିକପ୍ଟରରୁ ଦୁଃଖଦୁର୍ଦ୍ଦଶା ଦୁରବୀନ୍ ଯୋଗେ ଦେଖି ଦଳୀୟ କର୍ମୀ ଓ ଶାସନକଳ ହାତରେ ବାଟମାରଣା ପାଇଁ ସୁଯୋଗ ଜୁଟାଇବା ନିମନ୍ତେ ଅମାପ ଟଂକା ।

ଅଲିଭା ସ୍ମୃତିର ଗନ୍ତାଘରେ ବାପାଙ୍କର ବହୁ

ହୃଦୟ ଦହନ ଆଉ ଉଦର ଜ୍ୱାଳାର ଆଲେଖ୍ୟ ଭରପୂର । ସେ ଲଢ଼ିଛନ୍ତି ଜୀବନ ସହିତ । ଲାଞ୍ଛନା ଅପମାନ, ରାଜନୈତିକ କୂଟଚକ୍ରାନ୍ତ ବିରୁଦ୍ଧରେ । ଯିଏ ତାଙ୍କୁ ପୋପାଡ଼ି ଦେଇଛନ୍ତି ଇତିହାସର ଅଥଳ ଗର୍ଭକୁ ତାଙ୍କୁ ସେ କୋଳାଇଛନ୍ତି । ବଂଧୁ ତାର ହାତ ବଢ଼ାଉଛନ୍ତି ହୃଦୟର ସମସ୍ତ ସ୍ନେହ ଶ୍ରଦ୍ଧା ଢ଼ାଳି । ନିଜକୁ ଓଡ଼ିଶାର ରାଜ୍ୟପାଳ ବୋଲି ଘୋଷଣା କରିଛନ୍ତି, ସୀମା ଆନ୍ଦୋଳନବେଳେ, ପୁଣି ମନଖୋଲା ହସ ହସି, ହସାଇଛନ୍ତି ଓଡ଼ିଶାର ଅଗଣିତ ମଣିଷଙ୍କୁ । କେଉଁଠି ସେବକ ରୂପେ କେଉଁଠି ବା ସେନାପତି ରୂପେ ପ୍ରଗତିର ରଥଚକ୍ରକୁ ଗଡ଼ାଇଛନ୍ତି । ଅତୀତର ସେଇସବୁ ଅନ୍ୟାୟ ଅବିଚାରର କାହାଣୀ ସହିତ ଏ ରାଜ୍ୟର ବହୁ ପ୍ରଥିତ ଯଶା ଗଣ ସଂପୃକ୍ତ । ତେଣୁ ଆଜି ସେ ସବୁ ଅବତାରଣା କରିବା ଉଚିତ ମଣୁନାହିଁ । ଏଇଠି କେବଳ ମୋର ଏକ ଲଜ୍ଜାକର ସ୍ମୃତିର ଅବତାରଣା କରିବି ବୋଲି ବହୁବାର ଭାବି ଭାବି ସ୍ଥିର କଲି । ହୁଏତ–ନ କହିଲେ ଠିକ୍ ସ୍ମୃତିଚାରଣ ହେବନି ।

ମୁଁ ଆକାଶବାଣୀ ଦିଲ୍ଲୀ କେନ୍ଦ୍ରରେ ସମ୍ବାଦ ପାଠକ ରୂପେ କାର୍ଯ୍ୟରତ ଥିଲାବେଳେ କ୍ଷେତ୍ର ପ୍ରଚାର ସଂସ୍ଥାର ଫିଲଡ୍ ଅଫିସର ଭାବେ, ପଞ୍ଚବାର୍ଷିକ ଯୋଜନା ପ୍ରଚାର ଅଫିସର ରୂପେ, କେନ୍ଦ୍ର ପବ୍ଲିକ କମିଶନ ଦ୍ୱାରା ଓଡ଼ିଶାରେ ନିଯୁକ୍ତ ହେଲି । ପଦ ବଢ଼ିଲା, ତା ସାଙ୍ଗକୁ ଦରମା ଏବଂ ଅନ୍ୟାନ୍ୟ ସୁଯୋଗ ଓ ସଦାଭ୍ରମଣ ପାଇଁ ଜିପ୍‌ଗାଡ଼ିଟିଏ । ଥରେ ଦିଲ୍ଲୀରୁ ମୋର ପଦସ୍ଥ କର୍ମକର୍ତ୍ତା ଆସିଥାନ୍ତି କଟକ । ବିଭିନ୍ନ ସମ୍ବର୍ଦ୍ଧନା ଓ ବଂଧୁମିଳନ ମଧ୍ୟରେ ମଦ୍ୟପାନ ଚାଲିଥିଲା । ମୁଁ ସେଥିରେ ଅଂଶ ଗ୍ରହଣ କରିଥିଲି । ସେ ସବୁ ସାରି ମୁଁ ଘରକୁ ଫେରିଲି । ଗାଡ଼ିରୁ ଓହ୍ଲାଇ ମୋ ରୁମ୍‌କୁ ଗଲାବେଳେ ବାପା ପାଖକୁ ଡାକିଲେ ଓ ଚେସ୍ ଖେଳିବାକୁ କହିଲେ । ସମୟ ପାଇଲେ ଚେସ୍ ଖେଳପ୍ରତି ବାପାଙ୍କର ଅଦମ୍ୟ ଆଗ୍ରହ । କିଂତୁ ସେ ଏ ଖେଳରେ କ୍ୱଚିତ ହାରନ୍ତି । ତେଣୁ ମୁଁ ହାରିବାକୁ ମାତ୍ର ୫ ମିନିଟ୍ ଲାଗିଲା । ମୁଁ ମୋ ରୁମ୍‌କୁ ଗଲି । ମଦିରାସିକ୍ତ ଥିବାରୁ ବାପାଙ୍କ ସହିତ ଚେସ୍ ଖେଳିଛି ବୋଲି ପରଦିନ ସକାଳେ ମୋର ମନେ ନଥିଲା । ବାପା ଆସିଲେ ମୋ ପାଖକୁ ଏବଂ ଅତି ସ୍ନେହରେ ପଚାରିଲେ "ଅଭ୍ୟାସଟି କେବେଠୁଁ କଲୁଣି"? ମୁଁ ନିରୁତ୍ତର, କହିଲେ ବାବୁରେ ମଦ ଖାଇଲେ କଲିଜା ପୋଡ଼ିଯାଏନା, ବା ଆତ୍ମା କଳୁଷିତ ବି ହୁଏନା କିମ୍ବା ଦୁନିଆ ଓଲଟି ପଡ଼େନା । ସେମିତିକା ଉପଦେଶ ମୁଁ ତତେ ଦେଉନି, କେବଳ ମନେ କରେଇ ଦେଉଛି ଯେ ଏହା ଏକ ମହାର୍ଘ୍ୟ ସଉକ ଯାହା ତୋ'ପକ୍ଷେ ବଜାଏ ରଖିବା ସମ୍ଭବ ହେବନି । ସାତ ରଜାର ଧନ ସରିଯିବ କିନ୍ତୁ ତୃଷା ମେଣ୍ଟିବନି । ମୋ କଥା ନିଜ ଉପରେ ପରଖ କରି ଦେଖିବୁ । ନିଜକୁ ପରଖିଲି ସେଦିନ ଏକ ଗଭୀର ଆତ୍ମଗ୍ଲାନିରେ ଏବଂ ତାହା ଚିରଦିନ ପାଇଁ ଜଳାଞ୍ଜଳି ଦେଇଦେଲି ।

"ପ୍ରାପ୍ତେଷୁ ଷୋଡ଼ଶ ବର୍ଷେ ପୁତ୍ର ମିତ୍ର ବଦାଚରେତ" ବାପା ନିଜ ଜୀବନରେ ତାହା ହିଁ ପ୍ରତିଭାତ କରିଗଲେ ।

୧୯୬୪ ମସିହା ଅପ୍ରେଲ ୨ ତାରିଖରେ ବାପା ଶେଷନିଶ୍ୱାସ ତ୍ୟାଗ କଲେ; କଟକ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ ହାସ୍‌ପାତାଳରେ, କ୍ୟାନସର୍‌ରେ ପୀଡ଼ିତ ହୋଇ ଶେଷନିଶ୍ୱାସ ତ୍ୟାଗ ପୂର୍ବରୁ ସେ ମୋ ହାତଧରି ପଦେ କଥା କହିଗଲେ । "Keep The Flag Flying My Son"

ଢାଆଁଳା
ଜିଲ୍ଲା– ଖୋର୍ଦ୍ଧା

• • •

# ବାଗ୍ମୀ ଯଦୁମଣି

ଚିନ୍ତାମଣି ପାଣିଗ୍ରାହୀ

୧୯୩୮ ମସିହାରେ ରେଭେନ୍ସା କଲେଜିଏଟ୍‌ର ଛାତ୍ରଥିଲି। ଇତିମଧ୍ୟରେ ୫୫ ବର୍ଷ ଅତିବାହିତ ହୋଇଗଲାଣି। କିଂତୁ ସ୍ୱର୍ଗୀୟ ଯଦୁମଣି ମଙ୍ଗରାଜଙ୍କ କଟକ ଟାଉନ୍‌ହଲ୍‌ରେ ଜ୍ୱାଳାମୟୀ ବକ୍ତୃତା ମୋ ସ୍ମୃତିପଟରେ ଅଭୁଲା ରହିଛି। ଯେତେବେଳେ ପ୍ରଗ୍ୱର ହୁଏ ଯେ ଯଦୁମଣି ମଙ୍ଗରାଜ ବକ୍ତୃତା ଦେବେ ସେତେବେଳେ ତାଙ୍କର ବକ୍ତୃତା ଶୁଣିବା ପାଇଁ ଆମେ କେତେଜଣ ତାଙ୍କ ସଭାକୁ ଦଉଡ଼ୁଁ। ଛାତ୍ର ଓ ଯୁବକମାନଙ୍କୁ ତାଙ୍କର ଉନ୍ମାଦନାଭରା ଭାଷଣ ବିଶେଷ ଅନୁପ୍ରାଣିତ କରୁଥିଲା। ସାଧାରଣ ଲୋକଙ୍କ ମନ ଓ ପ୍ରାଣକୁ ଓଜସ୍ୱିନୀ ବକ୍ତୃତା ସ୍ପର୍ଶ କରୁଥିଲା। ମହାତ୍ମା ଗାନ୍ଧୀଙ୍କ ରଚିତ ଜାତୀୟ ମୁକ୍ତି ସଂଗ୍ରାମର ବହ୍ନିକୁ ଗ୍ରାମେ ଗ୍ରାମେ ପ୍ରଜ୍ୱଳିତ କରୁଥିଲା। ତାଙ୍କର ବକ୍ତୃତା ଶୁଣିବାପରେ ଆମେ କିଭଳି ସେଭଳି ପ୍ରାଣସ୍ପର୍ଶୀ ବକ୍ତୃତା ଦେଇପାରିବୁ ସେହି ଅଭ୍ୟାସ କରୁଥିଲୁ। ଦେଶର ସ୍ୱାଧୀନତା ସଂଗ୍ରାମରେ ତାଙ୍କର ଦାନ ତ ଚିରସ୍ମରଣୀୟ।

ସେତେବେଳେ ମୁଁ ଉତ୍କଳବାହିନୀରେ କାର୍ଯ୍ୟ କରୁଥିଲି ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଭାଷା ଓ ସଂସ୍କୃତିକୁ ବଞ୍ଚାଇ ରଖିବାପାଇଁ। ଓଡ଼ିଶା ତଥା ଓଡ଼ିଆ ଭାଷା ଭାଷୀଙ୍କ ସ୍ୱାର୍ଥରକ୍ଷା ପାଇଁ ଆମ ଛାତ୍ରମାନଙ୍କର କାର୍ଯ୍ୟକୁ ସେ ଆଶୀର୍ବାଦ ଓ ପ୍ରୋତ୍ସାହନ ଦେଉଥିଲେ।

ତାଙ୍କର ସାହସ, ତ୍ୟାଗ, ନିଷ୍ଠା, ଗଭୀର ଦେଶାତ୍ମବୋଧ ଓ ଜନ୍ମମାଟି ପ୍ରତି ମମତା ଯେତେ ଅଧିକ ମନେ ପକାଇବା ବର୍ତ୍ତମାନର ସମସ୍ୟାବହୁଳ ସମୟରେ ମହାନ୍ ଜାତୀୟ ମୂଲ୍ୟବୋଧ, ଜାତୀୟ ଐକ୍ୟ, ସଂହତି ଓ ସ୍ୱଦେଶୀଭାବନାକୁ ସୁରକ୍ଷା କରିବାରେ ସେତେ ଅଧିକ ପ୍ରେରଣା ଲାଭ କରିବା।

• • • •

# ଦ୍ୱିତୀୟ ଯଦୁମଣି

ଚନ୍ଦ୍ରଶେଖର ନାୟକ

୧୯୩୯ ମସିହାରେ ମୁଁ ପୁରୀଜିଲ୍ଲା ସ୍କୁଲରେ ନବମ ଶ୍ରେଣୀରେ ପଢୁଥାଏ। ସେହି ବର୍ଷଟି ବହୁ ଗୁରୁତ୍ୱପୂର୍ଣ୍ଣ ରାଜନୀତିକ ଘଟଣା ତଥା ପ୍ରାକୃତିକ ବିପର୍ଯ୍ୟୟ ଯୋଗୁ ମହତ୍ତ୍ୱ ଓ ଗାମ୍ଭୀର୍ଯ୍ୟପୂର୍ଣ୍ଣର ବର୍ଷ କହିଲେ ଅତ୍ୟୁକ୍ତି ହେବନାହିଁ। ୧୯୩୫ ମସିହା ଭାରତ ଶାସନ ଆଇନ ପରିପ୍ରେକ୍ଷୀରେ ଓଡ଼ିଶାରେ ଗଠିତ ସର୍ବପ୍ରଥମ କଂଗ୍ରେସ ମନ୍ତ୍ରିମଣ୍ଡଳ ଅଗ୍ନିପରୀକ୍ଷା ଦେଇ ଗତି କରୁଥାନ୍ତି। ବିଶ୍ୱନାଥ ଦାସ ଓଡ଼ିଶାର ସର୍ବପ୍ରଥମ କଂଗ୍ରେସ ପ୍ରଧାନମନ୍ତ୍ରୀ। ଅଖିଳ ଭାରତୀୟ ଜାତୀୟ କଂଗ୍ରେସର ନୀତିନିୟମ ଓ ନିର୍ଦ୍ଧାରଣକୁ ସେତେବେଳେ ମନ୍ତ୍ରିମଣ୍ଡଳ ଅକ୍ଷରେ ଅକ୍ଷରେ ପାଳନ କରୁଥାନ୍ତି। ଏତିକିବେଳେ ଭାରତର ତତ୍‌କାଳୀନ ବଡ଼ଲାଟ ଲର୍ଡ଼ ଲୀନ୍ ଲିଥ୍‌ଗୋ ଓଡ଼ିଶା ପରିଦର୍ଶନରେ ଆସିଲେ। ତାଙ୍କ ପରିଦର୍ଶନକୁ କଂଗ୍ରେସ ମନ୍ତ୍ରୀମଣ୍ଡଳ ଆନୁଷ୍ଠାନିକ ଭାବେ ବର୍ଜନକରି ଓଡ଼ିଶାବାସୀ ବିଶେଷତଃ ଛାତ୍ରସମାଜକୁ ସେହିପନ୍ଥା ଅବଲମ୍ବନ ପାଇଁ ପରାମର୍ଶ ଦେଲେ। ତଦନୁଯାୟୀ ପୁରୀ ଜିଲା ସ୍କୁଲ ଛାତ୍ରମାନେ ପ୍ରଧାନମନ୍ତ୍ରୀଙ୍କ କଥାମାନି ବଡ଼ଲାଟଙ୍କୁ ଆନୁଷ୍ଠାନିକ ରୀତିରେ ଭେଟିଲେ ନାହିଁ। ଏହି ଘଟଣାରୁ ବିଦେଶୀ ସରକାର ଓ କଂଗ୍ରେସ ମଧ୍ୟରେ ମୁକାବିଲା ମନୋଭାବ ସୃଷ୍ଟି ହେବାରେ ଲାଗିଲା। ସେ ବର୍ଷ ପ୍ରଳୟଙ୍କରୀ ବନ୍ୟାରେ ପୁରୀଜିଲା ବହୁ ବିପର୍ଯ୍ୟୟର ସମ୍ମୁଖୀନ ହେଲା। ଆମେ ପୁରୀଜିଲା ସ୍କୁଲର ଛାତ୍ରମାନେ ସମାଜସେବୀ ସ୍ୱାଧୀନଚେତା ଶିକ୍ଷକ କ୍ଷୀରେଶ୍ୱର ମିଶ୍ରଙ୍କ ଉପଦେଶ ନେଇ ରିଲିଫ କାମ କଲୁ। ପୁରୀଜିଲ୍ଲା ସ୍କୁଲ ଛାତ୍ରମାନଙ୍କ ମଧ୍ୟରେ ଯେଉଁ କେତେଜଣ ଏହିସବୁ କାମରେ ପ୍ରମୁଖ ଭୂମିକା ଗ୍ରହଣ କରିଥାନ୍ତି ସେମାନଙ୍କ ଭିତରେ ମୁଁ ଓ ଟାଙ୍ଗିଆନା କୁହୁଡ଼ି ଗ୍ରାମନିବାସୀ ସ୍ୱାଧୀନତା ସଂଗ୍ରାମୀ ରାଧାମୋହନ ପାଣିଙ୍କ ପୁତ୍ର ବ୍ରଜମୋହନ ପାଣି ଥାଉ ଅନ୍ୟତମ।

ଆମ ସ୍କୁଲରେ ବହୁ ସଭାସମିତି ହୁଏ ଓ ବହୁ ଗଣ୍ୟମାନ୍ୟ ବ୍ୟକ୍ତି ବିଭିନ୍ନ ବିଷୟରେ ଛାତ୍ର-ସଭାରେ ଉଦ୍‌ବୋଧନ ଦିଅନ୍ତି। ତନ୍ମଧ୍ୟରେ ଦୁଇଟି ପ୍ରସଙ୍ଗ ମୋ ମନରୁ ଯାଉନାହିଁ। ରେଭେନ୍‌ସା କଲେଜରେ ତତ୍‌କାଳୀନ ଅଧ୍ୟକ୍ଷ ପ୍ରଫେସର ପ୍ରାଣକୃଷ୍ଣ ପରିଜା ବିବର୍ତ୍ତନବାଦ (Evolutión) ସମ୍ବନ୍ଧୀୟ ଖାଣ୍ଟି ଓଡ଼ିଆରେ ବୈଜ୍ଞାନିକ ତଥ୍ୟ ପରିବେଷଣ ତାଙ୍କ ବ୍ୟାଖ୍ୟାନରୁ ବେଶ୍ ବୁଝିହେଲା ଯେ ଜଟିଳ ବୈଜ୍ଞାନିକ ତଥ୍ୟମାନ କେବଳ ଇଂରାଜୀ ନୁହେ ମାତୃଭାଷାରେ ମଧ୍ୟ ସୁନ୍ଦର ପରିବେଷଣ କରାଯାଇପାରିବ। ଅନ୍ୟ ପ୍ରସଙ୍ଗଟି ହେଉଛି ଦେଶମିଶ୍ରଣ ସମ୍ବନ୍ଧରେ। ଜିଲା ସ୍କୁଲହଲ୍ ଛାତ୍ର ତଥା ଶିକ୍ଷକମାନଙ୍କ ଦ୍ୱାରା ଭରପୂର। ଡ଼ାକବାଜି ଯନ୍ତ୍ରର ପ୍ରଶ୍ନ ନଥାଏ। ସମସ୍ତଙ୍କ ଏକାଗ୍ରତା ଥାଏ। ଜଣେ ସୁବକ୍ତା ଖର୍ବାକୃତି, ସୁନ୍ଦର ବପୁ, ସହାସ୍ୟ ବଦନ ଅଥଚ ଦୃଷ୍ଟିରେ ତୀକ୍ଷ୍ଣ ମଞ୍ଚଉପରେ ଅବତୀର୍ଣ୍ଣ ହେଲେ। ପ୍ରଧାନଶିକ୍ଷକ ମିର୍ଜାଫକଣ୍ଡ ଅଲି ବେଗ ତାଙ୍କର ପରିଚୟ ପ୍ରସଙ୍ଗରେ କହିଲେ ଯେ- ସେ କେବଳ ସୁବକ୍ତା ନୁହନ୍ତି। ଅନନ୍ୟସାଧାରଣ ବକ୍ତା । ଦୈନନ୍ଦିନ ସମସ୍ୟାବଳୀ ଉପରେ ତାଙ୍କର ସୂକ୍ଷ୍ମ ବିଶ୍ଳେଷଣ ବହୁତ ହୃଦୟଗ୍ରାହୀ।

ବକ୍ତା ଦେଶମିଶ୍ରଣ ଦେଇ ଉଦ୍‌ବୋଧନ ଦେଲେ। "ଆମେ ୧୯୩୬ ମସିହାରେ ସ୍ୱତନ୍ତ୍ର ଓଡ଼ିଶା

ପାଇଲେ ମଧ୍ୟ ସିଂହଭୂମି ଭଳି ଉଚ୍ଚ ଓଡ଼ିଆ ଅଧ୍ୟୁଷିତ ଅଂଚଳଟି ଅଦ୍ୟାପି ଆସିନାହିଁ। "ଗଙ୍ଗାଠାରୁ ଗୋଦାବରୀ ଯାଏ ବ୍ୟାପୀ କୀର୍ତ୍ତିମାଳା ଯାର ବିରାଜେ ଅଦ୍ୟାପି" କେବଳ ଉଦ୍‌ବୋଧନୀ ହୋଇ ରହିଯାଇଛି। ଏଣୁ ସମସ୍ତ ଓଡ଼ିଆ ଭାଷାଭାଷୀ ଅଂଚଳକୁ ନେଇ ପୂର୍ଣ୍ଣାଙ୍ଗ ଉତ୍‌କଳ ଗଠିତ ନହେବାଯାଏ ଆମର ସଂଗ୍ରାମ ଅବ୍ୟାହତ ରହିବ"। ଏହାହିଁ ଥିଲା ତାଙ୍କ ଉଦ୍‌ବୋଧନର ସାରମର୍ମ। ବହୁ ଗ୍ରାମ୍ୟ ବୋଲି, ଢଗ, ଢମାଳି ପୁରାଣ ଶାସ୍ତ୍ରରୁ ଉଦ୍ଧୃତି ଦେଇ ସେ ତାଙ୍କର ସ୍ୱଭାବ ସୁଲଭ ବକ୍ତବ୍ୟକୁ ଆମ ପାଖରେ ରଞ୍ଜାଇ ମଜାଇ ଦେଲେ। ଘନଘନ କରତାଳି ମାଧ୍ୟମରେ ସଭାଗୃହ କମ୍ପିଉଠିଲା।

ଶେଷକୁ ଆସିଲା ଉପସଂହାର ପର୍ଯ୍ୟାୟ। ମହାତ୍ମା ଗାନ୍ଧୀ ସ୍ୱାଧୀନତା ସଂଗ୍ରାମରେ ବାର୍ତ୍ତା ପ୍ରଚ୍ଚାର କରିବାକୁ ଯାଉଥିବା ଅବସରରେ ତାଙ୍କୁ ବିପୁଳ ଆର୍ଥିକ ଦାନ ମିଳୁନଥିଲା। ଗାନ୍ଧିଜୀ ଛାତ୍ରସମାଜରୁ ଦାନ ଗ୍ରହଣ କଲାବେଳେ ପରିଷ୍କାର କହୁଥିଲେ- ଏ ଦାନରେ ଦୁଃଖୀ, ରଙ୍କି ସୂତା କାଟିବେ। ତାଙ୍କ ହାତକଟା ସୂତାରେ ବୁଣାଯାଉଥିବା ଖଦି (ଖଦଡ଼) ବସ୍ତ୍ର ତୁମେମାନେ ନ ପିନ୍ଧିଲେ ତୁମ ଦାନ ଅପୂର୍ଣ୍ଣ ରହିଯିବ।" ଏହି ପ୍ରସଙ୍ଗକୁ ଉପଲକ୍ଷ ଦେଇ ସେଦିନର ବକ୍ତା ଆମକୁ କହିଲେ- ଦେଶମିଶ୍ରଣ ଆନ୍ଦୋଳନ ଏକ ଅଣରାଜନୀତିକ ସଂଗ୍ରାମ। ଏଥିରେ ସରକାରୀ, ବେସରକାରୀ, ଛାତ୍ର, ଶ୍ରମିକ ସମସ୍ତେ ଭାଗନେଇ ପାରିବେ। ତେଣୁ ଛାତ୍ରସମାଜର କର୍ତ୍ତବ୍ୟ ହେଉଛି ସେମାନେ ଏହି ସଂଗ୍ରାମ ପାଣ୍ଠିକୁ ନିଜେ ଯଥାଶକ୍ତି ଦାନ ଦିଅନ୍ତୁ। ସାଧାରଣ ଜନତାଙ୍କୁ ବୁଝାଇ ଦାନ ସଂଗ୍ରହ କରନ୍ତୁ।" ଏତିକି କହି, ଯେତେବେଳେ ରସିଦ ବହି କିଏ ନେବ ଆଗେଇ ଆସ ଆହ୍ୱାନ କଲେ ଆମେ ଦୁଇଜଣ ଛିଡ଼ା ହୋଇଗଲୁ ମୁଁ ଓ ମୋର ସହପାଠୀ ସେହି ବ୍ରଜମୋହନ ପାଣି। ସେ ଆମକୁ ସାବାସ କଲେ। ଆମେ ରସିଦ ବହି ଗ୍ରହଣ କରି ଦେଶମିଶ୍ରଣ ସଂଗ୍ରାମରେ ଭାଗନେଇ ପୁରୀଜିଲା ସ୍କୁଲର ମାନ ରକ୍ଷା କରିଥିଲୁ।

ପରବର୍ତ୍ତୀ ସମୟରେ ପୁରୀ ସିଂହଦ୍ୱାର ସଭାରେ ମୁଁ ତାଙ୍କ ଓଜସ୍ୱିନୀ ଭାଷଣ କେତେଥର ଶୁଣିଛି। ଗାଁ ଗହଳର ଚ୍ଚଷୀଙ୍କୁ କଂଗ୍ରେସ ମନ୍ତ୍ର ପଢାଇବା ପାଇଁ ସେ ହଳ ପଛେ ପଛେ ବିଲକୁ ଯାନ୍ତି ଓ ବିଲରେ ଚ୍ଚଷୀ ହଳ କରୁଥିଲାବେଳେ ତାକୁ ସେକଥା କହି କଂଗ୍ରେସର ଓ ଚ୍ଚରିଅଣା ସଦସ୍ୟ କରାନ୍ତି। ସେ ଯେ କେବଳ ସୁବକ୍ତା ଥିଲେ ତା ନୁହେଁ ଦକ୍ଷ ସଂଗଠକ ମଧ୍ୟ ଥିଲେ। ଏବକାର ଲୋକଙ୍କ ବୟସକୁ ଦେଖିଲେ ଅଳ୍ପ ବୟସରେ ତାଙ୍କର ପରଲୋକ ହୋଇଗଲା।

ମାର୍କଣ୍ଡେଶ୍ୱର ସାହି, ଯମୁନାଲେନ୍
ପୁରୀ-୭୫୨୦୦୧

• • • •

# ସ୍ମୃତିରୁ ଖିଏ

ଗିରିଜାଭୂଷଣ ପଟ୍ଟନାୟକ

ଯଦୁମଣି ମଙ୍ଗରାଜ ବର୍ତ୍ତମାନ ଏକ ବିସ୍ମୃତ ଚରିତ୍ର । ୧୯୬୪ ମସିହା ଏପ୍ରିଲ ମାସ ଦୁଇ ତାରିଖରେ ତାଙ୍କର ପରଲୋକ ହୋଇଗଲା କଟକ ବଡ଼ ଡାକ୍ତରଖାନାରେ । ଅନେକ ଦିନ ଧରି ସେ ଡାକ୍ତରଖାନାରେ ଥିଲେ । ମୃତ୍ୟୁର ଶେଷଦିନ ପର୍ଯ୍ୟନ୍ତ ତାଙ୍କ ପାଖରେ ଦେଖାହୋଇଛି । ଆସନ୍ନ ମୃତ୍ୟୁ । କିନ୍ତୁ ମୃତ୍ୟୁ ଆଗରେ ଯୋଦ୍ଧା ଯଦୁମଣି ଆଦୌ ଭୀତ ନୁହଁନ୍ତି । ସେଇପରି ଦୃପ୍ତ ଭାଷା କିନ୍ତୁ କ୍ଷୀଣ କଣ୍ଠ । ଯେଉଁ କଣ୍ଠର ଆବାଜ ଦିନେ ହଜାର ହଜାର ଲୋକଙ୍କୁ ମନ୍ତ୍ରମୁଗ୍ଧ କରି ରଖି ପାରୁଥିଲା କଣ୍ଠ ନୀରବିତ ହୋଇଯିବା ପାଇଁ ଆଉ ଡ଼େରି ନାହିଁ । କିନ୍ତୁ ମଂଗରାଜ ସୈନିକ, ସେନାପତି, ସେ ଜାଣନ୍ତି ଯେ ଅନ୍ତିମ ସମୟର ଶକୁନ ଛାଇ ପଡ଼ିଲାଣି । ସଂଧ୍ୟା ଉପଗତ । ରାତ୍ରି ହେବା ପାଇଁ ଆଉ ଡ଼େରି ନାହିଁ । ତଥାପି ସେ ହାର ମାନିବାକୁ ପ୍ରସ୍ତୁତ ନୁହନ୍ତି ।

୧୯୬୪ ରୁ ୧୯୯୩ । ଯଦୁମଣି ମଂଗରାଜଙ୍କର ନାଁ ଆଜିକାଲି ପିଲାମାନଙ୍କର ହେତୁ ହେବ ନାହିଁ । ତାଙ୍କର ସ୍ମୃତି ରକ୍ଷା କରାଯାଇନାହିଁ । କାହିଁକି କରାଯାଇନାହିଁ ତାହା ତାଙ୍କର ବନ୍ଧୁ, ସହକର୍ମୀମାନେ କହିପାରିବେ । କିନ୍ତୁ ଦିନ ଥିଲା ଯଦୁମଣି ମଂଗରାଜଙ୍କର ନାଁ ନ ଜାଣିବା ଲୋକ କେହି ନଥିଲେ । ଓଡ଼ିଶା ଭୂଖଣ୍ଡରେ ତାଙ୍କର କଣ୍ଠସ୍ୱର ପ୍ରତିଧ୍ୱନିତ ହେଉଥିଲା ଚତୁର୍ଦ୍ଦିଗରେ ।

କୁହାଯାଏ ଯେ ୧୯୩୦ ମସିହାର ଜାତୀୟ ଆନ୍ଦୋଳନର ବିନ୍ଧାଣୀମାନଙ୍କ ମଧ୍ୟରେ ସେ ଥିଲେ ଅନ୍ୟତମ । ସେତେବେଳେ ମାଇକ୍ ନଥିଲା । ଓଡ଼ିଶାସାରା ବୁଲି ଜନସାଧାରଣଙ୍କୁ ଉଦ୍‌ବୋଧନ ଦେବାକୁ ପଡୁଥିଲା ଖାଲି ପାଟିରେ, ସଂଗଠିତ କରିବାକୁ ପଡୁଥିଲା ସତ୍ୟାଗ୍ରହୀମାନଙ୍କୁ । ଏ ଦାୟିତ୍ୱ ପଡ଼ିଥିଲା ତିନିଜଣଙ୍କ ଉପରେ । ଯଦୁମଣି ମଂଗରାଜ, ରାଜକୃଷ୍ଣ ବୋଷ ଓ ନବକୃଷ୍ଣ ଚୌଧୁରୀ । କୋଡ଼ିଏ, ତିରିଶ ହଜାର ଲୋକଙ୍କୁ ବିନା ମାଇକ୍‌ରେ ଉଦ୍‌ବୋଧନ ଦେଇପାରୁଥିଲେ ସେ । ତାଙ୍କର ତେଜସ୍ୱିନୀ ଭାଷଣ ଯୁବସମାଜକୁ ମନ୍ତ୍ରମୁଗ୍ଧ କରିପାରୁଥିଲା ।

ଜାତୀୟ ଆନ୍ଦୋଳନର ଏଇ ମହାରଥୀ ହଜାରିବାଗ ଜେଲ୍‌ରେ ଦୁଇବର୍ଷ ରହିଥିଲେ ବନ୍ଦୀ ଭାବରେ । ଓଡ଼ିଶା ବିଧାନସଭାର ସଦସ୍ୟ ଥିଲେ ଏବଂ କିଛି କାଳପାଇଁ ଉପବାଚସ୍ପତି ମଧ୍ୟ ଥିଲେ । କଂଗ୍ରେସ ଦଳର ପାର୍ଲାମେଣ୍ଟାରୀ ସେକ୍ରେଟେରୀ ମଧ୍ୟ ଥିଲେ ସେ କିଛି କାଳ ପାଇଁ ।

ମୁଁ ତାଙ୍କୁ ଦେଖିଲାବେଳକୁ ବା ତାଙ୍କ ସଂସ୍ପର୍ଶରେ ଆସିଲାବେଳକୁ ସେ କଂଗ୍ରେସ ପାର୍ଟି ଛାଡ଼ି ସାରିଥିଲେ । ମଝିରେ ସେ ପୁଣି ବୋଧହୁଏ ସଂକ୍ଷିପ୍ତ ସମୟ ପାଇଁ କଂଗ୍ରେସକୁ ଫେରିଥିଲେ, କିନ୍ତୁ ସେଥିରେ ତାଙ୍କର ଆତ୍ମା ନ ଥିଲା । କଂଗ୍ରେସ– ବିରୋଧୀ ଦଳର ନେତା ଭାବରେ ସେ ପରିଚିତ ଥିଲେ ଏବଂ କଂଗ୍ରେସ– ବିରୋଧୀ ରାଜନୈତିକ ଦଳମାନଙ୍କ ସହିତ ତାଙ୍କର ସଂପର୍କ ବେଶୀ ଥିଲା ।

ଯଦୁମଣିବାବୁଙ୍କ ସହିତ ପରିଚିତ ହେଲା ବେଳକୁ ସେ ତାଙ୍କର ସ୍ୱାଭାବିକ ରସାଣିଆ କଣ୍ଠରେ କହୁଥିଲେ ଯେ ନୀଳକଣ୍ଠ ଦାଶ, ଗୋଦାବରୀଶ ମିଶ୍ର ଏବଂ ମୁଁ କଂଗ୍ରେସ ଛାଡ଼ିଥିଲୁ ଏକା ସାଂଗରେ ଫରୱାର୍ଡ ବ୍ଲକ୍

ଗଠନ କରିବା ପାଇଁ, ସୁଭାଷ ବୋଷଙ୍କ ସହିତ ଯୋଗଦେଇ । ନୀଳକଣ୍ଠବାବୁ କଂଗ୍ରେସକୁ ଫେରିଲେଣି, ଗୋଦାବରୀଶବାବୁ ଗଣତନ୍ତ୍ର ପରିଷଦକୁ ଗଲେ ଆଉ ବାକି ରହିଛି ମୁଁ । ମୋତେ ସୋସାଲିଷ୍ଟ ପାର୍ଟି କିମ୍ବା କମ୍ୟୁନିଷ୍ଟ ପାର୍ଟିକୁ ହିଁ ଯିବାକୁ ପଡ଼ିବ ବୋଧହୁଏ ! ହସରେ ଉଚ୍ଛୁଳି ପଡ଼େ ସଭାସ୍ଥଳ ।

ଯଦୁମଣି ମଂଗରାଜଙ୍କୁ ଶେଷବକ୍ତା ହେବାପାଇଁ ଦିଆଯାଏ ନାହିଁ । କାରଣ ସେ ଯଦି ଶେଷବକ୍ତା ହେବେ ତା'ହେଲେ ତାଙ୍କର ରସରସିଆ ଏବଂ ଓଜସ୍ୱିନୀ ବକ୍ତୃତା ଶୈଳୀରେ ପୂର୍ବବର୍ତ୍ତୀ ବକ୍ତାମାନଙ୍କର କୌଣସି ମୂଲ୍ୟ ରହିବ ନାହିଁ କି ପରବର୍ତ୍ତୀ ସମୟ ପାଇଁ କୌଣସି ଦିଗ ନିର୍ଦ୍ଦେଶ ରହିବ ନାହିଁ । ସୁତରାଂ ତାଙ୍କୁ ପ୍ରଥମ ବକ୍ତା ଏବଂ ଅନ୍ୟତମ ପ୍ରସିଦ୍ଧ ବାଗ୍ମୀ ମନମୋହନ ମିଶ୍ରଙ୍କୁ ଶେଷ ବକ୍ତା କରିବା ପାଇଁ ସଂଗଠକମାନେ ପ୍ରାୟ ନିଷ୍ପତ୍ତି ନେଉଥାନ୍ତି ।

ରାଜନୀତିରେ ବ୍ୟବସ୍ଥିତ ଚିତ୍ତ ଏବଂ ସଂଗଠନର ଧାରା ଏକାନ୍ତ ଆବଶ୍ୟକ କିନ୍ତୁ ଭୋଳାଚାଇଲ ଯଦୁମଣି ମଂଗରାଜ ଆଦ୍ୟଜୀବନରେ କ'ଣ କରିଥିଲେ କହିପାରିବି ନାହିଁ, କିନ୍ତୁ; ପରବର୍ତ୍ତୀ ଜୀବନରେ ସେ ତାକୁ ମାନିଲେ ନାହିଁ । କଂଗ୍ରେସ, କଂଗ୍ରେସରୁ ଫରୱାର୍ଡ ବ୍ଲକ୍, ଖଣ୍ଡାୟତ (କ୍ଷତ୍ରିୟ) ମହାସଭା, ପୁଣି କଂଗ୍ରେସ ଯଦୁମଣି ମଂଗରାଜ ଜୀବନକାଳ କଟିଛି ବହୁ ପରୀକ୍ଷାରେ । କୌଣସିଥିରେ ସେ ସନ୍ତୁଷ୍ଟ ହୋଇ ରହିପାରି ନାହାନ୍ତି ଏବଂ କ୍ରମେ କ୍ରମେ ସେ ପ୍ରଚଣ୍ଡ ଇଣ୍ଡିଭିଜୁଆଲିଷ୍ଟ ହୋଇଯାଇଛନ୍ତି.ଏବଂ ସେଇ ଭାବରେ ସେ ଯେତେବେଳେ ଯାହା ସମ୍ମାନ ପାଇଛନ୍ତି ତାହାହିଁ ତାଙ୍କୁ ତୃପ୍ତ କରିଛି । ଦଳ, ମତ, ଗୋଷ୍ଠୀର ନିଗଡ଼ ତାଙ୍କୁ ବଂଧନ ପରି ମନେହୋଇଛି ।

ଯଦୁମଣି ମଂଗରାଜ ହାସ୍ୟରସ ସୃଷ୍ଟି କରିବାରେ ଅନନ୍ୟସାଧାରଣ ଥିଲେ । ସମୟ ସମୟରେ ତାଙ୍କର ହାସ୍ୟରସ ସୀମା ବି ଟପିଯାଉଥିଲା; କିନ୍ତୁ ତାକୁ ଆଉ କେହି କିଛି ମନେ କରୁନଥିଲେ । କାରଣ ଲୋକଙ୍କ ପାଇଁ ତା' ବେଶ୍ ଉପଭୋଗ୍ୟ ହେଉଥିଲା । ଥରେ ଡ଼ାକ୍ତର ଜର୍ଜ ପଟ୍ଟନାୟକଙ୍କ ଘରେ ଏକ ବନ୍ଧୁମିଳନ ହେଉଥିଲା । ଖରାଦିନ ଡକ୍ଟର ହରେକୃଷ୍ଣ ମହତାବ କୁଆଡୁ ଆସି ପହଞ୍ଚିଲେ ଧଇଁସଇଁ ହୋଇ ଏବଂ ଡାକ୍ତର ଜର୍ଜ ପଟ୍ଟନାୟକଙ୍କୁ ମାଗି ଢକ୍ ଢକ୍ ଦୁଇଗ୍ଲାସ ପାଣି ପିଇଲେ । ଖୁବ୍ ବୋଧହୁଏ ଶୋଷ ହେଉଥିଲା । ପିଇସାରି ଜର୍ଜ ପଟ୍ଟନାୟକଙ୍କୁ ଧନ୍ୟବାଦ ଦେଇ ଡକ୍ଟର ମହତାବ କହିଲେ, ଜର୍ଜ, ତମକୁ ଧନ୍ୟବାଦ । ପାଣି ପିଆଇ ମୋତେ ରକ୍ଷା କରିଦେଲ । ଭାରି ଶୋଷ ହେଉଥିଲା । ସେଇଠି ଯଦୁମଣି ମଂଗରାଜ ଠିଆ ହୋଇଥିଲେ । ସାଂଗେ ସାଂଗେ ଉତ୍ତର ଦେଲେ; କିନ୍ତୁ ମହତାବବାବୁ ଜର୍ଜ ପଟ୍ଟନାୟକ ତୁମକୁ ଯାହା ପିଆଇଲେ ମୋତେ ସେକଥା କେହି ପିଆଇ ପାରିନାହାନ୍ତି !

ଅର୍ଥାତ୍ ମୋତେ କେହି ପାଣି ପିଆଇ ପାରିନାହାନ୍ତି । ସଭାରେ ହସର ରୋଳ ଖେଳିଗଲା । ମହତାବବାବୁ ପାଣି ଅଧା ପିଉଥିଲେ ସେ ହସି ହସି ଏବଂ କାଶି କାଶି ନୟାନ୍ତ!

ଯଦୁମଣି ମଂଗରାଜଙ୍କ ସହିତ ଆମ୍ଭମାନଙ୍କର ଶେଷ ଭେଟାଭେଟି ହୁଏ ସୀମା ଆନ୍ଦୋଳନରେ । ଯଦୁମଣିବାବୁ କମାଣ୍ଡର ବା ସେନାପତି ବୋଲି ଘୋଷଣା କରନ୍ତି ଏବଂ ଆପଣାର ରଜତ ଶୁଭ୍ରକାଳ ଥିବା ଛାତିକୁ ଉନ୍ମୁକ୍ତ କରି ଆହ୍ୱାନ କରନ୍ତି "ପୁଟ୍ ୟୋର ସିଲ୍‌ଭର ବୁଲେଟଇନ୍ ଦିସ୍ ସିଲ୍‌ଭର ଚେଷ୍ଟ"! ଗୁଳି.ହୁଏ । ସୁନିଲ୍ ଦେ' ସହିଦ ହୁଅନ୍ତି । ଯଦୁମଣି ବାବୁ ରେଡ଼ିଓ ଷ୍ଟେସନ (ବର୍ତ୍ତମାନ ମଧୁପୁର ହାଉସ୍) ଭିତରେ ଧପାଲି ପଶି ଏ ସରକାରର ପତନ ହୋଇଛି ବୋଲି କହିବାର ମିନିଟକ ପୂର୍ବରୁ ଲାଇନ କାଟି ଦିଆଯାଏ ଦୈବାତ୍ ।

ଯଦୁମଣି ମଂଗରାଜଙ୍କ ସହିତ ମତଭେଦ ହେବାରେ ମଧ୍ୟ ଗୌରବ ରହିଛି । ମତାନ୍ତର କଳା ମନାନ୍ତର ନୁହେଁ ତାହାର ଏହା ଏକ ସୂଚନା । ସୀମା ଆନ୍ଦୋଳନର ଶେଷ ପର୍ଯ୍ୟାୟ । ନେତୃତ୍ୱ ଭିତରେ ତୀବ୍ର ମତଭେଦ ଦେଖାଦେଇଛି । ଏହାର ଚୂଡ଼ାନ୍ତ ରୂପ ପାଇଲା ସେଦିନ କଟକ ମ୍ୟୁନିସିପାଲିଟି ପଡ଼ିଆରେ । ଯଦୁମଣି ମଂଗରାଜ ସଭାପତି । କିନ୍ତୁ ସଭାପତି ସଭା ଆରମ୍ଭ କରିବା ପୂର୍ବରୁ ତାଙ୍କର ସଭାପତିତ୍ୱକୁ

ଚ୍ୟାଲେଞ୍ଜ୍ କରାଯାଏ ନେତୃତ୍ୱର ଆଉ ଏକ ଅଂଶରୁ । ଯଦୁମଣି ମଂଗରାଜ ଭାରି ଗ୍ୱଲାକ ଲୋକ । ସେ ଅବସ୍ଥା ଦେଖି ତୁରନ୍ତ ସଭାପତି ଆସନ ପରିତ୍ୟାଗ କଲେ କିନ୍ତୁ; ସଭା ଛାଡ଼ି ଗଲେ ନାହିଁ । ଏକ ଅଚଳ ଅବସ୍ଥା ସୃଷ୍ଟି ହେଲା । ଆକସ୍ମିକ ଭାବରେ ନେତୃତ୍ୱର ବିଭେଦ ସ୍ପର୍ଶ କରିନଥିବା ଛାତ୍ରସମାଜର ପ୍ରତିନିଧି ଭାବରେ ମୋତେ ସଭାପତିତ୍ୱ ଗ୍ରହଣ କରିବାକୁ ପଡ଼ିଥିଲା ଏବଂ ମୁଁ ପ୍ରଥମେ 'ହୁକୁମ' ଦେଲି ଯେ ପ୍ରଥମ ବକ୍ତା ଯଦୁମଣି ମଂଗରାଜ । ସଭାରେ ଘନଘନ କରତାଳି ଭିତରେ ଯଦୁମଣି ମଂଗରାଜ ଛାତ୍ର ସମାଜକୁ ଏବଂ ମୋତେ ଯେଉଁ ପ୍ରଶଂସାର ବାଣୀ ଶୁଣାଇଲେ ତାହା ଅଦ୍ୟାପି ମୋର ସ୍ମୃତ ହୋଇ ରହିଛି । ଯଦିଓ ତାଙ୍କୁ ସେଦିନ ଚ୍ୟାଲେଞ୍ଜ କରିଥିବା ବ୍ୟକ୍ତି ଥିଲେ ଆମରି ଗୋଷ୍ଠୀର ଏବଂ ଥିଲେ ମୋର ରାଜନୈତିକ ନେତା ସହକର୍ମୀ ମଧ୍ୟ ।

ଯଦୁମଣି ବାବୁଙ୍କ ବାହୁଡ଼ିବା ୩୦ବର୍ଷ ପାଖାପାଖି ମୋର ଯାହା ମନେପଡୁଛି,ସେ ୧୮୯୬ ମସିହାରେ ଜନ୍ମ ହୋଇଥିଲେ । କିନ୍ତୁ ହଠାତ୍ ସଂଯୁକ୍ତାଙ୍କର ଚିଠି କହିଲା ଯେ ୧.୧.୧୯୯୪ ରେ ତାଙ୍କର ଜନ୍ମ ଶତବାର୍ଷିକୀ ପାଳିତ ହେବ । ତେଣୁ କଟକ ନଗରର ସହସ୍ର ବାର୍ଷିକୀରେ ମୁଁ ଲିପିବଦ୍ଧ କରିଥିବା ଜନ୍ମତିଥି ଭୁଲ୍ । ତାହାର ସଂଶୋଧନ ମଧ୍ୟ ମୁଁ ଏହି ଅବସରରେ କରିନେଉଛି ।

ଯଦୁମଣି ମଂଗରାଜ ଏବଂ ତାଙ୍କ ଭଳି ବହୁ ବ୍ୟକ୍ତିଙ୍କର ଜୀବନ କଟିଥିଲା ଦେଶ ବା ଜନସେବାରେ । କିନ୍ତୁ ତାଙ୍କର ସ୍ମୃତି ରକ୍ଷା ବା ଶତବାର୍ଷିକୀ ପାଳନର ଦାୟିତ୍ୱ ପଡୁଛି ପରିବାର ଉପରେ । ଏହା ଏକ କ୍ରୂର ପରିହାସ ।

ଯଦୁମଣି ମଂଗରାଜ ଆଉ ନାହାନ୍ତି । କେହି ରହିବେ ନାହିଁ । କିନ୍ତୁ ସେ ଯେ ଓଡ଼ିଶା ଇତିହାସର ଏକ ଅଧ୍ୟାୟ ଏହା କ'ଣ ସହଜରେ ଭୁଲି ହୁଏ ?

ଦି' ୟୁନିଭର୍ସ
ମୈତ୍ରୀସରଣୀ
କଟକ-୧

• • •

ଈଶ୍ୱରଙ୍କୁ ଚିହ୍ନିବାକୁ ହେଲେ, ସ୍ୱାର୍ଥ ଓ ଭୟକୁ ଛାଡ଼ିବାକୁ ହେବ ।

-ବାପୁଜୀ

# ଅଭୁଲା ସ୍ମୃତି

ଉପେନ୍ଦ୍ର କୁମାର ରାଉତ (ଧୂମାତ)

ଯଦୁମଣି ମଙ୍ଗରାଜ ଏକାଧାରରେ ଜଣେ ଦେଶସେବୀ, ସମାଜ ସଂସ୍କାରକ, ବାଗ୍ମୀ ଓ ସ୍ୱଦେଶ ପ୍ରେମୀ ଥିଲେ। ସ୍ୱତନ୍ତ୍ର ଉତ୍କଳ ଗଠନରେ ପାରଳା ମହାରାଜାଙ୍କ ସହ ମିଶି ସେ ଆମ୍ଭମାନଙ୍କର ଚିରସ୍ମରଣୀୟ ହୋଇପାରିଛନ୍ତି। ଓଡ଼ିଶାର ସ୍ୱତନ୍ତ୍ର ହାଇକୋର୍ଟ ପ୍ରତିଷ୍ଠାରେ ତାଙ୍କର ଦାନ ଅତୁଳନୀୟ।

୧୯୫୨ ମସିହା ନିର୍ବାଚନ ବେଳର କଥା। ସେତେବେଳେ ମୁଁ ଆମ ଗ୍ରାମ ନିକଟସ୍ଥ ଇନ୍ଦୁପୁର ଉଚ୍ଚ ବିଦ୍ୟାଳୟରେ ଅଧ୍ୟୟନ କରୁଥାଏ। ମଙ୍ଗରାଜବାବୁ ସ୍ୱାଧୀନ ପ୍ରାର୍ଥୀ ହିସାବରେ କେନ୍ଦ୍ରାପଡ଼ାରୁ ଆସେମ୍ବ୍ଲି ପାଇଁ ପ୍ରାର୍ଥୀ ହୋଇଥାନ୍ତି। ତାଙ୍କର ଆମ ଗ୍ରାମ ଧୂମାତ୍ ସହ ଅତି ଘନିଷ୍ଠ ସଂପର୍କ ଥାଏ। ବହୁ ସମୟରେ ସେ ଆମ ଗ୍ରାମ ଭକ୍ତବିଳାସ ମଠରେ ରହି ନିର୍ବାଚନ ପ୍ରଚାର କାର୍ଯ୍ୟ ଜୋର୍‌ସୋର୍‌ରେ ଚଳାଇଥାନ୍ତି। ତାଙ୍କ କାର୍ଯ୍ୟରେ ବହୁ ଅଳ୍ପବୟସର ପିଲାମାନେ ମଧ୍ୟ ଲାଗିପଡ଼ିଥାନ୍ତି। ସେତେବେଳେ ସେମାନଙ୍କୁ ମଙ୍ଗରାଜବାବୁ "ବାନରସେନା" ଆଖ୍ୟା ଦେଇ ବହୁ ସମୟରେ ହସାଇଥାନ୍ତି। ତାଙ୍କର ସ୍ୱଭାବସୁଲଭ ବାକ୍ୟାଳାପ ହିଁ ହାସ୍ୟରସ ଉଦ୍ଦୀପନା କରାଯାଏ। ଥରେ ରାତ୍ରିରେ ଉତ୍କଳ ସୁଯୋଗ ସନ୍ତାନ ଗୋଦାବରୀଶ ମିଶ୍ର, ବୀର କିଶୋର ବେହେରା ଏବଂ ଆଳି ରାଣୀ ରାମରାଜ କୁମାରୀଙ୍କ ସହ୍ ମଙ୍ଗରାଜବାବୁଙ୍କ ଏକତ୍ର ମିଳନ ଓ ଭାଷଣ ମୋର ଏବେବି ସ୍ମରଣ ଅଛି। ସେଦିନ ରାତ୍ରି ୧୦ଟା ସମୟଯାଏ ଚାଲିଲା ଅନର୍ଗଳ ଭାଷଣ।

୧୯୫୩ ମସିହା କଥା: ମୁଁ ୮ମ ଶ୍ରେଣୀରେ ଅଧ୍ୟୟନ କରୁଥାଏ। ମେ ମାସ ପ୍ରଥମାର୍ଦ୍ଧ ଆମ ଶ୍ରେଣୀର ଗୋଟିଏ ଗ୍ରୁପ୍ ଫଟୋ ଉଠିବା ସ୍ଥିର ହେଲା। ମୁଁ ଓ ମୋର ଅନ୍ତରଙ୍ଗ ସାଥୀ ଧ୍ରୁବଚରଣ ପଟ୍ଟନାୟକ ଫଟୋଗ୍ରାଫର୍ ଆଣିବାପାଇଁ କେନ୍ଦ୍ରାପଡ଼ା ଗଲୁ। ଆମେ ଦୁହେଁ ନୂଆ ସାଇକେଲ ଚଢ଼ାଳି। ଏଣୁ ଡ଼ରଡ଼ର ହୋଇ ସାଇକେଲ ଚଳାଇ କେନ୍ଦ୍ରାପଡ଼ାର ପୁରୁଣା ମଟରଷ୍ଟାଣ୍ଡ ଯାଏ ଗଲୁ। ସେଠାରେ ପହଞ୍ଚିବା ମାତ୍ରେ ମଙ୍ଗରାଜ ବାବୁଙ୍କ ସହ ସାକ୍ଷାତ ହେଲା.........। ମୁଁ କେନ୍ଦ୍ରାପଡ଼ା ଆସିବା ଉଦ୍ଦେଶ୍ୟ ଜଣାଇବା କ୍ଷଣି, ସେ କହିଲେ "ତୁମେ ଦୁହେଁ ଯାଇଁ ମୋ ବସାରେ ସାଇକେଲ ରଖ ଏବଂ ରୋଷାଇ କରୁଥିବା ପୂଝାରୀକୁ କହି ତୁମର ମିଲ୍ ପକାଅ। ଏହା କହି ମଙ୍ଗରାଜବାବୁ ନିଜର କାମରେ ଚାଲିଗଲେ। ଆଗରୁ ମୁଁ ସେ ମହାଶୟଙ୍କ ବସା ଦେଖିଥାଏ। ଏଣୁ ଦୁହେଁ ଯାଇ ବସାରେ ସାଇକେଲ ରଖିଲୁ। ଏବଂ ପୂଝାରୀକୁ ଆମର ମିଲ୍ ପକାଇବାକୁ କହି ଟାଉନ ଆଡ଼େ ଚାଲି ଚାଲି ବୁଲି ବାହାରିଲୁ। ଦିନ ୧୨ଟା ବେଳକୁ ଫେରିଦେଖିଲୁ ମଙ୍ଗରାଜବାବୁ ଆସିନାହାନ୍ତି..... କିଛି ସମୟ ପରେ ମଙ୍ଗରାଜବାବୁ ବାହାରୁ ଆସି ପହଞ୍ଚିଲେ। ଗୋଡ଼ ହାତ ଧୋଇ ଆମକୁ ଡ଼ାକିଲେ। ଆମେ ଗୋଡ଼ ହାତ ଧୋଇ ଏକତ୍ର ଭୋଜନ କରିବସିଲୁ ଖାଇବାବେଳେ ମଙ୍ଗରାଜବାବୁଙ୍କ ହସ ହସ କଥା ଆଜିବି ମନେପଡ଼ି ଯାଇ ଗଭୀର ଦୁଃଖ ପ୍ରଦାନ କରୁଛି। ଅଧା ଖାଇବା ପରେ ମଙ୍ଗରାଜବାବୁ କହିଉଠିଲେ "ଏ ଦୁଇଟା ଆମ୍ବ ଆଣ ଦୁହିଁଙ୍କୁ ଦିଅ" ମୁଁ କହିଲି ଆପଣ କ'ଣ ଖାଇବେ ନାହିଁ ? ସେ ମହାଶୟ କହିଲେ ମୁ ତ ବୁଢା ହେଲିଣି–

ତୁମେ ଖାଅ ।'

ଖାଇସାରି ଗୋଟିଏ ବଡ଼ ଖଟ ଉପରେ ମଙ୍ଗରାଜବାବୁ ବିଶ୍ରାମ ନେଲେ । ଆମେ ଦୁହେଁ ଏବଂ ତାଙ୍କ ନିଜ ଗ୍ରାମ କରିଲୋପାଟଣାରୁ ଜଣେ ଯୁବକ ଆସିଥିଲେ । ସେ ବି ସେଠାରେ ରହି ମଙ୍ଗରାଜବାବୁଙ୍କ ସହିତ କେତେକ ବିଷୟ ଆଲୋଚନା କଲେ । ମଙ୍ଗରାଜବାବୁ ଡ଼ିଆସିଲ ଓ ବିଡ଼ି ପାଇଁ ଗୋଟିଏ ଟଙ୍କା ଦେବାରୁ ମୋର ସାଥୀ ଧ୍ରୁବବାବୁ କିଣିଆଣିଦେଲେ । ମଙ୍ଗରାଜବାବୁ ବିଡ଼ି ଖାଉଥିଲାବେଳେ ଆମକୁ ପଚାରିଲେ "ତୁମେ କେଉଁ ଫଟୋଗ୍ରାଫର ପାଖକୁ ଆସିଛ" ? ମୁଁ କହିଲି "ଆପଣ ଜଣେ ଫଟୋଗ୍ରାଫର ଯୋଗାଡ଼ କରି ଦିଅନ୍ତୁ" । ମଙ୍ଗରାଜବାବୁ କହିଲେ "ଶରତ ଚନ୍ଦ୍ର ଚୌଧୁରୀ ଭଲ ଫଟୋ ଉଠାଉଛି" । ମୁଁ କହିଲି "ଆପଣ ଟିକେ ଆମ ସାଙ୍ଗରେ ତାଙ୍କ ପାଖକୁ ଗ୍ଭଲନ୍ତୁ" । ତହୁଁ ମଙ୍ଗରାଜବାବୁ କହିଲେ "ମୁଁ କ'ଣ ତା ପାଖକୁ ଯିବି, ମୁଁ ଚିଠିଲେଖି ଦେଉଛି ସେ ନିଶ୍ଚୟ ଯିବ" । ତାହା ହିଁ ହେଲା, ଶରତବାବୁ ଆମ ସ୍କୁଲକୁ ଯାଇ ଫଟୋ ଉଠାଇ ଆଣିଲେ । ମୁଁ ଆଜି ଗୋଟିଏ କଥା ମର୍ମେ ମର୍ମେ ଅନୁଭବ କରେ, ତାହା ହେଲା..... ଏତେ ବଡ଼ ଯୋଗ୍ୟ ଲୋକକୁ ଜଣେ ଫଟୋଗ୍ରାଫର୍‌ଙ୍କ ପାଖକୁ ଯିବାକୁ କହିବାଟା କେଡ଼େ ଭୁଲ୍ ହୋଇଛି ।

• • • •

# ବିପ୍ଳବୀ ମଙ୍ଗରାଜ

ମିହିର ଚରଣ ନାୟକ

ମଙ୍ଗରାଜବାବୁ ତଦାନୀନ୍ତନ ଉତ୍କଳ ବିଧାନ ସଭାର ଉପବାଚସ୍ପତି ଥିଲାବେଳେ, ମୁଁ ବହୁ ଦୁଃସ୍ଥ ଛାତ୍ରଙ୍କୁ ସଙ୍ଗରେ ଧରି, ଛାତ୍ରମାନଂକ ଶୋଚନୀୟ ଆର୍ଥିକ ଅବସ୍ଥା ଜଣାଇବାରୁ, ତାଂକର ପରଦୁଃଖ ମୋଚନ ତତ୍ପର ହୃଦୟ ବିଗଳିତ ହୋଇଯାଇଥିଲା। ତତ୍‌କ୍ଷଣାତ୍ ସେହି ଦୟାସାଗର ସ୍ୱତଃପ୍ରବୃତ୍ତ ହୋଇ ଏକଶତ ଟଂକା ଦାନ କରିଥିଲେ। ଏହାଛଡ଼ା ସେ ମୋତେ ଏବଂ ତଦାନୀନ୍ତନ ବନ୍ଧୁମାନଙ୍କୁ ବହୁକ୍ଷେତ୍ରରେ ଆର୍ଥିକ ଓ ବୈଦ୍ଧିକ ସାହାଯ୍ୟ କରିଯାଇ ଅଛନ୍ତି। ତାଙ୍କପରି ନିରଳସ, ନିରାମୃର, ସ୍ୱଦେଶବତ୍ସଳ; ଜନପ୍ରିୟ ନେତା ସଂପ୍ରତି ବିରଳ। ଅଧିକନ୍ତୁ ମୋର କଲିକତା ଅବସ୍ଥାନ ସମୟରେ ତତ୍‌ସ୍ଥିତ ଉତ୍କଳୀୟଙ୍କ ହାର୍ଦ୍ଦିକ ସହଯୋଗରେ ବିଭିନ୍ନ ସ୍ଥାନରେ ସଭାସମିତି କରାଯାଉଥିଲା। ସେହି ସଭାରେ ଭାଷଣ ପ୍ରସଙ୍ଗରେ ସ୍ୱଦେଶବତ୍ସଳ, ବାଗ୍ମୀବୀର ମଙ୍ଗରାଜ, ରଏ୍ୱଲ ଟାଇଗର ଅଫ୍ ଉତ୍କଳଙ୍କ ପ୍ରତି ଅଭୂତପୂର୍ବ, ଅଶ୍ରୁତପୂର୍ବ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜ୍ଞାପନ କରାଯାଉଥିଲା। ସେହି ଦିନର ସ୍ମୃତି ଆଜି ମାନସ ପଟରେ ଅଂକିତ ହୋଇ ରହିଅଛି। ତାଙ୍କର ଜବଜାଗରଣର ମର୍ମସ୍ପର୍ଶୀ ବାଣୀ, ଅଭୂତପୂର୍ବ ପ୍ରେରଣା, ଅନ୍ୟାୟ, ଅତ୍ୟାଗ୍ରର ଶୋଷଣ ବିରୁଦ୍ଧରେ ଅମୋଘ ଅସ୍ତ୍ର ପ୍ରୟୋଗ ଐକ୍ୟବଦ୍ଧ ସଂଗ୍ରାମର ଡାକରା ଜାତିର କାନେ କାନେ ଶୁଣାଇ ଦେଇଥିଲେ ବୀରର ତୂର୍ଯ୍ୟନାଦ ଦ୍ୱାରା। ତାଙ୍କର ବାଣୀ ଥିଲା "ବୀରବାହୁ ଉତ୍ତୋଳନ କରି, ବକ୍ଷର ଶୋଣିତ ଦେଇ ଜୀବନର ଚରମ ଲକ୍ଷ୍ୟ ହାସଲ କରିବାକୁ ସ୍ୱାଧୀନତା ଲଢେଇରେ ଅଗ୍ରସର ହୁଅ।"

ସେ ସ୍ଫୁଲିଙ୍ଗ ବର୍ଷଣକାରୀ ଜ୍ୱାଳାମୟୀ ଜୀବନ୍ତ ଭାଷାରେ କହୁଥିଲେ –.––

*'ବିଳାସ ବ୍ୟସନ ଛାଡି ହୁଅ ବ୍ରହ୍ମଚାରୀ*
*ତୁମ ପ୍ରଦୀପ ଅନଳେ ଜଳି ଉଠୁ ପୁରୀ"*

ସେ ଥିଲେ, ଉତ୍କଳ ଜନନୀର କୃତୀ ସନ୍ତାନ ଓ ବୀରପ୍ରସବିନୀ ଜନନୀର ଭାରତ ଯୋଗଜନ୍ମା ବରପୁତ୍ର

ବୋଧହୁଏ ସେ ଆଜି ଜୀବିତ ଥିଲେ ଉତ୍କଳ ଗ୍ରାମାଞ୍ଚଳର ଦୁଃଖଦୁର୍ଦ୍ଦଶାଗ୍ରସ୍ତ ଲକ୍ଷ ଲକ୍ଷ ବୁଭୁକ୍ଷୁ ନଗ୍ନ, ନିରନ୍ନ ଜନତାଙ୍କ ପାଇଁ ତାଂକର ପ୍ରାଣ ବ୍ୟଥିତ ହେଉଥାନ୍ତା।

ମହାମନା ମଙ୍ଗରାଜବାବୁଙ୍କ ସଂସ୍ପର୍ଶରେ ଆସି ଏ ଉପଲବ୍ଧି କରିଅଛି ଯେ ତାଂକପରି ତେଜସ୍ୱୀ, ଜାତୀୟ ହିତୈଷୀ ନେତା–ଯେଉଁଦିନ ଉତ୍କଳ ଜନନୀଙ୍କ ଅଙ୍କମଣ୍ଡନ କରିବେ ସେହି ଦିନର ପ୍ରତୀକ୍ଷାରେ ଉତ୍କଳବାସୀ ବୋଧେ ରହିଅଛନ୍ତି।

• • • •

# "ଷ୍ଟପ୍, ରେଡ୍, ଡେଞ୍ଜର ଆହେଡ୍"

## ଡକ୍ଟର ଭାବଗ୍ରାହୀ ମିଶ୍ର

ମଙ୍ଗରାଜ ଯଦୁମଣି ଜଣେ ଅସାଧାରଣ ମଙ୍ଗୁଆଳ ଥିଲେ । ସତେ ଯେପରି କଳା ମୁଗୁନି ପଥରରେ ଗଢା ଶରୀର । ମୋଟା ଖଦଡ଼ ଧୋତି ପୁଣି ପାଇକଛା ମରା–ଲମ୍ୱା ପଞ୍ଜାବି ସାଇକେଲ୍‌ରେ ଚଢି ବୁଲୁଥିବାର ଦେଖିଛି ।

ପୁଣି ଦେଖିଛି ବିଧାନସଭା ଗୃହରେ । ଜନସମାବେଶରେ ଆଜିର ଯୁଗରେ ଜନସାଧାରଣଙ୍କର ଭାଷା କେହି ବ୍ୟବହାର କରୁନାହାନ୍ତି–ବା କମ୍ ବ୍ୟବହାର କରୁଛନ୍ତି । କିନ୍ତୁ "ଯଦୁମଣି ମଙ୍ଗରାଜ" ଭାଷଣ ଦେଉଛନ୍ତି –କହିଲେ ଲୋକେ ତାଂକୁ ଶୁଣିବାକୁ ଧାଉଁଥିଲେ । ଆଜିକାଲିପରି ଲୋକଙ୍କୁ ଯୋଗାଡ କରି ଆଣିବା ଦରକାର ହେଉ ନଥିଲା । ବିଧାନସଭାର ସଭ୍ୟ ଥିଲେ–ପୁଣି ଥିଲେ ଉପବାଚସ୍ପତି । ଆମ ପିଲାବେଳେ କେନ୍ଦ୍ରାପଡା ଆମ କଟକିଆଙ୍କ ଆଖିରେ ଥିଲା ତଳହଟି–ଅର୍ଥାତ୍ "ମଫସଲିଆ– ବା "ମଫ"– ବା ଚୁଡ଼ା" । ଏସବୁ ସେକାଳର ଭାଷା ଗୋଟାଏ ଅଞ୍ଚଳକୁ ଚିହ୍ନେଇ ଦବାକୁ– ବା ଜଣେ ବ୍ୟକ୍ତିବିଶେଷଙ୍କୁ । ସତରେ ତାଂକ ଚେହେରା, ବେଶଭୂଷା ଦେଖିଲେ ଯେ କେହି ତାଂକୁ "ମଫ" ପର୍ଯ୍ୟାୟଭୁକ୍ତ କରିଦବା କଥା । କିଂତୁ ଉତ୍କଳ ସମ୍ମିଳନୀ କାମରେ ଓଡ଼ିଆ ଅଞ୍ଚଳରେ ବୁଲି ପ୍ରବାସୀ ଓଡ଼ିଆଙ୍କୁ ଉଦ୍‌ବୁଦ୍ଧ କରିବା କ୍ଷେତ୍ରରେ ସେ ଥିଲେ ଜଣେ ଗମ୍ଭୀର ପ୍ରକୃତିର ଲୋକ– ସିଂହନାଦୀ ଭାଷଣ– କିଂତୁ ହସେଇ, ରସେଇ ଲୋକଙ୍କୁ କନ୍ଦେଇ ପାରୁଥିଲେ, ହସେଇ ପାରୁଥିଲେ । ବିଧାନସଭାରେ ଉପବାଚସ୍ପତି ଆସନରୁ ସେମିତିଆ ମନ୍ତବ୍ୟର ତାଲିକା ମିଳିବ– "ବିଧାନସଭା ବିବରଣୀରେ ଥିବ" । କିନ୍ତୁ ଆଜିକାଲି ସେ ସବୁ ପଢିବାକୁ କାହାର ବା ବଳବୟସ ଅଛି ନା ବେଳ ଅଛି ।

କିନ୍ତୁ "ଯଦୁମଣି ମଙ୍ଗରାଜ" କ'ଣ ସତରେ ଭୁଲି ହୋଇଯିବେ ? ସେ କଥା ଆପଣମାନେ ବିଗ୍ୱର କରିବେ– ତାଙ୍କୁ କିମିତି ମନେ ରଖିବେ–ସ୍ମରଣିକାଟିଏ ଛାପିଦେଇ– ମୂର୍ତ୍ତୀଟିଏ ରଖିଦେଇ । ତେବେ ସେ ଯେଉଁ "କଥା କହି" ଜନମନ ହରଣ କରୁଥିଲେ– ସେଗୁଡିକ ସଂକଳନ କରିବ କିଏ ? ଗବେଷକମାନେ କାହିଁକି ବା "ଯଦୁମଣି ମଙ୍ଗରାଜଙ୍କୁ" ମନେପକେଇବେ ।

ଗୋଟିଏ ଛୋଟିଆ ଉଦାହରଣ ଦେଇ ମୋର ଶ୍ରଦ୍ଧାଞ୍ଜଳି ଜଣେଇବି । ପ୍ରଥମ ନିର୍ବାଚନ (ସମସ୍ତଙ୍କ ଭୋଟରେ– ତା' ପୂର୍ବରୁ ଚୌକିଦାରୀ ଟିକସ୍ ଥିଲାବାଲା ଭୋଟ ଦେଉଥିଲେ । ସ୍ଥାନ–ବଡଚଣା । ମୁଁ ସେତେବେଳେ କଲେଜ ଛାତ୍ର । ଆମ ନେତା ଗୋବିନ୍ଦ ଦାସ ଏବେ ବାରିଷ୍ଟର– ସାରା ବଡ଼ଚଣା ଥାନାରେ ପାଦରେ ଗ୍ୱଲି ଗ୍ୱଲି–ଚୁଡା ମୁଢି ଖାଇ ଆମେ "ନିର୍ବାଚନରେ ପ୍ରଗ୍ୱର କରୁଥାଉ"–ନବକୃଷ୍ଣ ଚୌଧୁରୀଙ୍କ ବିରୁଦ୍ଧରେ– ଆମର ସମର୍ଥିତ ପ୍ରାର୍ଥୀ ଥା'ନ୍ତି "କୁଳମଣି ମହାପାତ୍ର" (ପରେ ଡକ୍ଟର ହେଲେ) । ବିଭିନ୍ନ ଗାଁରେ ବୁଲି ପ୍ରଗ୍ୱର ଚଳେଇଥାଉ । ହାତରେ ସେ କାଳର "ନାଲିପତାକା"–ସମାଜବାଦୀ ପାର୍ଟିର । ହଠାତ୍ ଭେଟ ହୋଇଗଲା– କୌଣସି ଏକ ଗାଁରେ–ନଈକୂଳ ପଡିଆରେ ଭାଷଣ ଆମର ସରିଯାଇଥାଏ (ବୋଧହୁଏ ଆରେଇକଣା କି ବାଇଶିମଉଜା–ଏମିତି କେଉଁଠି ହେବ) । "ଯଦୁମଣି ମଙ୍ଗରାଜ" ସ୍ୱାଧୀନ ଜନସଂଘ, ପ୍ରାର୍ଥୀ–ନା ମନେନାହିଁ (ଡାକ୍ତର ଜଗନ୍ନାଥ ଦାସ

ହେବେ କି ?) ତରଫରୁ (କିମ୍ବା ନିଜେ ପ୍ରାର୍ଥୀ) ପ୍ରଶ୍ନର କଢ଼ିବାକୁ ଯାଇଥାନ୍ତି। ଆମ ସଭା ସରିଲା-ସେ ଆସିଲେ ବକ୍ତୃତା ଦବାକୁ-ଭାଷଣ ଆରମ୍ଭ କଲେ ଆମକୁ ଇଂଗିତ କରି-"ଷ୍ଟପ୍, ରେଡ, ଡେଞ୍ଜର ଆହେଡ୍"। ବୁଝେଇଦେଲେ ତାଂକ ସ୍ୱଭାବସୁଲଭ ଭାଷାରେ-ଏହି ସମାଜବାଦୀଆଙ୍କୁ ସାବଧାନ ଥିବ- ରେଳଲାଇନ୍‌ରେ ସିଗ୍ନାଲ ଦିଆ ହୋଇଥାଏ-ଆଗରେ ନାଲିବତି -ତେଣୁ ଗାଡ଼ି ବନ୍ଦ କରିବାକୁ ପଡ଼ିବ- ନମାନିଲେ ବିପଦରେ ପଡ଼ିବ।

ଏବେ ମନେହେଉଛି, ସେ ଜଣେ "ଦୂରଦ୍ରଷ୍ଟା" ଥିଲେ। ତା' ନହେଲେ "ସମାଜବାଦୀ"ମାନେ ଦେଶକୁ ଯେଉଁ ବିପଦରେ ପକେଇ ଦେଇଛନ୍ତି- ସେ କଥା ସେ ଏତେ ଆଗରୁ କିମିତି ଜାଣିପାରିଥିଲେ ?

ଏମିତିଆ ନିରହଂକାରୀ, "ମାୟାମୁକ୍ତ", ସରଳ, ତରଳ, ନରମ ମଣିଷଟିଏ ପାଇବା ଏ ଯୁଗରେ ବିରଳ। କିଂତୁ ତାଂକର ହୃଦୟଟା ଥିଲା କଠିନ- ନିଷ୍ଠୁରି ନେଲାବେଳେ।

ସେ ଖଣ୍ଡାୟତ କୁଳରେ ଥିଲେ- ଅନ୍ତତଃ ପ୍ରଗଲ୍‌ଭା ବାକ୍ୟରାଶି ପୋଷିବାରେ ଓସ୍ତାଦ୍। ତାଙ୍କର "ଖଣ୍ଡା" ଥିଲା ଭାଷା-ଜନତାର ଭାଷା। ସେହି "ଭାଷା" ପ୍ରୟୋଗରେ ସେ କେତେ ଲୋକଙ୍କୁ ଯୁଦ୍ଧରେ ହରେଇଛନ୍ତି, ତାର ଇୟତ୍ତା ନାହିଁ। ତାଙ୍କରି ଭଳିଆ ବିଧାୟକ। ଉପବାଚସ୍ପତି ଆଉ ଦି'ଗଣ୍ଡା ବାହାରିଲେ ବୋଧହୁଏ- ଆମ ସାମାଜିକ ବିଧାନସଭାର ପରଂପରାରେ ଯେଉଁ ଅବକ୍ଷୟ ଘଟିଗ୍ଲିଛି ସେଥିରୁ ଉଦ୍ଧାର ପାଇଯାନ୍ତେ। ତେଣୁ ତାଂକରି ଭଳିଆ "ଭାଷା- ଅସ୍ତ୍ର"ର ଅଧିକାରୀ ଖଣ୍ଡାୟତ ଆମ ରାଜନୀତିରେ ବହୁତ ବହୁତ ଲୋଡ଼ା- ଯିଏ ହସେଇ ପାରିବ, ରସେଇ ପାରିବ- ପୁଣି ସେହି କଥା-ବାଣରେ "ମରମ ଦହିପାରିବ"। ସେଇଥିପାଇଁ ଯଦୁମଣି ମଙ୍ଗରାଜଙ୍କୁ ନମସ୍କାର ଜଣାଉଛି।

• • • •

*ଈଶ୍ବର ସର୍ବତ୍ର ଅଛନ୍ତି। ଏଣୁ ସେ ଆମକୁ ପଥର, ବୃକ୍ଷ, ଜନ୍ତୁ, ପଶୁ, ପକ୍ଷୀ ଇତ୍ୟାଦିଙ୍କ ମାଧ୍ୟମରେ କଥା କହନ୍ତି।*

-ବାପୁଜୀ

# ପୁରୁଷସିଂହ ଯଦୁମଣି

ଆର୍ଯ୍ୟକୁମାର ଜ୍ଞାନେନ୍ଦ୍ର

ଓଡ଼ିଶାର ଜନଗଣଙ୍କୁ ଯଦୁମଣି ଭିନ୍ନ ଭାବରେ ଦେଖିଥିଲେ, ଏଣୁ ଓଡ଼ିଆ ଜାତୀୟ ଜୀବନରୁ ହୀନମନ୍ୟତା ଦୂର କରିବାକୁ ସେ ସବୁବେଳେ ଆହ୍ୱାନ ଦେଉଥିଲେ । ଜାତିର ପିତା ମହାତ୍ମାଜୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସେ କଠୋର ବିଦେଶୀ ଶାସନ ବିରୁଦ୍ଧରେ ଦେଶବାସୀଙ୍କୁ ସଂଗଠିତ କରିବାରେ ଆତ୍ମନିୟୋଗ କରିଥିଲେ । ତାଙ୍କର ମହନୀୟ ଆଦର୍ଶ ଆଜିର ଯୁବପିଢ଼ିଙ୍କ ନିକଟରେ ପହଞ୍ଚି ପାରିନାହିଁ । ଜାତୀୟ କବି ବାଞ୍ଛାନିଧି ମହାନ୍ତିଙ୍କର ଗୋଟିଏ ପଦକୁ ସେ ସବୁବେଳେ କହୁଥିଲେ-

*"ନମିଳୁ ପଛକେ ମଣ୍ଡା ଗଇଁଠା*
*"ନଗ୍ରଟ କୁକୁର ପରି ଅଇଁଠା*
*ଖିରି ପିଠା ସଙ୍ଗେ ନମିଳୁ ଭେଟ*
*ହୀନବୃତ୍ତି ଧରି ନପୋଷ ପେଟ" ॥*

ଉପରୋକ୍ତ ପଂକ୍ତିରୁ ତାଙ୍କ ସ୍ୱାଭିମାନର ସ୍ପଷ୍ଟ ପରିଚୟ ମିଳିଥାଏ । ତାଙ୍କର ଓଡ଼ିଆପ୍ରୀତି ଥିଲା ଅଭୂତପୂର୍ବ, ଯାହା ଆଜିର ସମାଜରେ ଦେଖାଯାଏନା । ତାଙ୍କର ଓଡ଼ିଆପ୍ରୀତି ଦେଖି ପଣ୍ଡିତ ଉତ୍କଳମଣି ଗୋପବନ୍ଧୁ, ଉତ୍କଳଗୌରବ ମଧୁସୂଦନ ପ୍ରମୁଖ ଚକିତ ହୋଇଯାଉଥିଲେ । ଓଡ଼ିଆ ଭାଷାଭାଷୀ ଅଞ୍ଚଳର ମିଶ୍ରଣ ପାଇଁ ମେଦିନୀପୁରଠାରୁ ଆରମ୍ଭ କରି ଦକ୍ଷିଣରେ ପାରଳାଖେମୁଣ୍ଡି ଅଞ୍ଚଳରେ ଯେଉଁ ବଜ୍ର-ଗମ୍ଭୀର ଭାଷଣ ଦେଉଥିଲେ ସେଥିରେ ଓଡିଆମାନେ ତାତି ଉଠୁଥିଲେ ଓ ଅନ୍ୟ ଭାଷାଭାଷୀ ଲୋକେ କ୍ରୋଧାନ୍ୱିତ ହୋଇ, ଉତ୍କ୍ଷିପ୍ତ ହୋଇପଡି ଆକ୍ରମଣ କରିବାକୁ ପଛାଉ ନଥିଲେ, ଯାହାର ଶିକାର ଅନେକ ସମୟରେ ଯଦୁମଣିବାବୁ ହେଉଥିଲେ; କିଂତୁ ସେ ଥିଲେ ପୁରୁଷସିଂହ ଶାରୀରିକ ଆକ୍ରମଣରେ କେଉଁଠି ଭାଙ୍ଗିପଡିନାହାନ୍ତି । ଗଭୀର ଆତ୍ମବିଶ୍ୱାସର ସହ ପ୍ରତ୍ୟେକଟି କାର୍ଯ୍ୟକୁ ସାହାସର ସହ ମୁକାବିଲା କରିଛନ୍ତି । ଏକ ସୁପ୍ତ ଜାତିର ପ୍ରାଣରେ ଆଣିଥିଲେ ମହାନ୍ ଜାଗରଣର ସ୍ପନ୍ଦନ । ତାଙ୍କର ସମର୍ପିତ ଜୀବନ ଓ ଅଦମ୍ୟ କର୍ମପ୍ରେରଣା ଓଡିଆ ଜାତିର ପ୍ରେରଣାର ଉତ୍ସ ହୋଇ ରହିବ । ସେହି ପୁରୁଷସିଂହଙ୍କୁ ଶତନମସ୍କାର ଜଣାଉଛି ।

କଂଗ୍ରେସ ଭବନ,
ଭୁବନେଶ୍ୱର

• • •

# ଅଭୁଲା ପ୍ରତିଭା

ଅଜୟ କୁମାର ମହାନ୍ତି

୧୯୬୦ ମସିହାର କଥା । ଆମ ଗାଁ କରିଲୋପାଟଣା ଜୟରାମ ହାଇସ୍କୁଲର ମୁଁ ଛାତ୍ର ଥାଏ। ସେଦିନ ୧୦ଟା ବେଳେ ଖେଳଛୁଟି । ଆମେ ସମସ୍ତ ପିଲାମାନେ ସ୍କୁଲକୁ ଲାଗିଥିବା ହାଟପଡ଼ିଆ ପାଖରେ ଜମା ହୋଇଥାଉଁ। ସେହି ସମୟରେ ନାତୀଦୀର୍ଘ କିନ୍ତୁ ସୁସ୍ଥସବଳ ଜଣେ ବ୍ୟକ୍ତି ଆମ ଆଡ଼କୁ ଆସିଲେ । ମୁଁ ତାଂକ ମୁହଁକୁ ଅନାଇଁଥାଏ । ସେ ମୋ ଆଡ଼କୁ ଆସି ମୋ ପିଠି ଉପରେ ହାତବାଡ଼େଇ କହିଲେ 'ଆରେ ଟୁଅ ତୁ କେତେ ବାଟ ଡେଉଁଛୁ ଡେଇଁଲୁ ।" ମୁଁ ଟିକିଏ ଅପ୍ରସ୍ତୁତ ମନେକଲେ ହେଁ ତାଙ୍କ କଥାକୁ ମାନିବାକୁ ଦଉଡି ଦଉଡ଼ି ଡେଇଁଲି । ଅନ୍ୟ ପିଲାମାନେ ମଧ୍ୟ ଡେଇଁଲେ । ସେ କହିଲେ, 'ତୁମେମାନେ ପିଲା, ଦେହରେ ତୁମର ଅମାପ ବଳ । ବର୍ତ୍ତମାନ ତମେ ୨୧ ହାତ ଡେଇଁବା କଥା ।' କହୁ କହୁ ଦଉଡିଆସି କୁଦିପଡ଼ିଲେ । ସେ ଏକା କୁଦାରେ ୨୧ ହାତରୁ ଅଧିକା ଡେଇଁପଡିଲେ, ଯାହାପରେ ଆମର ଶିକ୍ଷକମାନେ ଯାଇ ଦେଖିଲେ । ସେ ହେଉଛନ୍ତି ସ୍ୱର୍ଗତ ଯଦୁମଣି ମଙ୍ଗରାଜ ।

କେବଳ ଓଡ଼ିଆ ନୁହେଁ ଅନେକ ପ୍ରାନ୍ତୀୟ ଭାଷାରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ସେ କେଉଁ ଭାଷାଭାଷୀ ଶ୍ରେଣୀର ଲୋକ ବୋଲି ଓଡ଼ିଶା ବାହାରେ ରହୁଥିବାବେଳେ ଲୋକେ ମଧ୍ୟ ଜାଣିପାରୁ ନଥିଲେ । ଥରେ ବଙ୍ଗଳାରେ ରହୁଥିବାବେଳେ ଜଣେ ବଙ୍ଗାଳୀ ଭଦ୍ରଲୋକ ତାଙ୍କୁ ହିନ୍ଦୀ, ପଞ୍ଜାବୀ ଓ ବଙ୍ଗଳା ପ୍ରଭୃତି ଭାଷାରେ କଥାବାର୍ତ୍ତା କରୁଥିବାର ଲକ୍ଷ୍ୟ କରି ତାଙ୍କ ମାତୃଭାଷା କ'ଣ ବୋଲି ଜାଣିବାକୁ କୌତୂହଳୀ ହୋଇଥିଲେ । ସେ ମଙ୍ଗରାଜବାବୁଙ୍କୁ ଖୁବ୍ ଜୋର୍‌ରେ ଠେଲିଦେଇଥିଲେ ଏବଂ ସେ ସମୟରେ ମଙ୍ଗରାଜବାବୁ ମାଆଲୋ ବୋଲି ପାଟି କରିଥିଲେ । ସେଥିରୁ ସେ ତାଙ୍କୁ ଓଡିଆ ବୋଲି ଜାଣିଥିଲେ ।

ତାଙ୍କ ଲକ୍ଷ୍ୟ ଥିଲା ସୁଦୂରପ୍ରସାରୀ, ଦୁର୍ଦ୍ଧର୍ଷ ହୁଅ, ତୁମେ ଶକ୍ତିଶାଳୀ ହୁଅ, ନିଜେ ବଡ଼ ହୁଅ, ଅନ୍ୟକୁ ଭଲକରି ଗଢି ଥୁଅ । ନିଜେ ପଂଗୁ ହେଲେ ସମଗ୍ର ଦେଶ ପଙ୍ଗୁ ପାଲଟିଯିବ ବୋଲି ସେ କହୁଥିଲେ ।

• • •

# ପିଲାମନରେ ମଙ୍ଗରାଜୀ କୁହୁକ

କରୁଣାକର ପରିଡ଼ା

ଏ ୧୯୩୭ ମସିହା। ଏପ୍ରିଲ-ମେ ମାସର ସ୍ମୃତି ଏଇଟି ଭୋଟ ଜରିଆରେ ପ୍ରଥମ ସାଧାରଣ ନିର୍ବାଚନ ବର୍ଷ। ଚ୍ରାରିଆଡ଼େ ଦି' ଧାଡ଼ିଆ ନିର୍ବାଚନ ପ୍ରଚାରପତ୍ର ଲେଖାଥିଲା। "କଂଗ୍ରେସ ଦେଶର ପ୍ରକୃତ ସେବକ, କଂଗ୍ରେସ ଲୋକଙ୍କୁ ଭୋଟଦିଅ"। କର୍ମୀମାନଙ୍କର ଚ଼ମତ୍କାର ଗୀତ ସହିତ ଗାଁ ଗାଁର ଛକମାନଙ୍କରେ, ଛୋଟ ଛୋଟ ପଥପ୍ରାନ୍ତ ପ୍ରଚ୍ରାର ସଭା ଲାଗି ରହିଥାଏ। ସ୍କୁଲ ସାରି ଆମେ ସବୁ ପିଲା, ଗହଳି ବଢ଼ାଉଥାଉ। ସେ ସବୁ ସଭାମାନଙ୍କରେ ଖୁସିରେ ନାଚ଼ିବା, ଡେଇଁବା, ସ୍ଲୋଗାନ ବୋଲିବା ଆମ କାମ। କିଛି ନ ବୁଝିଲେ ବି ମଜା ଲାଗୁଥାଏ।

ହଠାତ୍ ଦିନେ ପ୍ରଚ୍ରାର ହେଲା,-ପ୍ରଖ୍ୟାତ ସଂଗ୍ରାମୀ ନେତା, ସମଗ୍ର କେନ୍ଦ୍ରାପଡ଼ା ସବ୍‌ଡିଭିଜନର କଂଗ୍ରେସ ସଂଗଠକ ଯଦୁମଣି ମଙ୍ଗରାଜ, ଏକ ବିରାଟ ଜନସଭାରେ ଭାଷଣ ଦେବେ। ପନ୍ଦର ଦିନ ପୂର୍ବରୁ ଏ ପ୍ରଚ୍ରାର ଚ୍ରାଲିଥାଏ। ସ୍କୁଲ ସାମନା ପଡିଆରେ ଏ ସଭା ହେବ। କଂଗ୍ରେସ ନେତାମାନେ ନାନା ଆଲୋଚ଼ନା କରିବାର ଶୁଣୁ। ସେମାନେ ଖାଲି, 'ମଙ୍ଗରାଜ' 'ମଙ୍ଗରାଜ' ହେଉଥାନ୍ତି।

କିଏ ଏ ମଙ୍ଗରାଜ !

ପନ୍ଦର ଦିନ କାଳ ଶୁଣି ଶୁଣି ମଙ୍ଗରାଜଙ୍କୁ ଦେଖିବାର ଇଚ୍ଛା ପ୍ରବଳରୁ ପ୍ରବଳତର ହେଉଥାଏ। ସେ ଦିନ ଆସିଗଲା। ଆଠଦିନ ହେଲା ମଞ୍ଚବନ୍ଧା ଚ୍ରାଲିଥାଏ। ସଭାଦିନ, ଦିନ ତିନିଟା ବେଳକୁ ଏକ ଜିପ୍ ଗାଡିରେ ମଙ୍ଗରାଜବାବୁ ତାଙ୍କ ସାଥୀମାନଙ୍କ ଗହଣରେ ଆସି ପହଞ୍ଚିଗଲେ। ଦିନ ବାରଟାବେଳୁ, ସଭାସ୍ଥଳରେ ରାଜଗଡ ଆଖପାଖର ଷାଠିଏ ସତୁରି ଖଣ୍ଡ ଗାଁର ଲୋକେ ଆସି ଜମା ହେବାକୁ ଆରମ୍ଭ କରିଦେଇଥାନ୍ତି। କେନ୍ଦ୍ରାପଡା ସହର, ବଳଦେବ ଜୀଉ ମନ୍ଦିର ଅଞ୍ଚଳର ବି ବହୁଲୋକ ସେ ସଭାକୁ ଆସିଥାନ୍ତି। ଆଜିକାଲି ପରି ବହୁ ବସ୍, ଜିପ୍, ଟ୍ରେକର ପ୍ରଭୃତିର ଗନ୍ଧ ନଥିଲା। ଲୋକେ ବହୁଦୂରରୁ ଚ୍ରାଲି ଚ୍ରାଲି ଆସିଥିଲେ। ଚ୍ରାରିଆଡ଼େ ଲୋକ, ଖାଲି ଲୋକ। ଲୋକ ସମୁଦ୍ର ପରି ଦିଶୁଥାଏ। ସୋରିଷଟିଏ ପଡିବାକୁ ଟିକିଏ ଠାବ ବି ନଥାଏ। ମହାତ୍ମା ଗାନ୍ଧୀ, ଜବାହରଲାଲ ନେହେରୁ, ହରେକୃଷ୍ଣ ମହାତାବ, ନବକୃଷ୍ଣ ଚୌଧୁରୀ, ଯଦୁମଣି ମଙ୍ଗରାଜ ପ୍ରଭୃତି କଂଗ୍ରେସ ନେତାମାନଙ୍କ ଜୟଜୟକାରରେ ସଭାସ୍ଥଳଟି ଘଡ଼ଘଡ଼ି ନାଦରେ କମ୍ପୁଥାଏ।

ସଭା ଆରମ୍ଭ ହେଲା। ମଞ୍ଚ ଉପରେ ଯଦୁମଣି ମଙ୍ଗରାଜ, ଅଦ୍ୱୈତ ବଲ୍ଲଭ ରାୟ ଓ ଅନ୍ୟମାନେ ଥିଲେ । ଦୁହେଁ ଆଜି ଅବର୍ତ୍ତମାନ। ସଭା ଆରମ୍ଭରେ ଅଦ୍ୱୈତ ବଲ୍ଲଭ ରାୟ, ଅତି ଚମତ୍କାର କଣ୍ଠରେ ଉଦ୍‌ଘାଟନୀ ସଂଗୀତଟିଏ ଗାନ୍ କଲେ। ସଂଗୀତର ଭାବ ଚମତ୍କାର ଏବଂ ଅତି ହୃଦୟସ୍ପର୍ଶୀ । ତାହା ହେଲା-

*"କହ କହ କେଉଁ ଜାତି ପାଇଛି ମୁକତି,*
*କରି ହାରି ତୁରି ଗୁହାରି,*
*କହ ପାଇଛି କେ ସୁଖ, ଲିଭାଇଛି ଦୁଃଖ,*
*ମାଗି ମାଗି ପଥ ଭିକାରି ?*
*ଯେବେ ବାଘ ମୁହେଁ ପଡ଼େ ଶିକାର,*
*ମିନତିରେ ପାଏ କି ସେ ଉଦ୍ଧାର ?*
*ଛାଡେ କି ଧୀବର ମୀନକୁ ଜାଲରୁ,*
*ଯେବେ ଆପେ ନଯାଏ ସେ ବାହାରି ?*

ଗୀତର ତାନରେ ବଣୁଆ ହାତୀ ବି ମାତିଉଠିବ। କେତେ ନା କେତେ ହଜାର ଲୋକଙ୍କର ଏ ସଭା। ଏକାବେଳକେ ସଭାସ୍ଥଳ ନୀରବ, ନିଶ୍ଚଳ । ପରେ ପରେ ସାଥୀ ନେତାମାନଙ୍କର ଗରମାଗରମ ବକ୍ତୃତା ଚାଲିଲା। ଶେଷରେ ମଙ୍ଗରାଜବାବୁଙ୍କୁ ସଭାପତିଙ୍କ ଡାକରା ଆସିଲା। ଲୋକଙ୍କ ଘନ ଘନ କରତାଳି, ହରିବୋଲ, ହୁଳହୁଳି ଭିତରେ ସେ ଉଠିଲେ। ଏବେ ବି ସେତେବେଳର ଶିହରଣ କଥା ମନେପଡ଼ିଯାଉଛି। ଭାଷଣ ଚାଲିଲ। କାହାପାଇଁ ସେ ନିର୍ବାଚନ ଭାଷଣ ମୋର ଠିକ୍ ମନେ ନାହିଁ। ଭାଷଣ ଥିଲା ଜ୍ୱାଳାମୟୀ। ତାଙ୍କ ସ୍ୱରରେ ଘଡଘଡି ନାଦ। ସେ ଭାଷାର ମର୍ମ ବୁଝନ୍ତୁ ନ ବୁଝନ୍ତୁ ପିଲାଠୁଁ ବୁଢା ପର୍ଯ୍ୟନ୍ତ ସମସ୍ତେ ନୀରବରେ ଶୁଣୁଥାନ୍ତି। ସେ ଭାଷଣର କିଛି କିଛି ଛାପ ମୋ ମନରେ ଏବେବି ରହିଯାଇଛି। ତାର ଏକ ସଂକ୍ଷିପ୍ତ ମର୍ମ ହେଲା-ପୃଥିବୀର ଅତି ସଂସ୍କୃତିସମ୍ପନ୍ନ ଦେଶ ଆମ ଭାରତ। ଆଜି ପରାଧୀନ, ପ୍ରବଳପ୍ରତାପୀ ଇଂରେଜ କବଳରେ ଏହା ଆଜି ଏକ ଉପନିବେଶ। ନାନା ବିଭିନ୍ନତାର ଖୋଳ ଭିତରେ ବି ଆମେ ଚାଳିଶ କୋଟି ଜନତା ଆଜି ମୁକ୍ତିପାଗଳ। ଆମେ ମୁକ୍ତ ହେବୁ। ଆମ ହାନିଲାଭ ଆମେ ବୁଝିବୁ। କେବଳ କଂଗ୍ରେସ ହିଁ, ଦେଶକୁ ସେ ମୁକ୍ତି ଆଣିଦେବ। ଶ୍ରୋତା ଜନତାର ଘନ ଘନ କରତାଳି, ସମର୍ଥନ ମାତ୍ର।

ସମୟ ବଦଳିଗଲା। ମୁଁ ସ୍କୁଲ ଛାଡି କଟକ କଲିଜିଏଟ୍ ସ୍କୁଲକୁ ଆସିଲି। ସେତେବେଳେ ମାଟ୍ରିକ ପରୀକ୍ଷାର୍ଥୀମାନେ ପାଟନା ବିଶ୍ୱବିଦ୍ୟାଳୟ' ପରୀକ୍ଷା ସାରି, ମାର୍ଚ୍ଚ ଆରମ୍ଭରେ ହଷ୍ଟେଲ ଛାଡନ୍ତି। ଏଣୁ ସ୍କୁଲ ହଷ୍ଟେଲରେ ଜାଗା ନଥିଲା। ମୁଁ ରାଜାବଗିଚା ଖଣ୍ଡାୟତ -(କ୍ଷତ୍ରିୟ) ମେସ୍‌ରେ ରହିଲି। ଅନେକ ସମୟରେ ମଙ୍ଗରାଜବାବୁ ମେସ୍‌କୁ ଆସନ୍ତି। କେବଳ ଦୂରରୁ ଦେଖେଁ। ଏତେବଡ଼ ଲୋକଙ୍କୁ ମୋର କି ପରିଚୟ ଦେବି ? ପରେ ପରେ କଲିଜିଏଟ୍ ସ୍କୁଲ ହଷ୍ଟେଲକୁ ଗଲି। ଏ ସମୟ ଭାରତର ସ୍ୱାଧୀନତାର ପ୍ରାକ୍‌କାଳ। ଦ୍ୱିତୀୟ ବିଶ୍ୱଯୁଦ୍ଧ ଚାଲିଥାଏ।

୧୯୪୫-୪୬ । ଦ୍ୱିତୀୟ ବିଶ୍ୱଯୁଦ୍ଧର ପରେ ବ୍ୟବସ୍ଥା। ସ୍ୱାଧୀନତାପ୍ରାପ୍ତି ପଦ୍ମ ଘୁଞ୍ଚୁ ଘୁଞ୍ଚୁ ଯାଉଥାଏ। କଂଗ୍ରେସ ନେତାମାନେ ଜେଲରେ ପଶୁଥାନ୍ତି। ବାହାରୁଥାନ୍ତି। ସଭାସମିତି କରୁଥାନ୍ତି। ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ପବିତ୍ର ମୋହନ ପ୍ରଧାନ, ସାରଙ୍ଗଧର ଦାସ, ଯଦୁମଣି ମଙ୍ଗରାଜ ପ୍ରଭୃତିଙ୍କ କଟକ ସଭାକୁ ଯିବାକୁ ଶତକଡା ଶଏ ମନ ହେଉଥାଏ। କିନ୍ତୁ ହଷ୍ଟେଲ ତତ୍ତ୍ୱାବଧାରକଙ୍କ ବାରଣ। ଆମେ ସବୁ ଏକରକମ ବନ୍ଦୀ। ପାଠଶାଠକୁ ଗୁଲିମାର୍ ଭାବ ଆସୁଥାଏ। ଦିନ୍ ସ୍କୁଲ ପରେ, ଖେଳପଡିଆ କାମ ସଇଲେ, ପୁଣି ମୁଣ୍ଡ ଗଣତି ହାଜିରା ଡାକରା। ମନ ଚାହୁଁଥାଏ ବାହାରର ଆଲୋକ, କିନ୍ତୁ କର୍ମରେ ଲେଖାଥାଏ ଅନ୍ଧକାର ଗୃହର ବନ୍ଧନ। ସର୍ବୋପରି ନବକୃଷ୍ଣ ଚୌଧୁରୀ ଏବଂ ଯଦୁମଣି ମଙ୍ଗରାଜଙ୍କ ଭାଷଣ ଶୁଣିବାକୁ ପ୍ରାଣ ଆକୁଳ ହୁଏ। ସେଇ ଅନନ୍ୟ ଦୁଇ ସଂଗ୍ରାମୀ ନେତାଙ୍କ କଥା ଦି'ପଦରୁ ବଞ୍ଚିତ ହେବା କଥା ଭାବିଲେ, ମନଟା ଖାଲି ବିକଳରେ ଛଟପଟ ହେଉଥାଏ। ଆଜି ଏ ଲେଖା ଜରିଆରେ ପ୍ରକାଶ କରୁଛି, ମୋ ନିଜର ବହୁ ଅଜଣା ଏକ ଗୁପ୍ତକଥା। ଶେଷ ବର୍ଷରେ ମୁଁ କଲିଜିଏଟ୍ ସ୍କୁଲ ହଷ୍ଟେଲର ବଡ ପ୍ରିଫେକ୍ଟ। ସଂଧ୍ୟା ଛ'ଟାରେ ପ୍ରାର୍ଥନା ପୂର୍ବରୁ ମୁଁ ସମସ୍ତଙ୍କ ହାଜିରା ନିଏ। ହାଜିରା, ପ୍ରାର୍ଥନା ପରେ ପାଠପଢା ନିର୍ଘଣ୍ଟ। ଅଢ଼େଇ ଘଣ୍ଟା ପରେ ଖାଇବା ଘଣ୍ଟା। ପାଠପଢ଼ା ନିର୍ଘଣ୍ଟ ଭିତରେ କେହି କାହାରି କୋଠାରିରେ ପ୍ରବେଶ ପୂରା ନିଷିଦ୍ଧ । ଏ ଏକ ସୁବିଧା ଯୋଗେଇଲା। ମୋର ଏକ ଏକୁଟିଆ କୋଠରି। ମହାନ୍ ନେତାଦ୍ୱୟଙ୍କର ମିଟିଂ କେବଳ କଟକ ମ୍ୟୁନିସିପାଲିଟି ପଡ଼ିଆରେ ଥିବା ଦିନ, ମୁଁ ଗୁପ୍ତରେ ମିଟିଂ ଯିବାକଥା ଠିକ୍ କଲି। ମୋ ରୁମ୍‌ର ବାହାରପାଖ କାଠ ଝରକାର ଗୋଟିଏ କାଠି ସୁବିଧାରେ ବାହାରି ପାରିବାର ବ୍ୟବସ୍ଥା କରି କାଠିର ମୂଳ ଚାରିପାଖ ଜଣାନପଡିବା ଭଳି ଖୋଳି ଦେଇଥାଏ। ମିଟିଂ ଦିନ ମୋ ଗୁପ୍ତ ବାଟରେ ଯା'ଆସ କରେ । ମୁଣ୍ଡ ଢ଼ାଙ୍କି ଭାଷଣ ଶୁଣେ। ଭାଷଣରୁ ମନ ଛାଡିନଥିଲେ ବି, ହଷ୍ଟେଲର ଖାଇବା ଘଣ୍ଟା ବାଜିବା ପୂର୍ବରୁ ହଷ୍ଟେଲ ଧରିବାକୁ ବାଧ୍ୟ । ଥରେଅଧେ ଫେରିବାରେ ଟିକେ

ଡେରି ହୋଇଗଲେ, ଜଣେ ଦି'ଜଣ ଅନ୍ତରଙ୍ଗ ବନ୍ଧୁ ସାଙ୍ଗମେଳରେ ଖାଇବାଘରକୁ ଯିବାକୁ ଡାକିଆସନ୍ତି। ବାହାରୁ କବାଟ ବାଡେଇ ବାଡେଇ ଶୋଇପଡିଛି ବୋଲି ସନ୍ଦେହ କରନ୍ତି। ବୁଲିପଡି ବାହାରପାଖ ଝରକା ଖୋଲା ଅଛି କି ବୋଲି, ଦେଖିବାକୁ ଆସିବାବେଳକୁ, ଦେଖନ୍ତି ମୁଁ ବାହାରେ। ଏ କେମିତି?

ଜୀବନର କାର୍ଯ୍ୟକାଳ ଭିତରେ ବିଭିନ୍ନ ସ୍ଥାନରେ ରହଣି ଜୁଟିଛି। ସମୟକ୍ରମେ ମଙ୍ଗରାଜଙ୍କ ପୁଅ, ଝୁଡୁରା, ଝିଅ ଜୋଇଁଙ୍କ ସହିତ ବ୍ୟକ୍ତିଗତ ସମ୍ପର୍କ ଓ ବନ୍ଧୁତା ଘନିଷ୍ଠ ହୋଇଛି। ଏବେ ଆମେରିକାରେ ପିଲାପିଲି ସହ ରହୁଥିବା ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ବୈଜ୍ଞାନିକ ଡକ୍ଟର ଦୁର୍ଯ୍ୟୋଧନ ମଙ୍ଗରାଜ ମୋର ଜଣେ ଅନ୍ତରଙ୍ଗ ଶ୍ରେଣୀ ସାଥୀ। ଆରମ୍ଭରେ ଖଣ୍ଡାୟତ ମେସ୍‌ରେ ବଡଭାଇ ନିତ୍ୟାନନ୍ଦ ମଙ୍ଗରାଜଙ୍କ ସହିତ କିଛିମାସ ରହିଥିଲି। ତାଙ୍କ ପ୍ରବୋଧ (ପ୍ରବ) ଚୌଧୁରୀ ପାଠପଢ଼ାବେଳେ ମିନର୍ଭା ମେସ୍‌ରେ ଥିଲା ଅତ୍ୟନ୍ତ ଶ୍ରଦ୍ଧେୟ କନିଷ୍ଠ ଅନ୍ତେବାସୀ। ବହୁବାର ମଙ୍ଗରାଜବାବୁ ପ୍ରବୋଧକୁ ଭେଟିବାକୁ ମେସ୍‌କୁ ଆସନ୍ତି ଦେଖାହୁଏ। ଏକମାତ୍ର ଝିଅ ସଂଯୁକ୍ତା ଚୌଧୁରୀ ଭୁବନେଶ୍ୱରରେ ଜଣେ ଖ୍ୟାତନାମା ହାଇସ୍କୁଲର ପ୍ରଧାନ ଶିକ୍ଷୟିତ୍ରୀ। ମୁଁ ମଧ ବାର ତେର ବର୍ଷ ଭୁବନେଶ୍ୱରର କ୍ୟାପିଟାଲ ହାଇସ୍କୁଲର ଶିକ୍ଷକ ଥିଲି। ପାରିବାରିକ ସମ୍ପର୍କ ମଧ ରହିଆସିଛି। ଏସବୁ ସମ୍ପର୍କର ବିଭିନ୍ନ ମେଳାରେ ବହୁବାର ମଙ୍ଗରାଜବାବୁଙ୍କ ଦର୍ଶନ ମିଳିଛି। କିନ୍ତୁ ତାଙ୍କ ତ୍ରିସୀମା ମାଡିବାକୁ ଏକରକମ ଭକ୍ତିଜନିତ ଡରଲାଗେ। ଏ ସବୁ ସତ୍ତ୍ୱେ, ବିଭିନ୍ନ ସମ୍ପର୍କର ଜାଲ ଭିତରେ, ମୋର ସେ ପିଲାଦିନର କଥା କେବଳ ମନେପଡେ। ସର୍ବଦା ମଙ୍ଗରାଜ ମୋ ପାଇଁ ଭକ୍ତିର ଏକ ଦୂର ପାହାଡ !! ମୁଁ ତାଙ୍କୁ ମୋର ହୃଦୟର ଶତକୋଟି ପ୍ରଣାମ ଜଣାଉଛି।

• • • •

ମନୁଷ୍ୟର ପ୍ରତିଷ୍ଠା ତାହାର ଚିତ୍ତରେ, ମସ୍ତିଷ୍କରେ, ନ ହେଲେ ବୁଦ୍ଧିରେ।

—ବାପୁଜୀ

# କୌଶଳୀ ମଙ୍ଗରାଜେ

ଲକ୍ଷ୍ମୀକାନ୍ତ ଚୌଧୁରୀ

ସ୍ୱାଧୀନତା ସଂଗ୍ରାମୀ ସ୍ୱର୍ଗତ ଯଦୁମଣି ମଙ୍ଗରାଜଙ୍କ ସମ୍ପର୍କରେ ଅନେକ କଥା ଶୁଣାଯାଏ। ବିଶେଷତଃ ନିର୍ବାଚନ ଯୁଦ୍ଧରେ ବିଜୟୀ ହେବା ଲାଗି ତାଙ୍କର ବିଭିନ୍ନ କୌଶଳର କଥା। ନିର୍ବାଚନ ସମୟରେ ବିଭିନ୍ନ ଦଳର ଡ୍ରାଇଭରମାନଙ୍କ ମୁହଁରୁ ଶୁଣିବାକୁ ମିଳେ। ସେ ସବୁ ଯେପରି ଉପଭୋଗ୍ୟ ସେହିପରି ସ୍ମରଣୀୟ। ସେଥିରୁ ଧାରଣା ହେଲା ତାଙ୍କ ଅଞ୍ଚଳର କୌଣସି ଗାଁର ଲୋକମାନେ ତାଙ୍କୁ ନିର୍ବାଚନ ସମୟରେ ଦେଖିବାକୁ ପାଉନାହାଁନ୍ତି ବୋଲି ସେ ଶୁଣିବାକୁ ପାଇଲେ। ଅନେକ ସମୟରେ ନିର୍ବାଚନରେ ସବୁ ଗାଁକୁ ଯାଇ ସମସ୍ତଙ୍କୁ ବ୍ୟକ୍ତିଗତଭାବେ ଭୋଟ୍ ପାଇଁ ନିବେଦନ କରିବା ସମ୍ଭବ ହୋଇନଥାଏ। ମଙ୍ଗରାଜଙ୍କର କ୍ଷେତ୍ରରେ ମଧ୍ୟ ତାହା ହୋଇଥିଲା। ବିଭିନ୍ନ ଅଞ୍ଚଳ ବୁଲି ସେ ଅତିମାତ୍ରାରେ କ୍ଳାନ୍ତ ହୋଇପଡିଥିଲେ ଓ "ସେ ଗାଁକୁ ଆସୁନାହାନ୍ତି" ଏହି ନିର୍ଦ୍ଦିଷ୍ଟ ଅଭିଯୋଗ ହୋଇଥିବା ଗାଁରେ ରାତିର ବିଳମ୍ବିତ ପ୍ରହରରେ ମଙ୍ଗରାଜ କୁଆଡେ ଆସି ପହଞ୍ଚିଲେ। ମଫସଲ ଲୋକ, ପ୍ରାୟ ସମସ୍ତେ ଶୋଇଗଲେଣି, ସେ ଗାଁରେ ଥିବା ଛୋଟ ଛୋଟ କେତୋଟି ଦୋକାନ ଖୋଲାଥାଏ ଓ ଦାଣ୍ଡରେ ଅଳ୍ପ କେଇଜଣ ଏପଟ ସେପଟ ହେଉଥାଆନ୍ତି।

ମଙ୍ଗରାଜ ଗାଁରେ ପହଞ୍ଚି ଏମୁଣ୍ଡ ସେମୁଣ୍ଡ ବୁଲିଆସିଲେ, ଦେଖିଲେ ତାଟିକବାଟ ଧୀରେ ଧୀରେ ବନ୍ଦ ହେଉଛି, ସମସ୍ତେ ଶୋଇ ନାହାଁନ୍ତି। ତାଙ୍କ ସଙ୍ଗରେ ଥିବା କୌଣସି ଡ୍ରାଇଭରଙ୍କୁ ତୁଙ୍ଗା ସାହାଯ୍ୟରେ ଥରେ ଗାଁର ଏମୁଣ୍ଡ ସେମୁଣ୍ଡ ବୁଲି ମଙ୍ଗରାଜ ଆସିଛନ୍ତି ବୋଲି କହିଦେବାକୁ ନିର୍ଦ୍ଦେଶ ଦେଇ ଏ ମଧ୍ୟରେ ସେ ଯୋଗାଡ କରି ସାରିଥିବା ପେଟ୍ରୋମାକ୍ସ ଲାଇଟ୍ ଦୁଇଟି ଦୁଇହାତରେ ଉପରକୁ ଟେକି ଗାଁ ଦାଣ୍ଡରେ ଏମୁଣ୍ଡ ସେମୁଣ୍ଡ ଦୁମ୍‌ଦୁମ୍ ହୋଇ ଧାଇଁଲେ। ଦାଣ୍ଡରେ ଗୋଟାଏ, କିଏ ଦୁମ୍ ଦୁମ୍ ହୋଇ ଆଲୁଅ ଧରି ଏତେ ରାତିରେ ଧାଉଁଥିବାର ଦେଖି ଘଟଣା କ'ଣ ବୋଲି ଶୋଇପଡୁଥିବା ଲୋକ ଧଡପଡ ହୋଇ ଉଠିଆସି ଦାଣ୍ଡରେ ଠିଆହେଲେ। ପୁରୁଷ ଲୋକମାନେ ଦାଣ୍ଡକୁ ଆସିଲେ, ସ୍ତ୍ରୀ ଲୋକମାନେ ତାଟିକବାଟ କୋଣରୁ ଏ ଦୃଶ୍ୟ ଦେଖିଲେ।

ମଙ୍ଗରାଜ ଏହିପରି କେତେଥର ଦାଣ୍ଡରେ ଏପଟ ସେପଟ ହେବା ପରେ ଗାଁ ଚଉପାଢ଼ି ପାଖରେ ଠିଆ ହୋଇଗଲେ। ସେତେବେଳକୁ ଗାଁ ସାରା ଲୋକ ସେଠାରେ ଜମା। ଯଦୁମଣି କ'ଣ କହିବେ ଶୁଣିବା ପାଇଁ ସମସ୍ତେ ବ୍ୟଗ୍ର, ମାତ୍ର ସେ କିଛି ନକହି କେବଳ ପେଟ୍ରୋମାକସ୍ ଦୁଇଟିକୁ ଉପରକୁ ଟେକି ଲୋକଙ୍କ ଭିତରେ ପଶି ଆଲୁଅରେ ତାଙ୍କ ମୁହଁକୁ ଦେଖାଇ "ଇଏ ଯଦୁମଣି, ଇଏ ଯଦୁମଣି" ବୋଲି କିଛି ସମୟ କହିଲେ। ତାଙ୍କ କହିବା ବନ୍ଦ ହେବା ଦେଖି ସମସ୍ତେ ବ୍ୟସ୍ତ ହୋଇଗଲେ ତାଙ୍କ ମୁହଁରୁ କିଛି ଶୁଣିବାକୁ, ମାତ୍ର ଯଦୁମଣି ନୀରବ, ଗମ୍ଭୀର। ବହୁ ଅନୁରୋଧ ପରେ ମଙ୍ଗରାଜଙ୍କ ମୁହଁ ଖୋଲିଲା। ସେ କହିଲେ ଆପଣମାନଙ୍କ ସଙ୍ଗେ ମୋର ପିଲାଦିନୁ ସମ୍ପର୍କ, ମୁଁ ଆଖିବୁଜିଲେ ଆପଣମାନେ ମୋତେ କାନ୍ଧରେ ନେବେ। ଭଲରେ ମନ୍ଦରେ ମୁଁ ଆପଣଙ୍କର ଓ ଆପଣମାନେ ମୋର । ଆପଣମାନେ ଯାହା କହୁଛନ୍ତି ଯେ ମୋତେ ଦେଖିନାହାନ୍ତି, ମୁଁ ଏ ଗାଁକୁ ଆସିନାହିଁ ଏହା କେତେଦୂର ସତ ? କାହା ବୁଦ୍ଧିରେ ଏକଥା କହିଲେ ? ମୋ ଦୁଃଖ, ମୋ ନିଜଲୋକ ମୋତେ ଭୋଟ୍ ଦିଅନ୍ତୁ ବା ନଦିଅନ୍ତୁ ସେ ଭିନ୍ନେ କଥା, ମାତ୍ର ମୋ ମୁହଁ ଦେଖିନାହାନ୍ତି ସେମାନେ କହୁଥିବା ଶୁଣି ମୋତେ ବାଧିଲା। ଏ ଗାଁକୁ

ମୋତେ ଆସିବିନାହିଁ ବୋଲି ଭାବୁଥିଲି, ମାତ୍ର ଏକଥା ଶୁଣି ଆସିଲି, ରାତି ହୋଇଗଲାଣି, ଆଉ କ'ଣ କରିଥାନ୍ତି, ଏଇ ଦୋକାନି ଭାଇଙ୍କଠୁଁ ଆଲୁଅ ମାଗି ତାକୁ ଧରି ଦାଣ୍ଡରେ ବୁଲୁଛି। ଆପଣମାନେ ଏବେ "ଚିକ୍କଣ କଳା ଖଦଡ ପିନ୍ଧା ଯଦୁମଣିକୁ" ଦେଖନ୍ତୁ। ମୋଠୁଁ ଆପଣ କିଛି ଶୁଣିବାକୁ ଚାହିଁନାହାନ୍ତି। ମୁଁ ଆଜି ଆଉ କିଛି କହିବାକୁ ଚାହୁଁନାହିଁ। କ'ଣ କହିବି, ସତରେ ଆପଣମାନେ କ'ଣ ମୋତେ ଜାଣିନାହାନ୍ତି ! ମୋ କଥା ଶୁଣିନାହାନ୍ତି। ତା'ପରେ ସେ ଗମ୍ଭୀର ହୋଇ ଠିଆ ହୋଇଥିବା ସ୍ଥାନରେ ମୁଣ୍ଡରେ ହାତ ଦେଇ ବସିପଡ଼ିଲେ।

ପରିବେଶର ଗାମ୍ଭୀର୍ଯ୍ୟର ପରିସମାପ୍ତି ଘଟିଲା। ମଙ୍ଗରାଜଙ୍କର ଏକଥା ଶୁଣି ସମସ୍ତେ ହୋ ହୋ ହୋଇ ହସିଉଠିଲେ, ମାତ୍ର ପ୍ରାର୍ଥୀ ମଙ୍ଗରାଜ ଗମ୍ଭୀର। କେବଳ ନମସ୍କାର କରି କହିଲେ ମୁଁ ଯାଉଛି, ଆପଣମାନେ ଯାହା କରିବେ। ସମସ୍ତଙ୍କ ପକ୍ଷରୁ ଏକସ୍ୱରରେ ଉତ୍ତର ମିଳିଲା "ଆପଣ ସମୟ ନଷ୍ଟକରି ଏଠାକୁ ଆଉ ଆସିବା ଦରକାର ନାହିଁ, ଅନ୍ୟଆଡ଼େ ଯାଆନ୍ତୁ"। ପରେ ଜଣାଯାଇଥିଲା ସେ ଗାଁର ଲୋକମାନେ ତାଙ୍କୁ ଅନ୍ୟ ପ୍ରାର୍ଥୀମାନଙ୍କ ତୁଳନାରେ ସବୁଠୁ ଅଧିକ ଭୋଟ ଦେଇଥିଲେ।

ଆଡ୍‌ଭୋକେଟ୍, ଭୁବନେଶ୍ୱର

• • • • • •

ଯାହାର ମନଦେହ ସର୍ବଦା ସୁସ୍ଥ ତାକୁ ରୋଗ ହୋଇନଥାଏ। ରୋଗ ମାତ୍ରକେ ମନୁଷ୍ୟ ପାଇଁ ଲଜ୍‌ଜାର ବିଷୟ। ରୋଗ କୌଣସି ଦୋଷର ସୂଚକ। ବିକାରଯୁକ୍ତ ବିଗ୍ରହ ମଧ୍ୟ ରୋଗର ଚିହ୍ନ।

—ବାପୁଜୀ

# ମହାନ୍ ସ୍ୱାଧୀନତା ସଂଗ୍ରାମୀ ଯଦୁମଣି

ନାରାୟଣ ପାତ୍ର

ଯଦୁମଣି ମଙ୍ଗରାଜଙ୍କ ସହ ମୋର ସଦ୍‌ଭାବ ହେଲା ୧୯୩୦ ମସିହା ଲବଣ ସତ୍ୟାଗ୍ରହବେଳୁ। ଏହି ସମୟରେ ବ୍ରହ୍ମପୁର ସହରର କେନ୍ଦ୍ରସ୍ଥଳ "ଆନ୍ଧ୍ରଭାଷା ବିବର୍ଦ୍ଧିନୀ ସମାଜ" ପ୍ରକୋଷ୍ଠ ସମ୍ମୁଖରେ ଅନୁଷ୍ଠିତ ଏକ ବିରାଟ ଜନସଭାରେ ସେ ଯେପରି ଜ୍ୱାଳାମୟୀ ଓ ଉତ୍ତେଜନାପୂର୍ଣ୍ଣ ଭାଷଣ ପ୍ରଦାନ କରିଥିଲେ ତାର ପ୍ରଭାବ ମୋ ଉପରେ ବିଶେଷ ରେଖାପାତ କରିଥିଲା। ସେତେବେଳେ ମୁଁ ବ୍ରହ୍ମପୁର ଖଲ୍ଲିକୋଟ କଲେଜର ଛାତ୍ର ଥିଲି। ସେଦିନ ରାତିରେ ଯୁବକ ଓ ଛାତ୍ରମାନଙ୍କର ଗୋଟିଏ ଘରୋଇ ବୈଠକ ବ୍ରହ୍ମପୁରସ୍ଥିତ ପ୍ରଦେଶିକ ଖଦିଭଣ୍ଡାରଠାରେ ଦେଶପ୍ରେମୀ ସ୍ୱର୍ଗତ ନିରଞ୍ଜନ ପଟ୍ଟନାୟକଙ୍କ ଉଦ୍ୟମରେ ଆହୁତ ହୋଇଥିଲା। ଉକ୍ତ ସଭାରେ ଅନ୍ୟମାନଙ୍କ ମଧ୍ୟରେ କଟକର ସୁନାମଧନ୍ୟ ଦେଶପ୍ରେମୀ ସରଳା ଦେବୀ ମଧ୍ୟ ଉପସ୍ଥିତ ଥିଲେ। ଆଲୋଚନା ମଧ୍ୟରେ ବିଦେଶୀ ଜିନିଷ ବର୍ଜନ ଓ କୁଟୀରଶିଳ୍ପ ଅଭ୍ୟୁଦୟର ପ୍ରାସଙ୍ଗିକତା ସଂପର୍କରେ ମଙ୍ଗରାଜବାବୁ ଉପସ୍ଥାପନ କରିବା ବିଷୟବସ୍ତୁ ମୋତେ ଏପରିଭାବେ ତନ୍ମୟ ଓ ଉଦ୍ଦୀପିତ କରିଥିଲା ଯେ ମୁଁ ପିନ୍ଧିଥିବା ପୋଷାକ ମଧ୍ୟରେ କେବଳ ଯେଉଁ ଗୋଟିଏ ବିଦେଶୀ ରୁମାଲ ଥିଲା ତାହା ତତ୍‌କ୍ଷଣାତ୍ ପକେଟରୁ ବାହାର କରି ବୈଠକ ସ୍ଥଳରେ ଉପସ୍ଥିତ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରି ଖଣ୍ଡ ଖଣ୍ଡ କରି ଚିରି ବୈଠକ ସମ୍ମୁଖରେ ପକାଇଦେଲି ଓ ସଭା ମଧ୍ୟରେ ସେଥିରେ ଅଗ୍ନି ସଂଯୋଗ କଲି। ମୋର ଏହି ଭାବପ୍ରବଣତାକୁ ଦେଖି ନିରଞ୍ଜନବାବୁ କହିଉଠିଲେ ଯେ ସୋଡ଼ା ବୋତଲକୁ ଖୋଲିଲାବେଳେ ଯେପରି ରୁଦ୍ଧାବସ୍ଥାରୁ ତାର ବାଷ୍ପ ବାହାରିଆସେ ଏହା ସେପରି ନୁହେଁ ତ ? ତା ପରବର୍ତ୍ତୀ ଦୁଇଦିନ ନିରଞ୍ଜନବାବୁଙ୍କ ପୂର୍ବ ବ୍ୟବସ୍ଥା କ୍ରମେ ଗଞ୍ଜାମ ଜିଲ୍ଲାର ବିଭିନ୍ନ ସ୍ଥାନରେ ଯଥା– ଦିଗପହଣ୍ଡି, ପୋଡ଼ାମାରି, କବିସୂର୍ଯ୍ୟନଗର, ଆସିକା, ଭଞ୍ଜନଗର, ବେଲଗୁଣ୍ଠା ଓ ଦକ୍ଷିଣାଞ୍ଚଳର ପାରଳାଖେମୁଣ୍ଡି, ଗାରାବନ୍ଧ ଓ ଗୁରାଣ୍ଡିରେ ଅନୁଷ୍ଠିତ ସଭାଗୁଡ଼ିକରେ ବିଶେଷତଃ ଯଦୁମଣିବାବୁଙ୍କର ଜ୍ୱାଳାମୟୀ ଓ ଉତ୍ତେଜନାପୂର୍ଣ୍ଣ ଭାଷଣମାନ ଜନସାଧାରଣଙ୍କ ମନରେ ଲବଣ ସତ୍ୟାଗ୍ରହର ଯଥାର୍ଥତା ସମ୍ବନ୍ଧରେ ଏକ କ୍ରାନ୍ତିକାରୀ ମନୋଭାବ ସୃଷ୍ଟି କରିଥିଲା। ଏହି କାର୍ଯ୍ୟକ୍ରମ ଗୁଡିକରେ ପ୍ରତ୍ୟେକ ଅଞ୍ଚଳରୁ ବହୁ ବ୍ୟକ୍ତି ସତ୍ୟାଗ୍ରହୀ ସଭ୍ୟ ଶ୍ରେଣୀଭୁକ୍ତ ହୋଇଥିଲେ।

ଅନ୍ୟ ଏକ ବିଶେଷ ଘଟଣା ଏଠାରେ ଉଲ୍ଲେଖ କରୁଛି। ଭାଷାଭାଷୀ ଭିତିରେ ପ୍ରଦେଶ ଗଠନ ପ୍ରକ୍ରିୟାରେ ଓଡ଼ିଶା ଗୋଟିଏ ସ୍ୱତନ୍ତ୍ର ରାଜ୍ୟ ଭାବରେ ଗଠିତ ହେବାର ନିଷ୍ପତ୍ତି କରାଯାଇଥିଲା। କିନ୍ତୁ ନିର୍ଦ୍ଦେଶ ଥିଲା ଯେ ସେତେବେଳର ମାନ୍ଦ୍ରାଜ ପ୍ରେସିଡ଼େନ୍‌ସିରେ ଥିବା ଓଡ଼ିଆ ବହୁଭାଷୀ ଅଞ୍ଚଳ ଯଥା- ଜୟପୁର ଜମିଦାରୀ ଓ ପାରଳାଖେମୁଣ୍ଡି ଜମିଦାରୀ ଉଭୟର ବ୍ୟତୀତ ଓଡୋନେଲ୍ କମିଟି ସୁପାରିଶ୍ ଅନୁସାରେ ଗଠିତ ହେବ ବୋଲି ପରବର୍ତ୍ତୀ ପର୍ଯ୍ୟାୟରେ ଘୋଷିତ ହେଲା। ଏହାର ପ୍ରତିବାଦସ୍ୱରୂପ ଓଡ଼ିଶାର ଏମୁଣ୍ଡରୁ ସେମୁଣ୍ଡ ଯାଏଁ ଜନସାଧାରଣଙ୍କ

ମନରେ ଉତ୍ତେଜନା ସୃଷ୍ଟି ହୋଇଥିଲା । ଏହାର ପ୍ରତିବାଦସ୍ୱରୂପ ଉତ୍କଳ ସମ୍ମିଳନୀ ଆନୁକୂଲ୍ୟରେ କଟକଠାରେ ଏକ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଉକ୍ତ ସମ୍ମିଳନୀର ସଭାପତି ରୂପେ ଗଂଜାମଜିଲ୍ଲା ଧରାକୋଟ ରାଜାସାହେବ ମଦନ୍‌ମୋହନ ସିଂହଦେବ ସଭାପତିତ୍ୱ କରିବେ ବୋଲି ଘୋଷିତ ହୋଇଥିଲେ । ସ୍ୱାସ୍ଥ୍ୟଗତ କାରଣରୁ ରାଜାସାହେବ ଅନୁପସ୍ଥିତ ରହିବାରୁ ତାଙ୍କ ନିଜ ଜମିଦାରୀର ଓକିଲ ବ୍ରହ୍ମପୁରର ମଧୁସୂଦନ ପାଣିଗ୍ରାହୀ ସଭାପତି ଦାୟିତ୍ୱ ନେବାକୁ କ୍ଷମତାପ୍ରାପ୍ତ ହୋଇଥିଲେ । ତାଙ୍କ ଲିଖିତ ଭାଷଣରେ ସେତେବେଳର "ଆଶା" ପତ୍ରିକାର ମତ ଥିଲା "ଯାହା ମିଳୁଥିବ ବାନ୍ଧୁଥିବ, କାନ୍ଦୁଥିବ, ନାହିଁ ନବୋଲିବ"। ଅର୍ଥାତ୍ ବର୍ତ୍ତମାନ ଯାହା ମିଳୁଛି ତାହା ଗ୍ରହଣ କରିନେବା । ପରେ ଜୟପୁର ଓ ପାରଳାଖେମୁଣ୍ଡି ପାଇଁ ଚରମ ଦାବି କରିବା । ସେହି ଭାଷଣରେ ଏପରି ଉଲ୍ଲେଖ ସଭା ମଧ୍ୟରେ ପ୍ରତିବାଦ ପ୍ରକ୍ରିୟା ସୃଷ୍ଟି କରିଥିଲା । ସଭାସଦ୍‌ମାନଙ୍କ ମଧ୍ୟରୁ ମଙ୍ଗରାଜବାବୁ ଆଗକୁ ମାଡିଆସି 'ସେନ୍‌ସର, ସେନ୍‌ସର, ସେନ୍‌ସର ବୋଲି ତିନିଥର ଉଚ୍ଚାରଣ କଲାବେଳକୁ କାନ୍ଦୁଥିବା ବାନ୍ଧୁଥିବା ମନୋଭାବ ଦୂରୀଭୂତ ହୋଇ ପାରଳାଖେମୁଣ୍ଡି ଓ ଜୟପୁର ମିଶ୍ରଣ ବିନା ଓଡ଼ିଶା ପ୍ରଦେଶ ଗ୍ରହଣ କରାଯିବ ନାହିଁ ବୋଲି ଦୃଢ଼ ପ୍ରସ୍ତାବ ସର୍ବସମ୍ମତିକ୍ରମେ ଆନନ୍ଦ-ଉଲ୍ଲାସ ମଧ୍ୟରେ ପ୍ରକାଶ ପାଇଲା ।

ମଙ୍ଗରାଜଙ୍କ ସହ ମୋର ଏକ ବ୍ୟକ୍ତିଗତ ଶ୍ରଦ୍ଧା ଓ ଭକ୍ତି ମଧ୍ୟ ରହିଆସିଅଛି । ସେ ଯେତେବେଳେ ଓଡ଼ିଶା ବ୍ୟବସ୍ଥା ସଭାର ଉପବାଚସ୍ପତି ରୂପେ ନିର୍ବାଚିତ ହେଲେ ତା ପରଦିନ ତାଙ୍କ ସହିତ ମୋର କଟକ ବାଲୁବଜାର ରାସ୍ତାରେ ଭେଟ ହୋଇଥିଲା । ସେ ମୋ ଦ୍ୱାରା ଅଭିନନ୍ଦିତ ହୋଇ ପ୍ରକାଶ କଲେ ଯେ "ତୁମେ ଆମେ ତ ଏକ । ଆମ ରକ୍ତସଂପର୍କ ପାଣିଠାରୁ ଅଧିକ ଘନୀଭୂତ ଓ ନିବିଡ"।

ସେ ସ୍ୱାଧୀନତା ଆନ୍ଦୋଳନର ଅନ୍ୟତମ ଅଗ୍ରଣୀ ନେତା ଥିଲେ । କିନ୍ତୁ ସ୍ୱାଧୀନୋତ୍ତର ପର୍ଯ୍ୟାୟରେ ସେ ଯେପରି ଉପଯୁକ୍ତ ସମ୍ମାନ ପାଇବା କଥା ସେଥିପ୍ରତି ଦୃଷ୍ଟି ନ ପଡିଥିବା ଦୁଃଖ ଓ ପରିତାପର ବିଷୟ । ସାଧାରଣତଃ ସ୍ୱାଧୀନତା ଆନ୍ଦୋଳନରେ ଦେଶବାସୀଙ୍କ ପାଇଁ ତାଙ୍କର ଯେଉଁ ଉତ୍ସର୍ଗୀକୃତ ଅବଦାନ ରହିଥିଲା ନ୍ୟାୟତଃ ସେ ପ୍ରଥମଶ୍ରେଣୀ ନେତାଙ୍କ ପରି ସମ୍ମାନିତ ହେବା ବିଧେୟ । ଏଥିପ୍ରତି ସମସ୍ତଙ୍କ ଦୃଷ୍ଟି ପଡୁ ଏହା ହିଁ କାମନା ।

ଗୁରୁଣ୍ଡି,
ଜିଲ୍ଲା- ଗଜପତି

• • • •

# କେନ୍ଦ୍ରାପଡ଼ାର ଗାନ୍ଧୀ

ଡଃ ବାସୁଦେବ ଦାସ

ଯଦୁମଣି ମଙ୍ଗରାଜଙ୍କୁ ଏ ଜାତି କେବେ ଭୁଲିପାରିବ ନାହିଁ। ତାଙ୍କ ସମକକ୍ଷ ନେତା ଓ ଉଚ୍ଚକୋଟୀର ବକ୍ତା ଆଜି ବାସ୍ତବରେ ଦୁର୍ଲଭ। ନିଜ ଭିତରେ ଦୃଢ଼ ଆତ୍ମବିଶ୍ୱାସ ଓ ଅସାଧାରଣ ପ୍ରଜ୍ଞା ନଥିଲେ ମଙ୍ଗରାଜଙ୍କ ଭଳି ଭାଷଣ ଦେବା ସମ୍ଭବ ନୁହେଁ। ଶବ୍ଦର ମାଡ଼ରେ ଶତ୍ରୁର ଶିବିର ଟାଳିଦେବାର ସମର୍ଥ-ସେନାପତି ଥିଲେ ମଙ୍ଗରାଜ।

ଯଦୁମଣିଙ୍କର ସାହସ ଓ ବାଗ୍ମିତା ଛାତ୍ରସମାଜ ଲାଗି ସ୍ମରଣୀୟ ହୋଇ ରହିବ। ଛାତ୍ରରୂପେ ସେ ଖୁବ୍ ସାହସୀ ଓ ମଖଣ୍ଡିଆ। ଶାଣିତ ବ୍ୟଙ୍ଗ ଓ ବିଦ୍ରୂପ କରିବାରେ ଅତିମାତ୍ରାରେ ଧୁରନ୍ଧର। ପରଜୀବନରେ ବହୁ ବଡ଼ ନେତାଙ୍କର ଉକ୍ତିକୁ ଟକ୍କର ଦେବା, ଖଣ୍ଡନ କରିବା ତାଙ୍କ ଜୀବନର ଏକ ସାଧାରଣ ଘଟଣା ଥିଲା। ବାହାରେ ନୁହେଁ ଜେଲ୍ ଭିତରେ ମଧ୍ୟ ବ୍ରିଟିଶ ଶାସନ ପ୍ରତି ତାଙ୍କର ଘୃଣା ମନୋଭାବ ପ୍ରକାଶ କରିବାରେ ସେ ଦ୍ୱିଧାବୋଧ କରୁନଥିଲେ। ଯଦିଓ ସେ ତାର ପରିଣତି ସଂପର୍କରେ ଅତିମାତ୍ରାରେ ସଚେତନ ଥିଲେ। ତାଙ୍କ ବିଷୟରେ ଅନେକ ଗଳ୍ପ ଶୁଣାଯାଏ। ସେଥିମଧ୍ୟରୁ ଗୋଟିଏ ହେଲା ସେ ଯେତେବେଳେ ଜେଲରେ ଥିଲେ ତାଙ୍କୁ ବଗିଚା ସଫା କରିବା ଲାଗି ଜେଲର୍ ପଠାଇଥିଲେ। ବଗିଚା ସଫା କରିବା ନିର୍ଦ୍ଦେଶ ପାଇ ସେ ବଗିଚାରୁ ସମସ୍ତ ଗଛ କାଟି ସଫାକରି ଦେଇଥିଲେ। ଏହା ଦେଖି ଜେଲର୍ ବିସ୍ମିତ ହୋଇଥିଲେ ଯେତିକି ବିରକ୍ତ ହୋଇଥିଲେ ତାହାଠାରୁ ଅଧିକ। ଜେଲର୍ଙ୍କର ଗ୍ରୀବୁକ ତାଙ୍କ ଉପରେ କୁଆଡ଼େ ଚଞ୍ଚଳ ହୋଇଉଠିଥିଲା। ଏହାର ପ୍ରତିବାଦରେ ମଙ୍ଗରାଜ କେବଳ କହିଥିଲେ "ଆଜ୍ଞା! ଆପଣଙ୍କ ନିର୍ଦ୍ଦେଶ ମୁତାବକ କାମ କରିଛି ମାତ୍ର ! ଏ କ'ଣ କରୁଛନ୍ତି, ବନ୍ଦ କରନ୍ତୁ। ଏଥିରୁ ସେ କେତେଦୂର ନିର୍ଭୀକ, ଦୁଃସାହସୀ ଓ ଦେଶପ୍ରେମୀ ଥିଲେ ତାହା ଜଣାଯାଏ।

ମଙ୍ଗରାଜ ଉତ୍କଳ ଜନଜୀବନର ଅନ୍ୟତମ ବିଶ୍ରୁ ମହାରଣା ଓ କେନ୍ଦ୍ରାପଡ଼ାର ଗାନ୍ଧୀ। ତାଙ୍କ ଜନ୍ମ ଶତବାର୍ଷିକୀ ଯୁବକ ପ୍ରାଣରେ ସାହସ ଓ ସଂଗ୍ରାମର ସାହାନାଇ ସୃଷ୍ଟି କରିବା ଲାଗି ତାଙ୍କର ସ୍ମୃତିଚାରଣ ଏକାନ୍ତ ଆବଶ୍ୟକ।

• • •

# ଏକ ଅମ୍ଳାନ ବିପ୍ଳବୀ

ପ୍ରାଣବନ୍ଧୁ କର

ଯଦୁମଣି ମଙ୍ଗରାଜ ଭାରତ ଛାଡ଼ ଆନ୍ଦୋଳନର ଜଣେ ତେଜସ୍ୱୀ ସଂଗ୍ରାମୀ ଓ ଉଚ୍ଚକୋଟୀର ବକ୍ତା । ତାଙ୍କର ଜ୍ୱାଳାମୟୀ ବକ୍ତୃତା ଯେ ଥରେ ଶୁଣିଛି ସେ ତାଙ୍କୁ କେବେ ଭୁଲିପାରିବ ନାହିଁ । ବେଶ୍ ଉଚ୍ଚସ୍ୱରରେ ବକ୍ତୃତା ଦେଲାବେଳେ ତାଙ୍କ ଗ୍ରୀବାର ଶିରାପ୍ରଶିରା ଫୁଲିଯାଏ । ବଡ଼ ଆଖି ଦୁଇଟି ରକ୍ତିମ ହୋଇଉଠେ । ମୁଖଗହ୍ୱରରୁ ନିଃସୃତ ହୁଏ ରାଜଦ୍ରୋହର ଗୁରୁଗମ୍ଭୀର ବାଣୀ । ତାଙ୍କର ସେହି ନିର୍ଭୀକ ଭାଷଣ ଶୁଣି ଜନତା ରକ୍ତ ତାତିଉଠେ । କରତାଳି ପରେ କରତାଳିର ଧ୍ୱନିରେ ସଭାସ୍ଥଳୀ ପ୍ରକମ୍ପିତ ହୋଇଉଠେ । ଜନତାର ଅନ୍ତରାତ୍ମାରେ ଦେଶପ୍ରୀତିର ଉନ୍ମାଦନା ସଂଚରିଯାଏ ।

୧୯୩୦ ମସିହାରେ ଲବଣ ସତ୍ୟାଗ୍ରହବେଳେ ଗାନ୍ଧୀଙ୍କ ଆହ୍ୱାନରେ ବହୁ ସ୍କୁଲ୍ ଛାତ୍ର ସ୍କୁଲ ଛାଡି ସତ୍ୟାଗ୍ରହରେ ଯୋଗଦେଇଥିଲେ । କୁଜଙ୍ଗର ଏଆଡି ସତ୍ୟାଗ୍ରହ ପାଇଁ ଗଠିତ ବାନରସେନା ଦଳରେ ଯୋଗଦେଲେ ମୋର ସହପାଠୀ ପୂର୍ବତନ ପ୍ରଜାସୋସାଲିଷ୍ଟର ବିଶିଷ୍ଟ ନେତା ସୁରେନ୍ଦ୍ର ଦ୍ୱିବେଦୀ, ଜ୍ଞାନମଣ୍ଡଳ ପ୍ରଣେତା ବିନୋଦ କାନୁନ୍‌ଗୋ, ରାଜସ୍ୱମନ୍ତ୍ରୀ ସ୍ୱର୍ଗତ ସୁରେନ୍ଦ୍ର ପଟ୍ଟନାୟକ । ଏ ସମସ୍ତେ ଦଶମ ଶ୍ରେଣୀରେ ପଢୁଥିଲେ । ସ୍କୁଲ ଛାଡ଼ି ସେମାନେ ପ୍ରମାଣ କରିଦେଲେ ଯେ ବିଦ୍ୟାଳୟ ବାହାରେ ମଧ୍ୟ ଜ୍ଞାନ ଅର୍ଜନ କରି ମଣିଷ ଖୁବ୍ ବଡ଼ ହୋଇପାରେ ।

୧୯୩୪ ମସିହାରେ ତୃତୀୟଥର ପାଇଁ ମହାତ୍ମା ଗାନ୍ଧୀ ଓଡ଼ିଶା ଆସିଥାଆନ୍ତି । କାଠଯୋଡ଼ି ବାଲିରେ ତାଙ୍କୁ ବିପୁଳ ସମ୍ବର୍ଦ୍ଧନା ଦିଆଗଲା । ଗାନ୍ଧୀ ଖୁବ୍ ଶାନ୍ତ ଓ ଉଚ୍ଚସ୍ୱରରେ ହିନ୍ଦୀରେ ବକ୍ତୃତା ଦେଲେ । ତାଙ୍କ ପରେ ଗୋଟିଏ ଟିଣ ଚୁଙ୍ଗାଧରି ଯଦୁମଣି ଶାସକମାନଙ୍କ ପ୍ରତି ବ୍ୟଙ୍ଗବିଦ୍ରୂପ ଓ ତାଚ୍ଛଲ୍ୟ କରି ଭାଷଣ ଦେଇଥିଲେ । ମନ୍ତ୍ରମୁଗ୍ଧ ହୋଇ ସମସ୍ତେ ଯଦୁମଣିଙ୍କର ବକ୍ତୃତା ଶୁଣୁଥିଲେ । ହଠାତ୍ ଜନତା ଉପରେ ପୁଲିସ୍‌ର ଲାଠିମାଡ଼ ଆରମ୍ଭ ହୋଇଗଲା । ଜନତା ଛିନ୍ନଛତର ହୋଇ ଚାରିଆଡ଼େ ଧାଇଁଲେ । ଜଣେ ସର୍ଜେଣ୍ଟ ଗୋଟେ ଲାଠିଧରି ଆମଆଡ଼କୁ ଆସି ଲାଠି ପ୍ରହାର କଲେ । ଆମଭିତରେ ବର୍ତ୍ତମାନର ମୁଖ୍ୟମନ୍ତ୍ରୀ ବିଜୁପଟ୍ଟନାୟକ ସବୁଠାରୁ ଡେଙ୍ଗା ଥିବାରୁ ତାଙ୍କ ମୁଣ୍ଡରେ ପ୍ରହାର ବାଜି ରକ୍ତ ଝରିଲା ଓ ସେହିଦିନ ବିଜୁ ଶପଥ ନେଲେ ପଢ଼ା ଶେଷ ପରେ ସେ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେବେ । ପରଜୀବନରେ ସେ ତାହାହିଁ କଲେ ଓ ବର୍ତ୍ତମାନ ମୁଖ୍ୟମନ୍ତ୍ରୀ ଭାବେ ଦେଶର ସେବା କରୁଛନ୍ତି ।

ଯଦୁମଣିବାବୁଙ୍କ ସହିତ ମୋ ଅନ୍ତରଙ୍ଗତା ବଢ଼ିଲା ୧୯୪୦-୪୧ ମସିହାରେ ସେ ଯେତେବେଳେ ମେହେନ୍ଦିପୁରରେ ଭଡ଼ାଘର ନେଇ ରହୁଥିଲେ । ତାଙ୍କ ବଡ଼ ପୁଅ ବିଜୟକୁ ମୁଁ କିଛିଦିନ ଇଂରାଜୀ ପଢାଉଥିଲି । ଫଳରେ ଆମର ସଂପର୍କ ଅଧିକ ଦୃଢ଼ ହୋଇଥିଲା । ଏହି ବିଜୟକେତନ ମଙ୍ଗରାଜଙ୍କର ଆକାଶବାଣୀରୁ ସଂବାଦ ପ୍ରଚାର ଦିନେ ସମସ୍ତ ଶ୍ରୋତାଙ୍କୁ ମୁଗ୍ଧ କରିଥିଲା । ଯଦୁମଣି ମଙ୍ଗରାଜ ତାଙ୍କ ସନ୍ତାନସନ୍ତତିଙ୍କୁ ଖୁବ୍ ସ୍ନେହ କରୁଥିଲେ । ତାଙ୍କର କନ୍ୟା ସଂଯୁକ୍ତା ୧୯୮୫ ମସିହାରେ ଆଦର୍ଶ ଶିକ୍ଷୟିତ୍ରୀ ରୂପେ ରାଷ୍ଟ୍ରପତି ପୁରସ୍କାର ପାଇବାର ଗୌରବ ଅର୍ଜନ କରିଛନ୍ତି । ସଂଯୁକ୍ତାକୁ ଜଣେ ଆଦର୍ଶ ମହିଳା ରୂପେ ଗଢ଼ିତୋଳିବାକୁ ହିଁ ସେ ସ୍ୱପ୍ନ ଦେଖୁଥିଲେ । ସେ ସ୍ୱପ୍ନ ବହୁ ପରିମାଣରେ ସାର୍ଥକ ହୋଇଛି ।

ଶହୀଦନଗର
ଭୁବନେଶ୍ୱର

● ● ● ●

# ବାଗ୍ମୀବୀର ଯଦୁମଣି ମଙ୍ଗରାଜ

## ସୁନାକର ମଲ୍ଲିକ ବର୍ମା

ପୂଜ୍ୟ ମଙ୍ଗରାଜବାବୁଙ୍କ କଥା ମନେପଡ଼ିଲେ, ତାଙ୍କର ସ୍ନେହଶ୍ରଦ୍ଧା ତଥା ସାମାଜିକ ଶୃଙ୍ଖଳା ଓ ନିର୍ଭୀକତା କଥା ମନେପଡ଼େ। ମୁଁ ତାଙ୍କୁ ପ୍ରଥମେ ଦେଖିଲି– କେନ୍ଦ୍ରାପଡ଼ାର ମ୍ୟୁନିସିପାଲିଟି ହତା ମଧ୍ୟରେ ସଭା ହେଉଥାଏ। ସେତେବେଳେ ମିଳିତ ମନ୍ତ୍ରିମଣ୍ଡଳର ପ୍ରଧାନମନ୍ତ୍ରୀ ପାରଳା ମହାରାଜା ଆସିଥାନ୍ତି। ମଙ୍ଗରାଜବାବୁ ସେତେବେଳେ ମିଳିତ ମନ୍ତ୍ରିମଣ୍ଡଳର ପାର୍ଲିଆମେଣ୍ଟାରୀ ସେକ୍ରେଟାରୀ ଥା'ନ୍ତି। ମହାରାଜାଙ୍କ ଭାଷଣ ପୂର୍ବରୁ ମଙ୍ଗରାଜବାବୁ ଭାଷଣ ଦେଲେ। ଗଗନ ପବନ କଂପିଗଲା। ଅନର୍ଗଳ ତେଜୀୟାନ୍ ଭାଷଣ। ତାଙ୍କର ଭାଷଣ ଶୁଣିବା ପାଇଁ କି, ଛାତ୍ର, ଛାତ୍ରୀ ହଜାର ହଜାର ଦର୍ଶକ ଉପସ୍ଥିତ ଥା'ନ୍ତି। ତାଳି, ଉପରେ ତାଳି। ତାଙ୍କୁ ମୁଁ ଚିହ୍ନିବା ପୂର୍ବରୁ ତାଙ୍କର ବଡ଼ଭାଇଙ୍କୁ ଭଲଭାବେ ଜାଣିଥିଲି। କେନ୍ଦ୍ରାପଡ଼ା ଉଚ୍ଚବିଦ୍ୟାଳୟରେ ପଢ଼ିବାବେଳେ ସ୍ୱର୍ଗୀୟ ନିଶାମଣି ମଙ୍ଗରାଜ ଆମମାନଙ୍କୁ କୁସ୍ତିକସରତ ଶିଖାଉଥାନ୍ତି। କଂଗ୍ରେସ ମନ୍ତ୍ରିମଣ୍ଡଳ ପୂର୍ବରୁ ଭାଙ୍ଗିଯାଇଥାଏ। ପ୍ରଧାନମନ୍ତ୍ରୀ ପଦରେ ସ୍ୱର୍ଗୀୟ ବିଶ୍ୱନାଥ ଦାସ ଇସ୍ତଫା ଦେଇଥାନ୍ତି। କେତେକ ପ୍ରଦେଶରେ ମିଳିତ ମନ୍ତ୍ରିମଣ୍ଡଳ ଗଠିତ ହେଲା। ଓଡ଼ିଶାରେ ମଧ୍ୟ ହେଲା। ପାରଳା ମହାରାଜା ପ୍ରଧାନମନ୍ତ୍ରୀ ହେଲେ। ମଙ୍ଗରାଜବାବୁ ସେତେବେଳେ ପାର୍ଲିଆମେଣ୍ଟାରୀ ସେକ୍ରେଟାରୀ। ମିଳିତ ମନ୍ତ୍ରିମଣ୍ଡଳର ବିଶେଷ ସହଯୋଗୀ ଥିଲେ ମଙ୍ଗରାଜବାବୁ। ତାଙ୍କ ସଂଗେ ପଣ୍ଡିତ ନୀଳକଣ୍ଠ ଦାଶ, ଗୋଦାବରୀଶ ମିଶ୍ର ତଥା ଅନ୍ୟମାନେ, ସମସ୍ତେ କଂଗ୍ରେସରୁ ବହିଷ୍କୃତ ହେଲେ। ୧୯୨୧ରୁ ପ୍ରାୟ ୧୯୪୨ ଭାରତ ଛାଡ଼ ଆନ୍ଦୋଳନ ସହ ବାରମ୍ବାର ଜେଲ୍ ଭୋଗିଛନ୍ତି। ସେ ଜଣେ ଓଡ଼ିଶାର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ। ତାଙ୍କର ଓଡ଼ିଶା ତଥା ଓଡ଼ିଶାର ସବୁ ଗଡ଼ଜାତ ସହିତ ସଂପର୍କ ମଧ୍ୟ ରଖିଥାନ୍ତି। ଡକ୍ଟର ମହତାବ ବାବୁଙ୍କର ସେ ସହପାଠୀ ଓ ନେତାଜୀ ସୁଭାଷ ବୋଷଙ୍କ ସଂଗେ ତାଙ୍କର ଉତ୍ତମ ସଂପର୍କ ମଧ୍ୟ ଥିଲା। ଏସବୁ କଥା ତା'ଙ୍କ ମୁହଁରୁ ମୁଁ ଶୁଣିଛି।

ଭାରତ ସ୍ୱାଧୀନ ହେବା ପୂର୍ବରୁ ୧୯୪୬ରେ ସ୍ୱର୍ଗୀୟ ଭୀମଚରଣ ରାଉତଙ୍କୁ ଅଧ୍ୟାପକ ଭାବେ ରେଭେନ୍‌ସା କଲେଜରେ ନିଯୁକ୍ତି ମିଳିଲା ସତ, ବ୍ରାହ୍ମଣ, କରଣ ପିଲାମାନେ ଚଷା ହାତରେ ପାଠ ପଢ଼ିବେ ନାହିଁ ବୋଲି ତାଙ୍କ ନିଯୁକ୍ତିର ବିରୋଧ କଲେ। ଶେଷକୁ ତାଙ୍କର ନିଯୁକ୍ତି ରଦ୍ଦ୍ କରାଗଲା। ଖଣ୍ଡାୟତମାନଙ୍କ ମଧ୍ୟରେ ଏକ ଜାଗରଣ ଆରମ୍ଭ ହେଲା। ନିଖିଳ ଉତ୍କଳ ଖଣ୍ଡାୟତ–କ୍ଷତ୍ରିୟ ମହାସଭା ଗଠିତ ହେଲା। ଗୋପାଳମାନେ ଏ ସଭା ସହିତ ସହଯୋଗ ରଖିଲେ। ସେତେବେଳେ ମଙ୍ଗରାଜବାବୁ କଂଗ୍ରେସରୁ ଅଲଗା ଥା'ନ୍ତି। ହେଲେହେଁ ସେ ହେଉଛନ୍ତି ଖାଣ୍ଟି କଂଗ୍ରେସ ନେତା। ନିର୍ଭୀକବାଦୀ ଓଡ଼ିଶା ସାରା ଜଣାଶୁଣା। ଆମର କେନ୍ଦ୍ରାପଡ଼ାର କଂଗ୍ରେସ କହିଲେ ମଙ୍ଗରାଜବାବୁଙ୍କୁ ସମସ୍ତେ ଜାଣନ୍ତି ଓ ବୁଝନ୍ତି। କଂଗ୍ରେସ ଅନୁଷ୍ଠାନ, ମିଳିତ ମନ୍ତ୍ରିମଣ୍ଡଳ ଯୋଗୁ ମଙ୍ଗରାଜବାବୁଙ୍କୁ ଅଲଗା ରଖିଥାନ୍ତି।

ସେତିକିବେଳେ ବହୁ ବିଶିଷ୍ଟ ଲୋକ ମଙ୍ଗରାଜବାବୁଙ୍କୁ ବୁଝାଇ ସୁଝାଇ ଖଣ୍ଡାୟତ (କ୍ଷତ୍ରିୟ) ମହାସଭାର ସଭାପତି କରାଇଲେ। ୧୯୪୭ରେ ମୁଁ ସ୍କୁଲ ଛାଡ଼ି କଟକରେ ରହୁଥାଏ। ମୁଁ ଜଣେ କର୍ମୀଭାବେ ୧୯୩୮ରୁ କଂଗ୍ରେସ ଅନୁଷ୍ଠାନ ସହିତ ସଂପର୍କ ରଖିଥାଏ ଓ ଭାରତ ଛାଡ଼ ଆନ୍ଦୋଳନରେ ଭାଗନେଇ ଆତ୍ମଗୋପନ କରି ପଶ୍ଚିମବଙ୍ଗର

ଚ଼ବିଶପ୍ରଗନାରେ କିଛିଦିନ କଟାଇ ଫେରିଲି । ମଙ୍ଗରାଜବାବୁ ସଂସ୍ପର୍ଶରେ ଆସିଛି । ତାଙ୍କରି ପରାମର୍ଶରେ ମଧ୍ଧ ଚ଼ଳେ । ତାଙ୍କରି ଡାକରାରେ ୧୯୪୮ରେ ମହାସଭା ଅଫିସ୍‌ରେ ମୁଁ ଜଣେ ସଂଗଠକ ଭାବେ ରହିଲି । "ନାୟକ" ବୋଲି ଏକ ସାପ୍ତାହିକ ପତ୍ରିକା ବାହାରୁଥାଏ । ମହାସଭା ତଥା ପତ୍ରିକାର ସମ୍ପାଦକ ଥା'ନ୍ତି ସ୍ୱର୍ଗୀୟ ନୃସିଂହ ଚ଼ରଣ ସାମନ୍ତସିଂହାର ପୂର୍ବରତ ସଂସଦ । ମୋତେ ବିଭିନ୍ନ ଆଡ଼କୁ ପଠାନ୍ତି । ଟାଟା, ଖଡ଼ଗପୁର, କଲିକତା, ପୁରୀ ଓ ଗଂଜାମ ଅଂଚ଼ଳକୁ । ମୁଁ ନିର୍ଦ୍ଦେଶାନୁଯାୟୀ ସୁସ୍ବରୁରୂପେ କାର୍ଯ୍ୟକରି ଫେରେ । ନାୟକ ପତ୍ରିକାରେ କିଛି ମତାମତ ଓ ଲେଖା ଦେବାକୁ ହେଲେ ମଙ୍ଗରାଜବାବୁ ଡାକନ୍ତି ମୁଁ ଲେଖେ । ମୁଁ ନିଷ୍ଠାର ସହ ନିର୍ଭୀକଭାବେ ଅବୈତନିକ ସଂଗଠକ ରୂପେ କାର୍ଯ୍ୟକରେ ବୋଲି ମୋତେ ସେ ସୁନାମଣି ବୋଲି ଡାକୁଥିଲେ । ଖଣ୍ଡାୟତ (କ୍ଷତ୍ରିୟ) ଯୁବକମାନଙ୍କୁ ଟ୍ରେନିଂ ଦେବାର ବ୍ୟବସ୍ଥା ହେଲା । ସାରା ଓଡ଼ିଶାରୁ ଚ଼ାଳିଶ ଜଣ ଯୁବକ ଆସି ଟ୍ରେନିଂ ପାଇଲେ । ଟ୍ରେନିଂ କ୍ୟାମ୍ପପଡ଼ିଲା ମହାନଦୀ ଆରପଟ ହରିଖଳାଠାରେ । ମୁଁ କ୍ୟାମ୍ପ ଗ୍ୱାର୍ଜରେ ରହିଲି । ଯାହା କିଛି ଆବଶ୍ୟକପଡ଼େ ମୋତେ ସେ ବିଶ୍ୱସ୍ତଭାବେ କଟକସ୍ଥ ତାଙ୍କ ଘରକୁ ପଠାନ୍ତି । ସେତେବେଳେ ବିଜୟବାବୁଙ୍କୁ ଛାଡ଼ିଦେଲେ ତାଙ୍କର ଅନ୍ୟ ପୁଅମାନେ ସାନ ସାନ ଥା'ନ୍ତି । ୧ ମାସ ପରେ ଟ୍ରେନିଂ ଶେଷ ହେଲା । ଶୋଭାଯାତ୍ରା ବାହାରିଲା । ସ୍ଲୋଗାନ ଗ୍ୱଲିଥାଏ । ବୀର ମଙ୍ଗରାଜକି, ଜୟ, ଖଣ୍ଡାୟତ (କ୍ଷତ୍ରିୟ) ମହାସଭା କି, ଜୟ । ଗଗନପବନ କମ୍ପିଯାଉଥାଏ । କଟକସାରା ପରିକ୍ରମା ପରେ ରାଜାବଗିଗ୍ୱରେ ପହଞ୍ଚିଲୁ ।

ସେତେବେଳେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥା'ନ୍ତି ମହତାବବାବୁ । କିଛିଦିନ ପରେ କେନ୍ଦ୍ରରେ କ୍ୟାବିନେଟ୍ ମନ୍ତ୍ରୀ ହେଲେ, ରହିଲେ ଦିଲ୍ଲୀରେ । ମହାସଭାର କାର୍ଯ୍ୟ ଗ୍ୱଲିଥାଏ । ତା'ର କିଛିଦିନ ପରେ ଦିଲ୍ଲୀ ମନ୍ତ୍ରିମଣ୍ଡଳରୁ ଇସ୍ତଫାଦେଇ ବମ୍ବେର ରାଜ୍ୟପାଳ ହେଲେ । ସେତେବେଳେ ନବବାବୁ ଥା'ନ୍ତି ଓଡ଼ିଶାର ମୁଖ୍ୟମନ୍ତ୍ରୀ । ନାନା କଟକଣାଥାଏ । ହେଲେ ହେଁ ଆମର ମହାସଭାର କାର୍ଯ୍ୟ ଗ୍ୱଲିଥାଏ । ବମ୍ବେର ରାଜ୍ୟପାଳ ପଦବୀରୁ ଇସ୍ତଫା ଦେଇ ମହତାବବାବୁ ଫେରିଲେ ଓଡ଼ିଶାକୁ । ୨ ଥର ପାଇଁ ହେଲେ ମୁଖ୍ୟମନ୍ତ୍ରୀ । ସେତେବେଳେ ମହତାବବାବୁ, ମଙ୍ଗରାଜବାବୁ, ପଣ୍ଡିତ ନୀଳକଣ୍ଠ ଦାଶ ଓ ଗୋଦାବରୀଶ ମିଶ୍ର ପ୍ରଭୃତିଙ୍କ ଉପରୁ କଂଗ୍ରେସର ଯେଉଁ କଟକଣା ଥିଲା, ତାହା ଉଠାଇଦେଲେ । ମହାସଭା ବନ୍ଦ ହେଲା । ଥରେ ରାଜନୈତିକ କାର୍ଯ୍ୟରେ ମଙ୍ଗରାଜବାବୁ ଆଳି ଯାଇଥାନ୍ତି । ସେଠାରୁ ଫେରି ଆମଘରେ ଦୁଇଦିନ ରହିଲେ । ବିଭିନ୍ନଆଡ଼ର ବହୁ କର୍ମୀ ଥା'ନ୍ତି । ସମସ୍ତଙ୍କ ପାଇଁ ଖାଇବା ରହିବାର ବ୍ୟବସ୍ଥା କରାଯାଇଥାଏ । ଯୁଆଡ଼େ ଗଲେ ମୋତେ ସଂଗରେ ନେଇଯାଆନ୍ତି । ସମୟ ବଦଳିଲା, ମହତାବବାବୁ, ପଣ୍ଡିତ ନୀଳକଣ୍ଠ ଦାଶଙ୍କୁ ଓଡ଼ିଶା ବିଧାନସଭାର ବାଚ଼ସ୍ପତି ଓ ମଙ୍ଗରାଜବାବୁଙ୍କୁ ଉପବାଚ଼ସ୍ପତି କରାଇଲେ ।

ବହୁବାର ମୁଁ ତାଙ୍କ ସଂଗେ ମିଶିଛି । ସଭାସମିତିରେ ଯୋଗ ଦେଇଛି । ତାଙ୍କ ଭାଷଣ ସମସ୍ତଙ୍କ ମନରେ ନୂଆ ଜାଗରଣ ସୃଷ୍ଟି କରିଦିଏ । ମୁଁ ଜଣେ ତାଙ୍କର ବିଶ୍ୱସ୍ତ କର୍ମୀ ଥିଲି ।

ଗ୍ରାମ- ଅଣ୍ଡରା-ବହୁପୁର
ଜି- କେନ୍ଦ୍ରାପଡ଼ା

• • • •

# ଯଦୁମଣି : ଏକ ଅଲୌକିକ ପ୍ରତିଭା

ଡାକ୍ତର ବେଣୁଧର ବଳିଆରସିଂହ

ଊନବିଂଶ ଶତାବ୍ଦୀର ପ୍ରାକ୍‌କାଳରେ ଉତ୍କଳମାତାର ବରପୁତ୍ର ଭାବରେ ଯେଉଁ ମୁଷ୍ଟିମେୟ ମନୀଷୀଗଣ ଜନ୍ମଲାଭ କରିଥିଲେ ସେମାନଙ୍କ ମଧ୍ୟରେ ସ୍ୱର୍ଗତ ଯଦୁମଣି ମଙ୍ଗରାଜ ଅନ୍ୟତମ। ପଣ୍ଡିତ ଗୋଦାବରୀଶ ମିଶ୍ର, ଲିଙ୍ଗରାଜ ମିଶ୍ର, ଲିଙ୍ଗରାଜ ପାଣିଗ୍ରାହୀ, ଆଗ୍ରର୍ଯ୍ୟ ହରିହର ଦାଶ, ପଣ୍ଡିତ କୃପାସିନ୍ଧୁ ମିଶ୍ର, ପଣ୍ଡିତ କୃପାସିନ୍ଧୁ ହୋତା ଇତ୍ୟାଦି ଥିଲେ ସତ୍ୟବାଦୀ ବକୁଳବନର କେନ୍ଦ୍ରବିନ୍ଦୁ। ଉତ୍କଳମଣି ଗୋପବଂଧୁଙ୍କ ନୀତି ଓ ଆଦର୍ଶରେ ଅନୁପ୍ରାଣିତ ହୋଇ ଓଡ଼ିଶାର ପୁରପଲ୍ଲୀରେ ଦୁର୍ଦ୍ଧର୍ଷ ଫିରିଙ୍ଗି ଶାସନ ବିରୁଦ୍ଧରେ ସ୍ୱରଉତ୍ତୋଳନ କରିବା ସଂଗେ ସଂଗେ ଶିକ୍ଷାର ପ୍ରଗ୍ୱର ଓ ପ୍ରସାର ପାଇଁ ସେମାନେ ପଣ କରିଥିଲେ।

ଏହି ପରିପ୍ରେକ୍ଷୀରେ ଯଦୁମଣି ମଙ୍ଗରାଜ ସ୍ୱାଧୀନତା ସଂଗ୍ରାମର ଜଣେ ଟାଣୁଆ ରଥୀ ଥିଲେ। ଖୋରଧା ପାଇକମାନଙ୍କର ବଳିଷ୍ଠ ବିଦ୍ରୋହ ତାଙ୍କୁ ଅଭିଭୂତ କରିଥିଲା। ସେ ତାଙ୍କ ଜୀବନର ମଧ୍ୟାହ୍ନ ସମୟରେ ପାଇକମାନଙ୍କୁ ସଂଗଠିତ କରି ସେମାନଙ୍କ ଅଦମ୍ୟ ଶକ୍ତିର ପରାକାଷ୍ଠା ପ୍ରତିପାଦନ କରିବା ପାଇଁ ଉଦ୍ୟମ କରିଥିଲେ। ଖୋରଧାର ବିଭିନ୍ନ ଅଞ୍ଚଳରେ ପାଇକ ଆଖଡା ଓ ପାଇକସେନା ଗଠନ କରି ସେମାନଙ୍କୁ ଶାରୀରିକ ତାଲିମ ଦେବାପାଇଁ ବହୁ ପ୍ରୟାସ କରି ଅନେକାଂଶରେ ସଫଳ ହୋଇଥିଲେ। ନରଣଗଡ, ଗଡ଼ମାଣିତ୍ରୀ, ବାଣପୁର, ଘୁମୁସର ଓ ଚନ୍ଦକା ଆଦି ବିଭିନ୍ନ ସ୍ଥାନରେ କେତେକ ତାଲିମ ଶିବିର ପ୍ରତିଷ୍ଠା କରିଥିଲେ।

ତାଙ୍କର ଉଦ୍ଦେଶ୍ୟ ଥିଲା ମହାନ୍‌। "ଏମାନେ ଦିନେ ନା ଦିନେ ସ୍ୱାଧୀନ ଭାରତର ସେନାବାହିନୀରେ "ପାଇକ ରେଜିମେଣ୍ଟ" ପ୍ରତିଷ୍ଠା କରି ଉତ୍କଳ ଜନନୀଙ୍କର ଶ୍ରେଷ୍ଠତ୍ୱ ପ୍ରତିଷ୍ଠା କରିବେ। ସେ ଥିଲେ କର୍ମଠ ଓ ପ୍ରବୀଣ ବକ୍ତା। ବାକ୍‌ଦେବୀଙ୍କର ବରପୁତ୍ର କହିଲେ ଅତ୍ୟୁକ୍ତି ହେବନାହିଁ। ତାଙ୍କର ନୀତି ଥିଲା, ବିନା ସଂଗ୍ରାମରେ କୌଣସି କାର୍ଯ୍ୟରେ ସଫଳତା ମିଳିବ ନାହିଁ।' ସେ ଥିଲେ ନିର୍ଭୀକ ଓ ଅଗ୍ରଣୀ ସେନାପତି। 'ପଛଘୁଞ୍ଚା ନାହିଁ ବୀରର ଜାତକେ', ଥିଲା ତାଙ୍କର ମହାମନ୍ତ୍ର। ତେଣୁ ଖରସୁଆଁ, ଷଢେଇକଳା ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ପାଇଁ ଉତ୍କଳର ଅନ୍ୟାନ୍ୟ ବରପୁତ୍ରମାନଙ୍କ ସହ ସଂଗ୍ରାମରେ ସେ ଅଗ୍ରଗାମୀ ଥିଲେ।

ସଂଗୀନ ମୂନକୁ ତାଙ୍କର ତିଳେମାତ୍ର ଶଙ୍କା ନଥିଲା। ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ଆନ୍ଦୋଳନରେ ପୁରୀର ବୀର ଯୁବକ ବେଙ୍ଗପାଣିଆର ବଳୀଦାନ ସାରା ଓଡ଼ିଶାରେ ବିପ୍ଳବର ବହ୍ନି ଜାଳି ଦେଇଥିଲା। ବିପ୍ଳବୀ ମଙ୍ଗରାଜ କଟକ, ପୁରୀ, ବାଲେଶ୍ୱର, ବ୍ରହ୍ମପୁର ଗ୍ୱରିଆଡେ ବୁଲି ତାଙ୍କ ଓଜସ୍ୱିନୀ ଭାଷଣରେ ଅଭୂତପୂର୍ବ ଉନ୍ମାଦନା ସୃଷ୍ଟି କରିଥିଲେ। ତାଙ୍କର ହାସ୍ୟରସାତ୍ମକ ଢଗଢ଼ମାଳିଭରା ବକ୍ତୃତା ସମବେତ ଜନତାଙ୍କ ମନରେ ଅପୂର୍ବ ଉଲ୍ଲାସ ସୃଷ୍ଟି କରୁଥିଲା। କୌଣସି ସଭାରେ

ଯଦୁମଣି ମଙ୍ଗରାଜଙ୍କ ଆଗମନବାର୍ତ୍ତା ପ୍ରଗ୍ରର ହେବା ସଂଗେ ସଂଗେ ବହୁ ଜନସମାଗମ ହେଉଥିଲା। କାରଣ ହେଲା ତାଙ୍କର ଅଭିନବ, ଉତ୍ସାହ-ଉଦ୍ଦୀପକ ଭାଷଣ ଶୈଳୀ।

ଜାତୀୟ ସ୍ତରରେ ମହାନ୍ ନେତ୍ରୀ ସରୋଜିନୀ ନାଇଡୁ ସ୍ୱାଧୀନତା ଆନ୍ଦୋଳନରେ ଜଣେ ପ୍ରବୀଣ ବକ୍ତା ଭାବରେ ଖ୍ୟାତି ଅର୍ଜନ କରିଥିଲେ। ତାଙ୍କ ଭାଷଣ ଏତେ ମନମୁଗ୍ଧକର ଓ ଶ୍ରୁତିମଧୁର ଥିଲା ଯେ ତାଙ୍କୁ 'ଭାରତର କୋକିଳ' ଆଖ୍ୟା ଦିଆଯାଇଥିଲା। ସେହିଭଳି ଯଦୁମଣି ମଙ୍ଗରାଜ ଯେକୌଣସି ପରିସ୍ଥିତିରେ ସମ୍ମୁଖୀନ ହୋଇ ନିର୍ଭୀକ ଭାବରେ ବହୁ ତଥ୍ୟ ସମ୍ବଳିତ ଓଜସ୍ୱିନୀ ବକ୍ତୃତା ଦେବାର ଦକ୍ଷତା ଅର୍ଜନ କରିଥିଲେ। ତେଣୁ ସେ କାଳରେ ସେ ଜଣେ ସୁବକ୍ତା ଭାବରେ ଖ୍ୟାତି ଅର୍ଜନ କରିଥିଲେ।

ଆଜି ଯଦୁମଣି ମଙ୍ଗରାଜ ଆମ ଭିତରେ ନାହାନ୍ତି। କିନ୍ତୁ ଦେଶପ୍ରେମୀ, ସାହସୀ, ପ୍ରବୀଣ ବକ୍ତା ଓ ଉତ୍କଳର ଜଣେ ବରପୁତ୍ର ଭାବରେ ସେ ଚିରକାଳ ଅମର ରହିବେ।

ନରଣଗଡ଼
ଜିଲ୍ଲା-ଖୋରଧା

• • • •

ସନ୍ଥବାଣୀ ଶୁଣ, ଶାସ୍ତ୍ର ପଢ, ବିଦ୍ୱାନ ହୁଅ କିନ୍ତୁ ଯଦି ଈଶ୍ୱରଙ୍କୁ ହୃଦୟରେ ସ୍ଥାନ ନଦିଅ ତେବେ କିଛି କଲ ନାହିଁ।

—ବାପୁଜୀ

# ଏପରି ଥିଲେ ଯଦୁମଣି

ବାମନ ମିଶ୍ର

କେତୋଟି ଘଟଣାରୁ ମଙ୍ଗରାଜଙ୍କ ପ୍ରତ୍ୟୁତ୍ପନ୍ନମତିର ଚିତ୍ର ମିଳିଥାଏ। ପୁରୀ ସତ୍ୟବାଦୀ ନିର୍ବାଚନ ମଣ୍ଡଳୀରୁ ପଣ୍ଡିତ ନୀଳକଂଠ ଦାଶ ବିଧାନସଭା ପାଇଁ ପ୍ରାର୍ଥୀ ଥାଆନ୍ତି। ମଙ୍ଗରାଜେ ଶାସନମାନଙ୍କରେ ପଣ୍ଡିତ ଦାଶଙ୍କ ପାଇଁ ପ୍ରଚାର କରୁଥାନ୍ତି। ଶାସନସବୁ ଶିକ୍ଷିତ ଅଞ୍ଚଳ। ଜଣେ କେହି ପଚାରିଲେ ବାବୁ ବିଧାନସଭାରେ ତ କଂଗ୍ରେସ ଦଳ ସଂଖ୍ୟାଗରିଷ୍ଠ। ଆମେ ପଣ୍ଡିତଙ୍କୁ ଭୋଟଦେଇ ଆମ ଭୋଟକୁ ପାଣିରେ ପକାଇବୁ କାହିଁକି ? ସମସ୍ତେ ଭାବିଲେ ଏଥିରେ ମଂଗରାଜଙ୍କ ଅକଲ ଗୁଡୁମ୍ ହେବ, କିନ୍ତୁ ସଂଗେ ସଂଗେ ସେ ଉତର ଦେଲେ "ଆହେ, ଜଙ୍ଗଲରେ ମାଙ୍କଡପଲ ଥାଆନ୍ତି। ଗୋଟାଏ ମହାବଳ ଗର୍ଜନରେ ସେମାନେ ଭୀତତ୍ରସ୍ତ ହୁଅନ୍ତି। ଭୟରେ କେତେକଙ୍କ ପ୍ରାଣ ଯାଏ। ସେହିପରି ବିଧାନସଭାରେ ଦୁଇ ପଣ୍ଡିତ ନୀଳକଂଠ ଓ ଗୋଦାବରୀଶ ସିଂହ ଓ ବାଘ ପରି ପ୍ରତାପଶାଳୀ ହେବେ ତାଙ୍କ କଥା କିଏ ନଶୁଣିବ ଯେ ? ସେମାନେ ଏକ ନୁହନ୍ତି ଅନେକ। ସଭାରେ ଘନ ଘନ କରତାଳି ହେଲା। ପଣ୍ଡିତେ ଜିଣିଲେ।

ସ୍ୱର୍ଗତ ମଙ୍ଗରାଜ ଓ ସ୍ୱର୍ଗତ ଦୀନବଂଧୁ ସାହୁ କେନ୍ଦ୍ରାପଡ଼ା ବିଧାନସଭା ନିର୍ବାଚନ ମଣ୍ଡଳୀରୁ ପାଳି କଲାପରି ଜିତନ୍ତି। ଉଭୟେ ସେ ଅଞ୍ଚଳର ସୁନାମଧନ୍ୟ ବ୍ୟକ୍ତି ଥିଲେ। ମଙ୍ଗରାଜ ଥିଲେ ଅଜାତଶତ୍ରୁ। ମାତ୍ର ସାହୁ ତାଙ୍କୁ ଅନ୍ତରରେ ଭଲ ପାଆନ୍ତି ନାହିଁ ବୋଲି ଶୁଣାଯାଉଥାଏ। ମଂଗରାଜେ ଥିଲେ ଆଚାଣ୍ଡାଳ ବ୍ରାହ୍ମଣ ଓ ଆବାଳ-ବୃଦ୍ଧ-ବନିତାଙ୍କର ପରମବଂଧୁ। ସାହୁଙ୍କ ମାତୃଦେବୀଙ୍କୁ ମଙ୍ଗରାଜ ନିଜ ମା'ର ସମ୍ମାନ ଦେଉଥିଲେ। ସାହୁଙ୍କ ମାତା ଇହଧାମ ତ୍ୟାଗକଲେ। ମାଙ୍କ ଶ୍ରାଦ୍ଧକୁ ବହୁ ବ୍ୟକ୍ତିଙ୍କୁ ନିମନ୍ତ୍ରଣ କରିଥିଲେ। ମାତ୍ର ମଙ୍ଗରାଜଙ୍କୁ ନିମନ୍ତ୍ରଣ କରିନଥିଲେ। ସାହୁଙ୍କ ବନ୍ଧୁବାନ୍ଧବ ଓ ଭଦ୍ରବ୍ୟକ୍ତିଙ୍କ ପଂକ୍ତି ଭୋଜନ ପରେ କାଙ୍ଗାଳ ଭୋଜନ ହେଲା। ମଙ୍ଗରାଜ କୁଆଡେ ମୁଣ୍ଡରେ ଗୋଟିଏ ଗାମୁଛା ପକାଇ କାଙ୍ଗାଳ ଭୋଜନ ସ୍ଥାନରେ ବସିପଡିଲେ। ସାହୁଙ୍କ କାନକୁ କଥାଟା ଗଲା। ସେ ସଂଗେ ସଂଗେ ଦଉଡି ଆସି ହାତଯୋଡି ତାଙ୍କୁ ଘରକୁ ନେଇଗଲେ। ମଙ୍ଗରାଜ ହସି ହସି କହିଲେ 'ଭାଇ ତୁମ ମା ମୋର ବି ମା। ମୋ ବିବେକ କହିଲା, ତୁମେ ସିନା ଡାକିଲ ନାହିଁ ସାଧାରଣ ଭୋଜନକୁ, କାଙ୍ଗାଳ ଭୋଜନ ତ ସମସ୍ତଙ୍କ ପାଇଁ ଉନ୍ମୁକ୍ତ। ମୁଁ ଆସି ଟିକ୍ତ ନଖାଇଲେ ମାଉସୀ ସ୍ୱର୍ଗରେ ଥାଇ କ'ଣ କହିବେ ? ମୁଁ ସେଥିପାଇଁ ଆସିଲି। ମଙ୍ଗରାଜଙ୍କ ଉଦାରତା ଏଥିରୁ ସ୍ପଷ୍ଟ ପ୍ରମାଣିତ।

ବିମଳା ଭବନ
ଭୁବନେଶ୍ୱର-୨

• • • •

# ମଙ୍ଗରାଜ ଥାଆନ୍ତେ କି....

ବୈରାଗୀ ଚରଣ ସାହୁ

ଚଳିତ ଶତାବ୍ଦୀର ତୃତୀୟ ଦଶନ୍ଧିର ଶେଷଭାଗ ବେଳକୁ ବ୍ରିଟିଶବାଦ ଓ ଭାରତୀୟ ସନ୍ତ୍ରାନ୍ତବାଦ ଚରମ ସୀମାରେ ପହଞ୍ଚିଥିଲା ଦେଶ ଅଜ୍ଞାନ ଅନ୍ଧକାରରେ ପୂର୍ଣ୍ଣଥିଲା କହିଲେ ଅତ୍ୟୁକ୍ତି ହେବନାହିଁ। ଗ୍ରାମବହୁଳ ଭାରତରେ କାଁ ଭାଁ ଯେଉଁମାନେ କିଛି ଆଲୋକପାତ କରୁଥିଲେ, ସେମାନେ ଥିଲେ ସାମନ୍ତ ତଥା ଜମିଦାର ଗୋଷ୍ଠୀ, ସେହିମାନେ ଥିଲେ ବକ୍ତା, ନ୍ୟାୟଦାତା ଓ ସମାଜର ଆଦର୍ଶ ପୁରୁଷ।

୧୯୧୪ ମସିହାରୁ ବାପୁଜୀ ଦକ୍ଷିଣ ଆଫ୍ରିକାରୁ ଆସି, ଭାରତର ଜାତୀୟ କଂଗ୍ରେସକୁ ନୂଆ ମୋଡ ଦେଲେ। ତାଙ୍କରି ଆହ୍ୱାନରେ ଆକୁମାରୀ ପାଞ୍ଚଲକ୍ଷରୁ ଊର୍ଦ୍ଧ୍ୱ ଗ୍ରାମର ସପନ ଭାଙ୍ଗିଗଲା ସତ, କିନ୍ତୁ ବିଟ୍ରିଶ ଶାସନର ସମ୍ମୁଖୀନ ହବାକୁ ସତ୍‌ସାହସର ଅଭାବ ଅନୁଭୂତ ହେଉଥିଲା, ଯାହାହେଉ ଗାନ୍ଧିଜୀଙ୍କର ଅହିଂସା ବାଣୀରେ ଉଦ୍‌ବୁଦ୍ଧ ହୋଇ ପ୍ରାଦେଶିକ ନେତାମାନେ ଗାଁଗଣ୍ଡାରେ ବୁଲି ଠାବେ ଠାବେ ସଭାସମିତି କରି ଗ୍ରାମୀମୂଲିଆଙ୍କ ପ୍ରାଣରେ ନବଜାଗରଣ ସୃଷ୍ଟି କରିଥିଲେ।

ଆମ ଓଡ଼ିଶାରେ ଯେଉଁ ମୁଷ୍ଟିମେୟ ନେତା ଇଂରେଜ ଶାସନ ବିରୁଦ୍ଧରେ ସ୍ୱର- ଉତ୍ତୋଳନ କରିଥିଲେ, ସେମାନଙ୍କ ମଧ୍ୟରେ "ଯଦୁମଣି ମଙ୍ଗରାଜ" ଅନ୍ୟତମ।

ଇଂରେଜ ଶାସନ ବାଘ ଛେଳିକୁ ଗୋଟିଏ ଘାଟରେ ପାଣି ପିଆଉଥିଲା। ଏହାକୁ ଲକ୍ଷ୍ୟକରି କବିବର ରାଧାନାଥ ରାୟ ଲେଖିଲେ-

*"କିଏ ନ ଡରଇ ଉତ୍‌ପଣ ଟମ୍ପକୁ*
*ନ ଡରଇ କିଏ ଲାଲ ପଗଡ଼ିକୁ" ?*

ବାସ୍ତବିକ ଇଂରେଜ ଶାସନରେ ମାଛି ପଡିଲେ ନବଖଣ୍ଡ। ତଥପି ତତ୍‌କାଳୀନ ନେତାମାନେ ଇଂରେଜ ଶାସନ ବିରୁଦ୍ଧରେ ସ୍ୱରଉତ୍ତୋଳନ କରି ଦେଶର ସ୍ୱାଧୀନତା ଆନ୍ଦୋଳନ କରିଥିଲେ। ମଙ୍ଗରାଜଙ୍କର ଏହି ପରିପ୍ରେକ୍ଷୀରେ ଗୋଟିଏ ଭାଷଣର କିୟଦଂଶ ମୋର ମନେଅଛି।

ଆମେ ଥିଲୁ ସେତେବେଳେ ଆଠ ନଅ ବର୍ଷର ପିଲା। ପ୍ରସଂଗକ୍ରମେ ସେ କହିଲେ-

ସାତ ସମୁଦ୍ର ତେର ନଈ ପାର ହୋଇ ଇଷ୍ଟଇଣ୍ଡିଆ କଂପାନୀ ଭାରତକୁ ବାଣିଜ୍ୟ କରିବାକୁ ଆସିଥିଲା। ଭାରତୀୟମାନଙ୍କ ମଧ୍ୟରେ ଭେଦଭାବ ସୃଷ୍ଟିକରି, ଚକ୍ରାନ୍ତରେ ଦେଶକୁ ଖଣ୍ଡ ଖଣ୍ଡ କରି ଗ୍ରାସ କଲା। ସେ ବୋଲାଉଛି ବ୍ରିଟିଶ୍ କେଶରୀ। ବ୍ରିଟିଶ ଦ୍ୱୀପପୁଞ୍ଜ ଆମ ଓଡ଼ିଶା ରାଜ୍ୟଠାରୁ ସାମାନ୍ୟ କିଛି ବଡ଼। ଭାରତର ତିରିଶ କୋଟି ଲୋକ ପ୍ରିସାବ କଲେ ବ୍ରିଟିଶ ଦ୍ୱୀପପୁଞ୍ଜ ଭାସି ବୁଡିଯିବ। ସିଂହର ଗୁହାରେ ପଶି ତାର ଦାଢିକି ଉପାଡିଦବୁ ତା' ଦାନ୍ତକୁ ଝାଡିଦେବାର ଶକ୍ତି ୩୦କୋଟି ଲୋକଙ୍କର ଅଛି। ତେଣୁ ଆମକୁ ଜାଗିବାକୁ ପଡିବ, ଏକଜୁଟ ହେବାକୁ ପଡିବ, ତ୍ରିରଙ୍ଗ ପତାକା ତଳେ ଗାନ୍ଧିଜୀଙ୍କ ନେତୃତ୍ୱରେ। ସେ ପୁଣି କହୁଥିଲେ ଆମ ଦେଶରୁ କପା ଝୋଟ ଓ ଜଂଗଲଜାତ ଦ୍ରବ୍ୟ ନେଇ ଇଂଲଣ୍ଡରେ କାରଖାନା ସ୍ଥାପନ କରି ଆମକୁ ଆଣି ଲୁଗା ଓ ଝୋଟଜାତ ଦ୍ରବ୍ୟ ବହୁମୂଲ୍ୟରେ ବିକ୍ରି କରୁଛି। ଏ ଦେଶରୁ ଚିରେଇତା ନେଇ ସେଥିରୁ ଏସେନ୍‌ସ ବାହାର କରି, ସେଥିରୁ ଛାପା ମାରି ଆମକୁ ଦୁର୍ଲଭ ଔଷଧ ରୂପେ ବିକ୍ରି କରୁଛି। କିନ୍ତୁ ଏହିସବୁ ଜିନିଷ ଆମ ଦେଶରେ କଳକାରଖାନା ବସେଇ ତିଆରି କରିବା କୌଶଳ ଆମକୁ ଶିଖାଉନାହିଁ, ଏହିପରି ଭାବରେ ମଙ୍ଗରାଜ ମହାଶୟ ତାଙ୍କର ଓଜସ୍ୱିନୀ ଭାଷାରେ ଲୋକମାନଙ୍କୁ ଚେତେଇଦେଇ

ନବଜାଗରଣ ସୃଷ୍ଟି କରିଥିଲେ ।

ଆଉ ଗୋଟିଏ କଥା–କୁସୁପୁର ଗ୍ରାମରେ ସ୍ମରଣାତୀତ କାଳରୁ ରହିଆସିଛି ଏକ "ମହାନାୟକ ସମିତି"। ପ୍ରତି ବର୍ଷ ଦଶହରା ଦିନ ବିରୂପାକୂଳସ୍ଥ ଦଶହରା ପଡିଆରେ ଏକ ସଭା ଅନୁଷ୍ଠିତ ହୁଏ। ମହାନାୟକ ସମିତିର ଯୁବକମାନେ ବହୁ ଖେଳ କସରତ୍ ସହିତ ଖଣ୍ଡାଯୁଦ୍ଧ ମଧ୍ୟ ପ୍ରଦର୍ଶନ କରନ୍ତି। ଏହି ସଭାକୁ ସେ ବର୍ଷ ଆସିଥାନ୍ତି ସଭାପତି ହୋଇ ଶ୍ରୀଯୁକ୍ତ ଯଦୁମଣି ମଙ୍ଗରାଜ। ମହାନାୟକ ସମିତିର ମହିଳାମାନେ ତଥା କୁଳବଧୂମାନେ ସଭାସ୍ଥଳରେ ପରଦା ଭିତରେ ରହିଥାନ୍ତି। ମଙ୍ଗରାଜ ମହାଶୟଙ୍କର ଦୃଷ୍ଟି ପଡିଲା ସେହି ପରଦା ଭିତରେ ଥିବା ମହିଳାମାନଙ୍କ ଉପରେ। ତାଙ୍କ ଦୃଷ୍ଟିରେ ପରଦା ଅନଗ୍ରସରତାର ଏକ ନମୂନା ଥିଲା। ମାତୃଜାତି ଯଦି ପରଦା ପଛଆଡେ ରହେ; ଦେଶ ସ୍ୱାଧୀନତା ସଂଗ୍ରାମ କରିପାରିବ ନାହିଁ ବୋଲି ସେ ନିର୍ଦ୍ଦେଶ ଦେଲେ। ତତ୍କ୍ଷଣାତ୍ ପରଦା ଉଠିଗଲା ସେହିଦିନ ଠାରୁ ଚିରକାଳ ପାଇଁ। କିଛି ବର୍ଷ ପରେ ତାଙ୍କରି ଆହ୍ୱାନରେ ଉଦ୍‌ବୁଦ୍ଧ ହୋଇ, ଏହି ଗ୍ରାମର ଶ୍ରୀମତୀ ନିରୂପମା ଦେବୀ ଲବଣ ସତ୍ୟାଗ୍ରହରେ ଝାସ ଦେଇ, କାରାବରଣ କରିଥିଲେ ଏବଂ ଦଶ–ବାର ଜଣ ଯୁବକ ଅହିଂସା ସଂଗ୍ରାମରେ ଯୋଗ ଦେଇଥିଲେ। ସ୍ୱାଧୀନତା ସଂଗ୍ରାମୀମାନେ ଦୀର୍ଘଜୀବୀ ହୁଅନ୍ତୁ।

ଦ୍ୱିତୀୟ ପର୍ଯ୍ୟାୟରେ ଶ୍ରୀଯୁକ୍ତ ଯଦୁମଣି ମଂଗରାଜଙ୍କ ·ସହିତ ଦେଖାହୁଏ କଟକ ବକ୍ସିବଜାରସ୍ଥ। ତତ୍କାଳୀନ କୁସୁପୁରୁ ମେସ୍‌ରେ ଅହିଂସାର ଚରମ ସଂଗ୍ରାମ ବେଳେ, ଗାନ୍ଧିଜୀଙ୍କ ଡାକରା "କର ବା ମର" (Do orDie)। ଏହି ସମୟରେ ଜଣେ ନିଷ୍ଠାପର ସଚ୍ଚୋଟ କଂଗ୍ରେସ କର୍ମୀ; ରାମବାବୁ, କୁସୁପୁରୁ ମେସ୍‌ରେ ଅବସ୍ଥାନ କରୁଥିଲେ। ଜଣେ ଯୁବକ କୁସୁପୁର ମେସ୍‌କୁ ସନ୍ଦେହ କରି ଗୋପନ ବାର୍ତ୍ତା ନବାପାଇଁ ଆସିଥିବାର ମନେ କରାଗଲା, ତେଣୁ ତାଙ୍କ ଉପରେ ବହୁ ନିର୍ଯାତନା ହୋଇଥିଲା ପରେ ତାଙ୍କୁ ଛାଡି ଦିଆଯାଇଥିଲା। ଠିକ୍ ତା'ପରଦିନ ମଙ୍ଗରାଜ ମହାଶୟ ମେସ୍‌ରେ ଆସି ପହଞ୍ଚିଗଲେ। ଭଲମନ୍ଦ, ହାନିଲାଭ, କଥାବାର୍ତ୍ତା ଶୁଭେଚ୍ଛୁ ଭାବରେ କଲେ, ମେସ୍ ଆଗରେ ଥିଲା ଏକ ନାଗଏୖରି ବୁଦା। ଆମ୍ଭମାନଙ୍କୁ କହିଲେ ଏହି ନାଗ ଏୖରି ପତ୍ର ହାତରେ ଦଳି, କଟା ଘା'ରେ ସାଙ୍ଗେ ସାଙ୍ଗେ ଚିପୁଡ଼ିଦେଲେ, କ୍ଷତ ଜାଗା ଆରୋଗ୍ୟ ହୋଇଯିବ। ମଙ୍ଗରାଜ ମହାଶୟଙ୍କ ମରଶରୀର ମାଟିରେ ମିଶିଯାଇଛି ସତ, କିନ୍ତୁ ତାଙ୍କର ସ୍ୱଦେଶପ୍ରେମ, ସମାଜ ସଂସ୍କାର ସମ୍ବନ୍ଧୀୟ କାର୍ଯ୍ୟାବଳୀ, ଓଜସ୍ୱିନୀ ଭାଷା ନିର୍ଭୀକତା ଅବଧି ଓଡ଼ିଶା ମାଟିର ପୁରପଲ୍ଲୀରେ ଶୁଣିଥିବା ଲୋକର କାନରେ ପ୍ରତିଧ୍ୱନିତ ହେଉଅଛି–ଆଜିର ଅସାମାଜିକତା, ଅନ୍ୟାୟ, ମିଥ୍ୟା, ନାରୀ ଅତ୍ୟାଚାର, ଯୌତୁକ ଜନିତ ବଧୂହତ୍ୟା ଭଳି ଯେତେ ନିର୍ଯାତନା ଦେଖାଦେଉଛି ତାକୁ ଭାବି ମନେ ହୁଏ ମଙ୍ଗରାଜ ଥାଆନ୍ତେ କି.....।

ସତ୍ୟ–ସାଧନା–ସିଦ୍ଧିସଦନ
ଗ୍ରାମ ପୋ.ଅ./କୁସପୁର, କଟକ

• • • •

# ବିପ୍ଳବୀ ବରପୁତ୍ର ଯଦୁମଣି

ବିଜୟ ପାଣି

ପ୍ରଥମ ବିଶ୍ୱଯୁଦ୍ଧର ଅବସାନ ପରେ ୧୩ ଅପ୍ରେଲ୍ ୧୯୧୯ରେ ଜାଲିଆନାୱାଲାବାଗ୍ ହତ୍ୟାକାଣ୍ଡ ପରେ ସାରା ଭାରତରେ ତାର ତୀବ୍ର ପ୍ରତିକ୍ରିୟା ଦେଖାଦେଲା, କଟକର କେତେକ ବୁଦ୍ଧିଜୀବୀ ଯୁବକ ଏବଂ ଛାତ୍ର ଏକତ୍ରିତ ହୋଇ ଜାତୀୟତା ଭାବ ସୃଷ୍ଟି କରିବା ଉଦ୍ଦେଶ୍ୟରେ ଗୋପବଂଧୁ ଚୌଧୁରୀଙ୍କ ନେତୃତ୍ୱରେ "ଭାରତୀ ମନ୍ଦିର" ନାମରେ ଗୋଟିଏ ଅନୁଷ୍ଠାନ ଯଦୁମଣି ମଙ୍ଗରାଜ, ଭାଗିରଥୀ ମହାପାତ୍ର, ହରେକୃଷ୍ଣ ମହତାବ, ରାଜକୃଷ୍ଣ ବୋଷ, ତଥା ଅନ୍ୟାନ୍ୟ କେତେକ କଲେଜ ଛାତ୍ରଙ୍କୁ ନେଇ ଗଠିତ ହୋଇଥାଏ। ସେମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥାଏ ଭାରତୀୟ ଜାତୀୟ ଚିନ୍ତା- ଧାରାକୁ ଜାଗ୍ରତ ରଖିବା, ଏବଂ ଗାନ୍ଧିଜୀଙ୍କ ନେତୃତ୍ୱରେ ପରିଚାଳିତ କଂଗ୍ରେସର ଆଭିମୁଖ୍ୟକୁ ଆଗେଇନେବା।

ଓଡ଼ିଶାରେ ପଣ୍ଡିତ ଗୋପବଂଧୁ ଦାସ ଏବଂ ଉତ୍କଳଗୌରବ ମଧୁସୂଦନ ଦାସଙ୍କ ନେତୃତ୍ୱରେ ସାରା ଓଡ଼ିଶାରେ କଂଗ୍ରେସ ପ୍ରଭାବ ବିସ୍ତାର କରୁଥାଏ। ୧୯୧୬ ରୁ ଗୋପବଂଧୁ କଂଗ୍ରେସ ଅଧିବେଶନମାନଙ୍କରେ ଯୋଗଦେଉଥାନ୍ତି ଏବଂ ମଧୁସୂଦନ ଲକ୍ଷ୍ନୌ ଅଧିବେଶନ ୧୯୧୬ ରେ ନିଖିଳ ଭାରତ କଂଗ୍ରେସ କମିଟିର ସଭ୍ୟ ଭାବେ ନିର୍ବାଚିତ ହୁଅନ୍ତି, କିନ୍ତୁ ପରେ ମଧୁସୂଦନ ଗୋପବଂଧୁଙ୍କୁ ଉକ୍ତ ପଦ ଛାଡିଦିଅନ୍ତି। ଗୋପବଂଧୁ ଓତପ୍ରୋତ ଭାବରେ ଜଣେ ଜାତୀୟବାଦୀ ଓଡ଼ିଆ ନେତା ଥିଲେ। ଓଡ଼ିଶାର ଏକତ୍ରିକରଣ ତାଙ୍କର ମଧ ଧ୍ୟେୟ ଥିଲା, ମଧୁସୂଦନ ଓ ଗୋପବଂଧୁଙ୍କ ମଧ୍ୟରେ ମତାନ୍ତର ଥିଲା। ମଧୁବାବୁ କହୁଥିଲେ ବ୍ରିଟିଶ ସରକାରଙ୍କ ସହ ବୁଝାମଣା ଦ୍ୱାରା ଓଡ଼ିଶା ଅଞ୍ଚଳର ଏକତ୍ରିକରଣ ହୋଇପାରିବ। ଅନ୍ୟଦିଗରେ ଗୋପବଂଧୁଙ୍କ ଚିନ୍ତାଧାରା କଂଗ୍ରେସର ଅସହଯୋଗ ନୀତି ଦ୍ୱାରା ଓଡ଼ିଶାର ଉଦ୍ଧାର କରିବା ଯୁବସଂପ୍ରଦାୟ ଗୋପବଂଧୁଙ୍କ ମତରେ ପ୍ରଭାବିତ ହୋଇଥାନ୍ତି। ଗୋପବଂଧୁ ୧୯୧୬ରେ ଲକ୍ଷ୍ନୌ ଅଧିବେଶନରୁ ଫେରି ପୁରୀଜିଲ୍ଲା କଂଗ୍ରେସ କମିଟି ଗଠନ କରନ୍ତି ଏବଂ ନାଗପୁର କଂଗ୍ରେସ ଅଧିବେଶନକୁ ୧୯୨୦ ଗୋପବଂଧୁଙ୍କ ନେତୃତ୍ୱରେ ୨୭ଜଣ ପ୍ରତିନିଧି ଯୋଗଦିଅନ୍ତି। ସେମାନଙ୍କ ମଧ୍ୟରେ "ଭାରତୀ ମନ୍ଦିର" ଅନୁଷ୍ଠାନରୁ ଯଦୁମଣି ମଙ୍ଗରାଜ, ଭାଗିରଥୀ ମହାପାତ୍ର ଏବଂ ହରେକୃଷ୍ଣ ମହତାବ ପ୍ରତିନିଧିରୂପେ ଯୋଗଦେଇଥିଲେ। ନାଗପୁର ଅଧିବେଶନରେ କଂଗ୍ରେସ ଭାଷା ସୂତ୍ରରେ ପ୍ରଦେଶ କଂଗ୍ରେସ କମିଟି ଗଠନ ନୀତି ଗ୍ରହଣ କଲାପରେ ଓଡିଆ ଜାତୀୟ ଜୀବନରେ ନୂତନ ପ୍ରେରଣା ଜାଗିଉଠିଲା। ନାଗପୁର ଅଧିବେଶନ ପରେ ସିଂହଭୂମିର ଚକ୍ରଧରପୁରଠାରେ ଉତ୍କଳ ସମ୍ମିଳନୀର ଅଧିବେଶନ ୧୯୨୦ ଡିସେମ୍ବର ୩୦ରୁ ୧୯୨୧ ଜାନୁୟାରୀ ତା୧ରିଖ ପର୍ଯ୍ୟନ୍ତ ଅନୁଷ୍ଠିତ ହୁଏ। ଏଥିରେ ମଧୁବାବୁ ସଭାପତିତ୍ୱ କରିବାକୁ ଅସମ୍ମତ ହେବାରୁ ଜଗବଂଧୁ ସିଂହଙ୍କ ସଭାପତିତ୍ୱରେ ସମ୍ମିଳନୀ ଅନୁଷ୍ଠିତ ହୋଇ ଉତ୍କଳ ସମ୍ମିଳନୀକୁ ଭାରତ ଜାତୀୟ କଂଗ୍ରେସର ନୀତି ଓ ଆଦର୍ଶରେ ନିମଜ୍ଜିତ କରାଗଲା।

୧୯୨୧ ମସିହାରେ ଆଦ୍ୟ ଭାଗରେ ବଧିବଦ୍ଧ ବିହାର ଓ ଓଡ଼ିଶା ବାଲେଶ୍ୱର, କଟକ, ପୁରୀ, ସମ୍ବଲପୁର ଓ ସିଂହଭୂମି ଜିଲ୍ଲାକୁ ତଥା ମାଦ୍ରାସରୁ ଗଞ୍ଜାମ ଓ କୋରାପୁଟ ଜିଲ୍ଲାକୁ ନେଇ ପଣ୍ଡିତ ଗୋପବଂଧୁଙ୍କ ନେତୃତ୍ୱରେ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ଗଠିତ ହେଲା ଓ ବିଭିନ୍ନ ଜିଲ୍ଲାର କଂଗ୍ରେସ

ଅନୁଷ୍ଠାନକୁ ସଂଗଠିତ କରିବା ସକାଶେ ବାଲେଶ୍ୱରର ଦାୟିତ୍ୱ ହରେକୃଷ୍ଣ ମହତାବଙ୍କ ଉପରେ, କଟକ ସଦର ଭାଗିରଥୀ ମହାପାତ୍ରଙ୍କ ଉପରେ, କେନ୍ଦ୍ରାପଡ଼ା ଯଦୁମଣି ମଙ୍ଗରାଜଙ୍କ ଉପରେ, ଏବଂ ଯାଜପୁର ରାଜକୃଷ୍ଣ ବୋଷଙ୍କ ଦାୟିତ୍ୱରେ, ପୁରୀ ଜିଲ୍ଲାକୁ ଜଗବଂଧୁ ସିଂହ ଏବଂ କୃପାସିନ୍ଧୁ ମିଶ୍ର ସମ୍ବଲପୁର, ପଣ୍ଡିତ ନୀଳକଂଠ ସିଂହଭୂମିର ଦାୟିତ୍ୱରେ, ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ଉପରେ ତଥା ଗଞ୍ଜାମ କୋରାପୁଟ ଦାୟିତ୍ୱରେ ରହିଲେ ନିରଞ୍ଜନ ପଟ୍ଟନାୟକ।

କଂଗ୍ରେସ୍ ଇତିହାସରେ ୧୯୨୧ ଗୋଟିଏ ସ୍ମରଣୀୟ ବର୍ଷ। କଂଗ୍ରେସ୍ ଅସହଯୋଗ ଆନ୍ଦୋଳନର ଡାକରା ଦେଇ ସତ୍ୟାଗ୍ରହ ଆରମ୍ଭ କରେ। ଏଥିରେ ଓଡ଼ିଶାରୁ ପ୍ରଥମ ଅଧ୍ୟାୟରେ ରାଜକୃଷ୍ଣ ବୋଷ, ଯଦୁମଣି ମଙ୍ଗରାଜ ଏବଂ ସତ୍ୟବାଦୀ ନନ୍ଦ ପ୍ରମୁଖ ଗିରଫ ହୋଇ ଜେଲ୍‌ବରଣ କଲେ। କେନ୍ଦ୍ରାପଡାର ଦାୟିତ୍ୱରେ ରହି ଯଦୁମଣି ମଙ୍ଗରାଜଙ୍କ ଭୂମିକା କନିକା ପ୍ରଜା ଆନ୍ଦୋଳନ ତଥା କଂଗ୍ରେସ୍‌ର କର୍ମ-ପନ୍ଥାରେ ଆବଦ୍ଧ ନରହି ତାଙ୍କ ଓଜସ୍ୱିନୀ ଭାଷଣରେ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ତାଙ୍କ ବ୍ୟକ୍ତିତ୍ୱ ତଥା ନେତୃତ୍ୱ ପ୍ରତି ଜନସାଧାରଣଙ୍କୁ ଆକୃଷ୍ଟ କରି କଂଗ୍ରେସ୍ ପ୍ରୀତି ସହ ଓଡ଼ିଆ ଜାତୀୟ ଜୀବନକୁ ପ୍ରାଣବନ୍ତ କଲା।

ଯଦୁମଣି ମଙ୍ଗରାଜ ଥିଲେ ଜଣେ ବିପ୍ଳବୀ, କୃଷକ ଏବଂ ଶ୍ରମିକ ସଂଗଠକ, ଜଣେ ସୁବକ୍ତା ପ୍ରଗତିଶୀଳ ବିଧାୟକ ତଥା ପୂର୍ଣ୍ଣାଙ୍ଗ ଓଡ଼ିଶା ରାଜ୍ୟ ଗଠନ କରିବା ଦିଗରେ ପ୍ରଗାଢ଼ ଉଦ୍ୟମୀ।

୧୯୩୯ରେ ଭାରତ ଜାତୀୟ କଂଗ୍ରେସ୍‌ର ତ୍ରିପୁରା କଂଗ୍ରେସ୍ ଅଧିବେଶନ ସୁଭାଷ ଚନ୍ଦ୍ର ବୋଷ୍‌ଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୁଏ ଏବଂ ସଭାପତି ପଦପାଇଁ ଗାନ୍ଧିଜୀଙ୍କ ସମର୍ଥିତ ପ୍ରାର୍ଥୀ ଡାକ୍ତର ପଟ୍ଟାଭି ସିତାରାମାୟା ପରାଜିତ ହେବାରୁ ସୁଭାଷ୍ ଚନ୍ଦ୍ର ବୋଷ୍‌ଙ୍କୁ ଗାନ୍ଧିଜୀ ସହଯୋଗରୁ ବଂଚିତ କରାଯିବାରୁ ସୁଭାଷ ଚନ୍ଦ୍ର ବୋଷ୍ କଂଗ୍ରେସ୍ ସଭାପତିତ୍ୱରୁ ବାହାରିଆସି ନିଖିଳ ଭାରତ ଫରୱାର୍ଡ ବ୍ଲକ୍ ପ୍ରତିଷ୍ଠା କଲେ, ଏବଂ ସେଥିରେ ଓଡ଼ିଶାରୁ ପଣ୍ଡିତ ନୀଳକଣ୍ଠ, ଯଦୁମଣି ମଙ୍ଗରାଜ, ଦିବାକର ପଟ୍ଟନାୟକ, ଗୋଦାବରୀଶ ମିଶ୍ର ପ୍ରମୁଖ ବିଶେଷ ଭୂମିକା ଗ୍ରହଣ କଲେ। ୧୯୪୦ ରେ ସୁଭାଷ ବୋଷଙ୍କ କଟକ ତଥା ଓଡ଼ିଶା ପରିଭ୍ରମଣରେ ପଣ୍ଡିତ ନୀଳକଣ୍ଠ, ଯଦୁମଣି ମଂଗରାଜ, ଦିବାକର ପଟ୍ଟନାୟକଙ୍କ ଗହଣରେ ବୁଲି ଫରୱାର୍ଡ଼ ବ୍ଲକ୍‌କୁ ଆଗେଇ ନେବାର ଭାର ନ୍ୟସ୍ତ କଲେ।

ଯଦୁମଣି ମଙ୍ଗରାଜଙ୍କ ସହିତ ମୋର ସଂପର୍କ ପିଲାଟିବେଳୁ। ସିଂହଭୂମି ଜିଲ୍ଲା ଅନ୍ତର୍ଗତ ଚକ୍ରଧରପୁରରେ ବହୁଥର ଆସି ମୋର ସ୍ୱର୍ଗୀୟ ପିତାଙ୍କ ସହ ସିଂହଭୂମିରେ ଓଡ଼ିଆ ଆନ୍ଦୋଳନକୁ ଆଗେଇନେବା ଦିଗରେ ବିଭିନ୍ନ ଅଞ୍ଚଳ ଗସ୍ତକରି ତାଙ୍କର ଓଜସ୍ୱିନୀ ଭାଷଣରେ ଲୋକଙ୍କୁ ପ୍ରଭାବିତ କରୁଥିଲେ। ପ୍ରବାସୀ ଓଡ଼ିଆମାନଙ୍କର କଲିକତା ତଥା ତାର ନିକଟବର୍ତ୍ତୀ ବିଭିନ୍ନ ଶିଳ୍ପାଞ୍ଚଳମାନଙ୍କରେ ତାଙ୍କ ସହଯୋଗ ନେବାର ସୁଯୋଗ ମୋର ମଧ ଘଟିଛି। ଶେଷ ସଂପର୍କ ଓଡ଼ିଶା ବିଧାନସଭାର ମୁଁ ସଭ୍ୟ ଓ ପୁଣି ଯଦୁମଣି ମଙ୍ଗରାଜ ଯେଉଁ କଂଗ୍ରେସ ଅନୁଷ୍ଠାନ ଗଢିବାରେ ତାଙ୍କ ତ୍ୟାଗ ଅବିସ୍ମରଣୀୟ ସେହି କଂଗ୍ରେସ ଅନୁଷ୍ଠାନକୁ ଫେରିଆସି ଓଡ଼ିଶା ବିଧାନ ପରିଷଦର ଉପବାଚସ୍ପତି ପଦ ଅଳଂକୃତ କରିଥିଲେ।

ସେ ଥିଲେ ଜଣେ ପ୍ରଗତିଶୀଳ ଜାତୀୟବାଦୀ ଓଡ଼ିଆ ନେତା, ଓ ଦେଶମିଶ୍ରଣ ଆନ୍ଦୋଳନର ଅନ୍ୟତମ ସାରଥୀ। ମୁଁ ତାଙ୍କ ସମ୍ମାନାର୍ଥେ ତାଙ୍କ ଜନ୍ମ ଶତବାର୍ଷିକୀରେ ମୋର ପ୍ରଣାମ ଜଣାଉଛି।

**ଅଶୋକ ନଗର**
**ଭୁବନେଶ୍ୱର-୯**

• • • •

# ଯଦୁମଣି ମଙ୍ଗରାଜ ଏକ ଅପରାଜୟ ବ୍ୟକ୍ତିତ୍ୱ

## ଯନ୍ତ୍ରଣା ପରୀକ୍ଷିତ

ବହୁ ବ୍ୟକ୍ତି ଜୀବନର ସମସ୍ତ ସୁଖ, ସମ୍ଭୋଗ ତ୍ୟାଗ କରି ବିଦେଶୀ କବଳରୁ ମାତୃଭୂମିକୁ ସ୍ୱାଧୀନ କରିବାପାଇଁ ଆତ୍ମ ଉତ୍ସର୍ଗ କରିଥିଲେ । ସ୍ୱାଧୀନତା ସଂଗ୍ରାମର ଇତିହାସ ସେମାନଙ୍କର ଇତିହାସ ରଖିଥାଇପାରେ, ମାତ୍ର ସାଧାରଣ ଜନତା, ଉତ୍ତରପିଢ଼ିର ଯୁବସମାଜ ଯେଉଁମାନେ ସଂପ୍ରତି ସ୍ୱାଧୀନତାର ମୂଲ୍ୟ ଉପଭୋଗ କରୁଛନ୍ତି; ସେମାନେ ସେହି ମହାରଥୀମାନଙ୍କ ବିଷୟରେ ଆଦୌ ହିସାବ ରଖିନାହାନ୍ତି । ଜାତିର ମାନସପଟରୁ ସେହି ତ୍ୟାଗୀପୁରୁଷମାନଙ୍କର ସ୍ମୃତି କ୍ରମେ କ୍ରମେ ବିସ୍ମୃତ ହେଉଅଛି । ସେହିଭଳି ପୁରୁଷମାନଙ୍କ ଭିତରୁ ସ୍ୱର୍ଗତ ଯଦୁମଣି ମଙ୍ଗରାଜ ଥିଲେ ଅନ୍ୟତମ । ଆମୃତ୍ୟୁ ଯୁବଶକ୍ତିର ପ୍ରତୀକ ଓ ପ୍ରେରଣାର ଉତ୍ସ ଯଦୁମଣି ମଙ୍ଗରାଜଙ୍କର ବିଷୟରେ ଜାତିକୁ ମନେପକାଇ ଦେବାପାଇଁ ୧୯୭୧ ମସିହାରେ ତାଙ୍କର ଶ୍ରାଦ୍ଧବାର୍ଷିକୀ ଅବସରରେ ଗୋଟିଏ ସ୍ମରଣିକା "ମଙ୍ଗରାଜ ସ୍ମରଣେ" ନାମରେ କଟକର ବାସନ୍ତି ପ୍ରିଣ୍ଟର୍ସରୁ ମୋ ସଂପାଦନାରେ ପ୍ରକାଶିତ ହୋଇଥିଲା । ଏବେ ତାଙ୍କର ଜନ୍ମ ଶତବାର୍ଷିକୀ ପାଳନ କରାଯାଉଅଛି ୧୯୯୪ ଜାନୁୟାରୀ ମାସରେ । ଏହି ଉପଲକ୍ଷେ ଯଦୁମଣିଙ୍କ କନ୍ୟା ଶ୍ରୀମତୀ ସଂଯୁକ୍ତା ଚୌଧୁରୀଙ୍କ ପୃଷ୍ଠପୋଷକତାରେ ପିତାଙ୍କର ପ୍ରତିଭା ବିଷୟରେ ଜାତିକୁ ଆଉଥରେ ସ୍ମରଣ କରାଇଦେବା ଲାଗି ଦ୍ୱିତୀୟ ସ୍ମରଣିକା ପ୍ରକାଶ ପାଉଛି । ଏହା ଅତି ଆନନ୍ଦର କଥା । ସେଥିପାଇଁ ଶ୍ରୀମତୀ ସଂଯୁକ୍ତାଙ୍କୁ ଏହି କାର୍ଯ୍ୟପାଇଁ ବଧେଇ ଜଣାଉଛି ।

୧୯୭୧ ମସିହା ସ୍ମରଣିକାରେ ଯଦୁମଣିଙ୍କର ବହୁ ସମସାମୟିକ ବ୍ୟକ୍ତିଙ୍କଠାରୁ ଲେଖା ପାଇଥିଲି । ସେମାନଙ୍କ ଭିତରୁ କେତେକ ଯୁବଲେଖକଙ୍କୁ ଛାଡ଼ିଦେଇ ଆଉ ଅନ୍ୟମାନେ ନାହାନ୍ତି । କେବଳ ତାଙ୍କର ମହନୀୟତାର ସ୍ମୃତିର ଅମୂଲ୍ୟ ଲେଖାଗୁଡ଼ିକ ରହିଛି । ସେମାନେ ହେଲେ କାଳିନ୍ଦୀଚରଣ ପାଣିଗ୍ରାହୀ, ବିଚିତ୍ରା ନନ୍ଦ କର, ବୀରକିଶୋର ଭୂୟାଁ, ଜାତୀୟ କବି ବୀରକିଶୋର ଦାସ, ରମାଦେବୀ, ହରେକୃଷ୍ଣ ମହତାବ, ମଧୁମହାନ୍ତି, କବିଚନ୍ଦ୍ର କାଳୀନ୍ଦୀ ଚରଣ ପଟ୍ଟନାୟକ, ଓ ଶ୍ରୀହର୍ଷ ମିଶ୍ର ଏମାନେ ସମସ୍ତେ ଥିଲେ ଯଦୁମଣିଙ୍କର ଅତି ନିକଟତମ ବଂଧୁ । ସେମାନଙ୍କର ସ୍ମୃତିଚାରଣ ଦ୍ୱାରା ଯଦୁମଣିଙ୍କର ଜୀବନର ବହୁ ଘଟଣାମାନ ଲୋକ ଲୋଚନକୁ ଆସିପାରିଛି । ଯାହା ଜାତିର ଇତିହାସରେ ପ୍ରେରଣାଦୀପ୍ତ ଅମୂଲ୍ୟ ଜାତୀୟ କଥାବଳୀ । ଏତଦ୍‌ବ୍ୟତିତ ବହୁ ଯୁବକ ଯଦୁମଣିଙ୍କର ଯୁବକ ସୁଲଭତାର ଅନୁପ୍ରେରିତ ହୋଇ ଗଳ୍ପ ଓ କବିତା ଆକାରରେ ସେମାନଙ୍କର ଶ୍ରଦ୍ଧାଞ୍ଜଳୀ ବାଢ଼ିଛନ୍ତି । ଆଶ୍ଚର୍ଯ୍ୟର କଥା ଏହି ଯୁବକଙ୍କ ଭିତରୁ କେତେକ ସ୍ୱାଧୀନତା ପରବର୍ତ୍ତୀ କାଳରେ ଜନ୍ମ ହୋଇଛନ୍ତି । ଏଥିରୁ ଯଦୁମଣିଙ୍କ ଜୀବନ ଯେ କେତେଦୂର ରୋମାଞ୍ଚକର ଓ ପ୍ରେରଣା ଗର୍ଭିତ ଏହାର ସୂଚନା ମିଳେ ।

ମଙ୍ଗରାଜଙ୍କ ଅଲୌକିକ ବାଗ୍ମିତାରେ ସାଧାରଣ ଜନତା ଅଭିଭୂତ ହୋଇ ଯାଉଥିଲେ । ତାଙ୍କର ଭାଷଣ ଦେବାର ଶୈଳୀଥିଲା ସ୍ୱତନ୍ତ୍ର । କବିଚନ୍ଦ୍ର କାଳିନ୍ଦୀଚରଣଙ୍କ ଭାଷାରେ ଲୋକଙ୍କୁ କଥା କଥାରେ ରସାଇ,ହସାଇ, ଚତାଇ ମଜାଇ ଭାଷଣ ଦେବା ମୋ ଦେଖନ୍ତରେ ତାଙ୍କ ସରିସମ ଏକା ସେହି ମଙ୍ଗରାଜ ଥିଲେ ତତ୍‌କାଳୀନ ବିଶୃଙ୍ଖଳିତ କିନ୍ତୁ ସ୍ୱାଧୀନତା ପ୍ରତ୍ୟାଶୀ ଜନଚେତନାର ଏକ ଅପରାଜେୟ ଆତ୍ମା । ଯେଉଁ କାର୍ଯ୍ୟ ଗୋପବଂଧୁ, ମହତାବ ଏପରିକି ମଧୁସୂଦନଙ୍କ ଦ୍ୱାରା ସମ୍ଭବ ହୋଇପାରୁନଥିଲା, ସେହି କାର୍ଯ୍ୟ ହାସଲ କରିବା ପାଇଁ ଯୁବକ ଯଦୁମଣିଙ୍କୁ ନିୟୋଜିତ

କରାଯାଉଥିଲା ଏବଂ ଯଦୁମଣି ତାଙ୍କର ସ୍ୱଭାବ ସୁଲଭ ବାକ୍‌ଚାତୁରୀ ଦ୍ୱାରା ଅନାୟାସରେ ସେହି କାର୍ଯ୍ୟକୁ ହାସଲ କରି ସେହି ମହାନ ନେତାଙ୍କର ପ୍ରିୟପାତ୍ର ହେଉଥିଲେ ।

ବାଗ୍ମିତାରେ ଯଦୁମଣି ଥିଲେ ଜଣେ କିମ୍ବଦନ୍ତୀ ପୁରୁଷ । ଯେଉଁଠି ସଭା ହୁଏ ଏବଂ ସେହି ସଭାକୁ ଯଦି ବେଶୀ ଲୋକ ଆସିବାର ସମ୍ଭାବନା ନଥାଏ, ତେବେ ସଭା ଆୟୋଜନକାରୀମାନେ ଯଦୁମଣିଙ୍କର ନାମ ଘୋଷଣା କରୁଥିଲେ ଲୋକଙ୍କୁ ସଭାକୁ ଆକୃଷ୍ଟ କରିବା ପାଇଁ କିନ୍ତୁ ଯଦୁମଣିଙ୍କ ଅନୁପସ୍ଥିତି ପାଇଁ ସେମାନେ ସର୍ବସାଧାରଣଙ୍କୁ କ୍ଷମା ମାଗି ନେଉଥିଲେ ବିଭିନ୍ନ ଆଳ ଦେଖାଇ । କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ ଭାଷାରେ ଗାଁଗଣ୍ଡାର ଶିକ୍ଷିତ, ଅର୍ଦ୍ଧ ଶିକ୍ଷିତ ଯୁବକମାନେ କେବଳ ଯଦୁମଣିଙ୍କ ଭାଷା ଶୁଣିବା ପାଇଁ ଦୀର୍ଘପଥ ଗ୍ଲି ଗ୍ଲି ସଭାକୁ ଆସୁଥିଲେ । ଏଥିରୁ ଯଦୁମଣିଙ୍କ ଲୋକପ୍ରିୟତାର ଗଭୀରତା ମପାଯାଇପାରେ । ଉତ୍କଳଘଣ୍ଟ ଯଦୁମଣିଙ୍କ ପରି ମଙ୍ଗରାଜ ଯଦୁମଣି ଥିଲେ ଜଣେ ଅତି ପ୍ରତ୍ୟୁତ୍ପନ୍ନମତି ବ୍ୟକ୍ତି । ସେ ଭାଷଣ ଦେଉଥିବାବେଳେ ଯଦି ସମବେତ ଜନତାଙ୍କ ପଟୁ କୌଣସି ଲଘୁ, ଗୁରୁ ମନ୍ତବ୍ୟ ଆସେ ତେବେ ପ୍ରତ୍ୟୁତ୍ପନ୍ନମତି ଯଦୁମଣି ତାଙ୍କର ଭାଷଣ ପରିସର ମଧ୍ୟକୁ ଆଣି ଏପରି ଶୈଳିରେ ସେ ମନ୍ତବ୍ୟକୁ ଫେରାଇ ନେଉଥିଲେ ଜନତା ହସି ହସି ଗଡ଼ି ଯାଉଥିଲେ । କାରଣ ତାଙ୍କର ଓଜସ୍ୱିନୀ ଭାଷଣରେ ଜଡ଼ ଜନତାକୁ ଜାଗ୍ରତ କରିବା ଓ ଉଦାସୀନ ବ୍ୟକ୍ତି ବିଶେଷଙ୍କୁ ଜାତୀୟ ସମସ୍ୟା ପ୍ରତି ଚଳଚଞ୍ଚଳ କରିବାର ମହନୀୟ ଉପାଦାନ ଥିଲା ।

ଯଦୁମଣି ଥିଲେ ଅତ୍ୟନ୍ତ ସ୍ପଷ୍ଟବାଦୀ ଏବଂ ଅନମନୀୟ ଯୁବପ୍ରତିଭାର ଜ୍ୱଳନ୍ତ ଅଗ୍ନିପିଣ୍ଡ । ସ୍ୱାଧୀନତା ଆନ୍ଦୋଳନର ବାର୍ତ୍ତା ପ୍ରଗ୍ୱର ଓ ପ୍ରସାର ନିମନ୍ତେ ଗାଁ, ଗାଁ ବୁଲୁଥିବା ବେଳେ ସେ ଯଦି ସରକାରୀ ଲୋକଙ୍କ ଅନ୍ୟାୟ, ଅନୀତି, ଶୋଷଣ, ଅତ୍ୟାଗ୍ୱର ଘଟଣାମାନ ଶୁଣୁଥିଲେ, ତେବେ ବାଘପରି ଲମ୍ଫପ୍ରଦାନ କରି ଶାସକ ଜନତାର ସେ ଶୋଷକ ସାମନ୍ତବାଦୀ ଗୋଷ୍ଠୀକୁ ବାକ୍‌ଗ୍ୱତୁରୀର ଶାଣିତ ଶବ୍ଦ ସଂଯୋଜନାରେ ନିଷ୍ଠୁର ସମାଲୋଚନା ସହିତ ସତର୍କବାଣୀ ଶୁଣାଇ ଦେଉଥିଲେ । ସେ ଏତେ ନିର୍ଭିକ ଥିଲେ ଥରେ କଟକ ଚାନ୍ଦନପଡ଼ିଆରେ ଭାଷଣ ଦେଉଥିବା ବେଳେ ନିଜକୁ ଗଭର୍ଣ୍ଣର ବା ସର୍ବମୟ ଶାସକ ବୋଲି ପରିଚୟ ଦେଇ ତାଙ୍କ ଆଦେଶ ମାନିବାକୁ ସମବେଦ ଜନତାଙ୍କୁ ନିର୍ଦ୍ଦେଶ ଦେଉଥିଲେ । ଏଥିରୁ ତାଙ୍କର ଆତ୍ମପ୍ରତ୍ୟୟତାର ସୂଚନା ମିଳେ । କାରଣ ସେ କଥାରେ, ଚିନ୍ତାରେ ଓ କାର୍ଯ୍ୟରେ ଥିଲେ ଜଣେ ସଚ୍ଚା ସମାଜବାଦୀ ନେତା । ସ୍ୱାଧୀନତା ପରବର୍ତ୍ତୀ କାଳରେ ସେ ପ୍ରତ୍ୟକ୍ଷ ରାଜନୀତିରେ ଅଂଶଗ୍ରହଣ କରିଥିଲେ । କିନ୍ତୁ ରାଜନୀତିର ସୁବିଧାବାଦ ମଧ୍ୟରେ ସେ ହଜିଯାଇନଥିଲେ । ସେ ସବୁବେଳେ କହୁଥିଲେ ଗଣତନ୍ତ୍ର ଶାସନ କେବଳ ନିସ୍ୱାର୍ଥବାଦୀ, ନିରଂକାରୀ, ସାଧୁ, ଚରିତ୍ରବାନ ଏବଂ ଦକ୍ଷ ବ୍ୟକ୍ତିଙ୍କୁ ନେଇ ପରିଗ୍ଳିତ ହେବା ଉଚିତ୍ । ଗଣତନ୍ତ୍ରର ଶଠତା, ଗୋଡ଼ଟଣା ଷଡ଼ଯନ୍ତ୍ର ଦ୍ୱାରା ସ୍ୱାର୍ଥରକ୍ଷା ଓ ଆତ୍ମରକ୍ଷା କେବଳ ଧର୍ମ ହେବା ଉଚିତ୍ ନୁହେଁ । ସେ ଜଣେ ସୁଶୃଙ୍ଖଳିତ ସୈନିକ ପରି ବହୁବାର ଏହାର ପ୍ରତିବାଦ କରିଛନ୍ତି ସିନା କିନ୍ତୁ ଗଣତନ୍ତ୍ରର ପ୍ରଗତି ପଥକୁ କେବେ ପ୍ରତିରୋଧ କରିନାହାନ୍ତି । ସେ ଯୁଗରେ ସେ କୃତିତ୍ୱର ସହିତ ବି.ଏସ୍‌ସି. ପାସ୍ କରିଥିଲେ ସୁଦ୍ଧା ଗଣତନ୍ତ୍ର ଶାସନରେ ତାଙ୍କୁ ଉପଯୁକ୍ତ ସ୍ଥାନ ଓ ସମ୍ମାନ ମିଳିନାହିଁ । କେବଳ ଥରେ ପାର୍ଲିଆମେଣ୍ଟାରୀ ସେକ୍ରେଟାରୀ ଓ ଆଉଥରେ ଉପବାଚସ୍ପତି ହୋଇଥିଲେ ସୁଦ୍ଧା ଓଡ଼ିଶାର ଯୁବସଂପ୍ରଦାୟର ମାନସ୍‌ପଟରେ ଏକ ସର୍ବକାଳୀନ ପ୍ରେରଣାଦୀପ୍ତ ଗୌରବମୟ ସ୍ଥାନ ଅଧିକାର କରିଯାଇଛନ୍ତି ।

ଏହି ଅପରାଜେୟ ବ୍ୟକ୍ତିତ୍ୱ ପ୍ରତି ତାଙ୍କର ଜନ୍ମ ଶତବାର୍ଷିକୀ ପାଳନ ଉପଲକ୍ଷେ ମୋର ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

**ଅଧ୍ୟକ୍ଷ, ରମାମଣି ମହାବିଦ୍ୟାଳୟ,**
**କଣ୍ଟାବାଡ଼, ଖୋର୍ଦ୍ଧା, - ୭୫୨୦୬୧.**

• • •

# ଏକ ଅମ୍ଳାନ ଅଲିଭା ମହାଦୀପ

ବ୍ରଜମୋହନ ସାମଂତରାୟ

**ହେ ଦୃପ୍ତ ଦୀପ୍ତ ମହାଦୀପ !**
ଦେଦୀପ୍ୟମାନ ମହାଦୀପ
କଟକ ମହାନଗରୀର, ବିଦିତ, ଅବିଦିତ
ଅଖ୍ୟାତପଲ୍ଲୀ 'କରିଲୋପାଟଣାର' ଏକାନ୍ତ ବିହାରୀ
ହେ ଯୁଗସ୍ରଷ୍ଟା ଯୁଗାନ୍ତକାରୀ
ତୁମେ ଏ ଜାତିର ଅନନ୍ୟ ଅନୁଲୋମ ମାନସ୍ତମ୍ଭ
ପ୍ରଖ୍ୟାତି ସଂପନ୍ନ ସଂସ୍କୃତି ସଂବୃଦ୍ଧ 'ଜମ୍ବୁଦୀପ'
ତ୍ରିକଳିଙ୍ଗ ଜ୍ୟୋତିର୍ଧାର ଯୁଗର ଅନନ୍ୟ ସାଧକ
ସାଧନାର ଏକ ପ୍ରାଣବଂତ ସଂପୁଟକ
ସହସ୍ର ବର୍ଷର ଜୟନ୍ତୀ ଉତ୍ସବରେ
ସ୍ମୃତି ମୋର ଆଜି ଜାଗରୁକ
ରେଭେନ୍ସା ମହାବିଦ୍ୟାଳୟ ଛାତ୍ରଜୀବନରେ ଲଭିଥିଲି
ସେ ମହାପୁରୁଷଙ୍କର ଚାକ୍ଷୁଷ ମହକ।
**ନାମ ତୁମ ସାର୍ଥକ ହେ ଯଦୁମଣି !**
କିଏ କହେ ତମେ ସାମାନ୍ୟ ମାନବ
ତୁମେ ଯଦୁବଂଶ କ୍ଷତ୍ରିୟକୁଳ ଉଦ୍‌ଭୂତ ଏକ ମହାନୁଭବ
ଯଦୁବଂଶ ମଣି ତୁମେ
ନାମ ତୁମ ଯଦୁମଣି
ତୁମେ ଧରିଥିଲ ଜାତିର ମଂଚ
ମଂଚ ତୁଳନାରେ ଥିଲ ରାଜ, ମହାରାଜ
ପିତା ମାତାଙ୍କର ଶ୍ରେୟ ତୁମେ ଧ୍ୟେୟ ତୁମେ ଯଦୁବଂଶ ଯଦୁମଣି
କିଂତୁ ଜାତିର ନମସ୍ୟ ହେ ଜାତିର ମଣି ଯଦୁମଣି ମଂଗରାଜ।
**ହେ ତ୍ରିକଳିଙ୍ଗ ଜ୍ୟୋତି !**
ଜ୍ୟୋତି, ତବ ଯଦୁମଣି ! ଉଦ୍‌ଭାସିତ ବିଶାଳ ବ୍ୟକ୍ତିତ୍ୱ
ସଂସ୍କୃତି ପରଂପରା ଇତିହାସ
କଳା ସାହିତ୍ୟ, ହାସ୍ୟରସ ରସାଣିତ ମଧୁଉକ୍ତି
ରାଜଧର୍ମ ରାଜନୀତି ସୁବିଦିତ
ତବ କର୍ମ ପ୍ରବାହରେ
ଜୀବନ ସରଣୀରେ
ସୃଷ୍ଟି କରି ଯୁଗ ଯୁଗାନ୍ତର
ଯୁଗ ଇତିହାସେ ଚିର ବିଭାସିତ।
ଇତିହାସ କହେ ମଉନଭାଷାରେ
ଇତିହାସ ପରିବୃଦ୍ଧ, ପରିବୁଦ୍ଧ ହେ ଅମ୍ଳାନ ସଂଗ୍ରାମୀ !
ତୁମେ ହିଁ ଉତ୍କଳ ତୁମେ ଜମ୍ବୁଦୀପ
ପୁରାଣ ଇତିର ପ୍ରଖ୍ୟାତ ପିତାମହ ଭୀଷ୍ମ ଅନୁରୂପ
ଅଖ୍ୟାତ ପଲ୍ଲୀର ଏକ ପୁଷ୍ପକ- ପୁଷ୍ପରଥ
ଜାତିର ମନୋରଥ
ନିରବଚ୍ଛିନ୍ନ ସାଧନା ପାରାବାରେ ତୁମେ ହିଁ ଉତ୍ତୁଙ୍ଗ ଊର୍ମି
ଊନବିଂଶ,ବିଂଶ ଶତାବ୍ଦୀର ଯଦୁବଂଶୀ ଅମ୍ଳାନ ସଂଗ୍ରାମୀ
**ହେ ଶତାବ୍ଦୀ ପୁରୁଷ !**
ତବ ସହସ୍ର ବର୍ଷର ଏକ ଶତାବ୍ଦୀର ରୋମଂଥନ
ସଂଗ୍ରାମୀ ଜାତିର ଏକ ମହାନ୍ ପରୀକ୍ଷଣ-
ଶତାବ୍ଦୀର ବଟୀ ଖୁଣ୍ଟ ତଳେ ଦେଖୁଥିଲ ସ୍ୱପ୍ନ ଅସୁମାରି
ସ୍ୱପ୍ନେ ଜାଗରଣେ ବୁଣୁଥିଲ ଜାତି ଇତିହାସ ଦିବା ବିଭାବରୀ
ଇତିହାସ ସ୍ରଷ୍ଟା ତବ ଶତାବ୍ଦୀରେ ଭରିଅଛ ମାନର ଭୂଷଣ
ଦାମ୍ଭୋକ୍ତି, ସ୍ପଷ୍ଟବାଦ, ହାସ୍ୟରସ ରସାଣିତ ବାକ୍ୟବାଣ
ତବ ଚିନ୍ତନ, ମନନର ଏକାଂତ ସ୍ୱାଭିମାନ।
ହେ ପ୍ରତିଭା ସଂପନ୍ନ ବିଧାୟକ, ବିଧାନ ଗୃହର ଦାମ୍ଭିକ ବାଚସ୍ପତି
ଶାସନ, ରାଜନୀତି, ରାଜଧର୍ମେ ସଂପାଦିଛ ଅସାମାନ୍ୟ ମାନରସଂପତ୍ତି।
ସତ୍ୟ. ସତ୍ୟ ହିଁ ତୁମର ସଂଧାନ
ଜ୍ଞାନ ଆହରଣ, ବିତରଣ ତବ ଏକାଂତ ସାଧନ।
ହେ ସିଦ୍ଧ ସାଧକ

ଜ୍ଞାନ କର୍ମ ଉପାସକ
ଅବଚିଃ ପାଟବ ଅବକ୍ଷେକ
ଭାଷାରସ, ହାସ୍ୟରସ ଭଣ୍ଡାରର ଅମିୟ ବିତରକ।
ନମସ୍ୟ ଶତାବ୍ଦୀ ପୁରୁଷ
ଶତାବ୍ଦୀରେ ଖଂଜି ମାନର ଭୂଷଣ
ଶତାବ୍ଦୀର 'ମାନ' ତୁମେ ଜାତି ଇତିହାସ।
ଶ୍ଲୀଳ, ଶାଳୀନ, ଶ୍ଲେଷଯୁକ୍ତ ଅନବଦ୍ୟ ମୃଦୁ ସମାଲୋଚକ
ବିଶ୍ୱ ପ୍ରେମର ଉଦାର, ବ୍ୟାପକ ଦ୍ୟୋତକ।

**ତୁମେ ଏକ ମହାନ୍ ଅନୁଷ୍ଠାନ !**

ତୁମେ ଏକ ବ୍ୟାପକ ଅନୁଷ୍ଠାନ
ପରିସୀମା ତବ ସଦା ଅକଳନ
ଜ୍ଞାନ ଉପାସନା ତବ ଅନନୁକରଣ
ହାସ୍ୟରସ ପରିବେଷଣ ତବ ଅଦ୍ୱିତୀୟ ଅନୁଶୀଳନ
ତୁମେ ଏକାଧାରେ ବାଗ୍ମୀ, କବି, ବିଧି, ବିଧାନ ବିଶ୍ଳେଷଣ
ଶିକ୍ଷକ, ଶିକ୍ଷୋପକରଣ, ଶିକ୍ଷାଦାନ, ଶିକ୍ଷାନୁଷ୍ଠାନ
ବିଶାଳ ବପୁରେ ପରିଶୋଭିତ ଚୈର ମୁଖମଣ୍ଡଳରେ
ହାସ୍ୟ ବିଳେପିତ ଓଷ୍ଠାଧାରେ ତବ ବାଣୀ ନିକଷଣ
ବାଗ୍ମିତା ଯାଦୁରେ ତୁମେ ଦୁର୍ଦ୍ଧର୍ଷକୁ କରିଛ ସାଧନ
ହେ ଯଦୁମଣି ! ତବ ଯାଦୁ ଏକ ସ୍ୱକୀୟ ନିଶାଣ।

**ହେ ସଂଗ୍ରାମୀ ଜାତି ନନ୍ଦିଘୋଷ !**

ଜାତି ନନ୍ଦିଘୋଷ ତବ ମନ୍ଥର ଗତିରେ ଗତିଶୀଳ ଟେଳିବାକୁ
ସଂଗ୍ରାମ ଶିବିର
ସଂଗେ ଧରି ନୀଳକଣ୍ଠ, ସୁଭାଷ, ରାଜକୃଷ୍ଣ, ଶୂର ସୂରୀ
ଆଗ୍ରର୍ଯ୍ୟ ପ୍ରବୀର
ବିଚ୍ଛିନ୍ନ ଉତ୍କଳ ଏକତ୍ରୀକରଣ ତବ ଆଦର୍ଶ, ସଂକଳ୍ପର ଗୀର।
ଅସହଯୋଗ, ଲବଣ ସତ୍ୟାଗ୍ରହ, ଭାରତ ଛାଡ଼ ସଂଗ୍ରାମ ଶିବିରେ
ତୁମେ ରହିଲ ଅମ୍ଳାନ, ଅମଳିନ ସଂଗ୍ରାମୀ ସାଥୀ ଗହଣରେ--
ତବ ନନ୍ଦିଘୋଷ ଆଜି ପୂଜିତ, ସୁଶୋଭିତ
ପୂଜ୍ୟ ପୂଜା ସଂରକ୍ଷଣ ନେଇ ଦର୍ପେ ଉପନୀତ--
ସହସ୍ରବର୍ଷର ପରିକ୍ରମା ପରେ
ସ୍ୱଜନ, ପରିଜନ, ଅନୁଜନ ମାନସ ମନ୍ଦିରେ -

**ହେ ଯଦୁମଣି ତୁମେ ଏକ ସାର୍ଥକ ବ୍ୟତିକ୍ରମ !**

ଜୀବନ ସଂଗ୍ରାମରେ ଏକ ଜ୍ୟୋତିଧାର, ହେ ବ୍ୟତିକ୍ରମ !
ସତ୍ୟ, ଧ୍ରୁବ ସତ୍ୟ, ଅବିସମ୍ବାଦିତ ସତ୍ୟ
ତୁମେ ଏକ ସାର୍ଥକ ବ୍ୟତିକ୍ରମ।
ଭାଷା, ଭାଷଣ ସଂଭାଷଣ
ରଚନା ପରିବେଷଣ
ସମସ୍ୟାର ଏକ ଅଦ୍‌ଭୁତ ସମାଧାନ।
ଆଲୋଡ଼ନ, ଅଶାନ୍ତି, ଆନ୍ଦୋଳନ
ଘାତ, ପ୍ରତିଘାତ, ବାଦ, ବିସମ୍ବାଦ
ଘଟନ ଅଘଟନ
ଜ୍ୱଳନ ପ୍ରଜ୍ୱଳନ
ତୁମ ନିକଟରେ ଏକ ମୃଦୁ ପ୍ରକାଶନ।
ଭାବ ପ୍ରକାଶ ଭଂଗୀରେ ଚତୁରତା, ଧୀରତା
ହାସ୍ୟରସ ବିଲେପିତ ଭାଷଣ ଶୈଳୀରେ ସ୍ୱତନ୍ତ୍ରତା
ଧୈର୍ଯ୍ୟ, ସହନଶୀଳତାରେ ଏକ ସାର୍ଥକତା
ସାର୍ଥକ ସମାଧାନରେ ଏକ ସମ୍ୟକ୍ ରୂପାୟନ
ସ୍ୱଭାବ ସୁଲଭ ସ୍ୱକୀୟ ଗୁଣ ତବ ଏକ ଅପୂର୍ବ ସମ୍ମୋହନ
ସ୍ୱକୀୟ ବ୍ୟତିକ୍ରମ ଏକ ଅନ୍ୱର୍ଥ ଅନୁଦାନ।

**ହେ ଉଦୀପ୍ତ ଭାସ୍କର, ଯୋଗଜନ୍ମା ସ୍ୱାଧୀନତାର**
**ଜାଗ୍ରତ ପ୍ରହରୀ, ପୁଣ୍ୟଶ୍ଲୋକ ଉତ୍କଳ ବିନ୍ଧାଣି !**

ତୁମେ ଯୋଗଜନ୍ମା ଯୁଗାନ୍ତକାରୀ ଯୁଗସ୍ରଷ୍ଟା
ଯୁଗଧର୍ମୀ ବିଶାଳ ଉତ୍କଳର ତୁମେ ହିଁ ବିନ୍ଧାଣି, ହେ ଯଦୁମଣି।
ଉତ୍କଳ ମଣି ଗୋପବନ୍ଧୁ
ମଣି ସଂଗତେ ଲଗ୍ନ
ଉତ୍କଳ ଗୌରବ ମଧୁ, ଅଗ୍ରଜ ବିନ୍ଧାଣି
ମହାରାଜା କୃଷ୍ଣଚଂଦ୍ର, ଫକୀର ମୋହନ, ରାମଚଂଦ୍ର ଦେବ,
ରାଜା ବିକ୍ରମ ଦେବ
ଉତ୍କଳ ନିର୍ମାଣରେ ଏକ ଏକ ସାର୍ଥକ ବିନ୍ଧାଣି।
କିଂତୁ ତୁମେ ଯଦୁମଣି !
ତୁମେ ଥିଲ ତେଜସ୍ୱୀ ଯୋଗସୂତ୍ର
ବିଚ୍ଛିନ୍ନ ଉତ୍କଳର ଏକତ୍ରୀକରଣର ଏକ ପରଶ ମଣି।
ତୁମେ ଅବିସମ୍ବାଦିତ କାଳଜୟୀ
କାଳ ନିରୂପଣେ ତୁମେ ଥିଲ ନୀରବ ସ୍ୱାଧ୍ୟାୟୀ।

**ନିବେଦନ ହେ ନିଷ୍ପ୍ରଭ ତାରକା !**

ଜାତି ଆକାଶରେ ତୁମେ ନିଷ୍ପ୍ରଭ ଉଜ୍ଜ୍ୱଳ ତାରକା

ଜାତିର ତୁମେ ଅନୁରକ୍ତ, ଅନୁରାଗୀ, ଅନୁଯୋଗୀ ଅନ୍ତର୍ଥ
ଅନୁରେଖା ।
ଉତ୍ଥାନ, ପତନ, ଆରୋହ, ଅବରୋହ
ବିଜ୍ଞତା, ସାହସିକତା ଚତୁରତାବଳେ କରି ଅତିକ୍ରମ
ପ୍ରକଟନ କରିଥିଲ ଅପୂର୍ବ ମାନ' ଅନୁପମ ।

**ହେ ଯୁଗସ୍ରଷ୍ଟା ଯଦୁମଣି !**

ଆଜି ତୁମେ ଦୂରେ ବହୁଦୂରେ
ଆକାଶର ଘନ ଅନ୍ଧକାରେ
ଗାଢ ନୀଳିମାର ମଧ୍ଯ ଅଭିସାରେ
ତବ ଚଳିଷ୍ଣୁ ଐହିକ୍ ବପୁ ଅବଲୁପ୍ତ
କିନ୍ତୁ ଆତ୍ମା ଅବିନାଶୀ
ତୁମେ ଆତ୍ମଜ୍ଞାନୀ, ଆତ୍ମଜ୍ଞାନେ ଆତ୍ମାରେ ବିରାଜି-
ଯାଇଛ ଅମର ଧାମେ
କୁହ ସିନା ମୃତ୍ୟୁ ନାମେ-
ମୃତ୍ୟୁ ତବ ନଶ୍ୱରୀରର କିନ୍ତୁ ନୁହଁଇ ମରଣ
ବାହୁଡ଼ା ବିଜୟର ସ୍ୱାଗତ ତୋରଣ
ସହସ୍ର ବର୍ଷର ମଧ୍ଯ ନିକ୍ୱଣନ ।
ଯେଣୁ ତୁମେ ଜାତିର ଆଶ୍ଳେଷ
ମହା ନିଦ୍ରା ତବ ଆଜି ବିଭୁର ଆଶିଷ ।

ସ୍ମୃତି ଚିରନ୍ତନ, ଅକ୍ଷୟ, ଅବ୍ୟୟ, ସ୍ୱର୍ଗୀୟ
ସେହି ସ୍ମୃତି ରୋମନ୍ଥନ କରେ ବିତରଣ
କାମ୍ୟ, କାମନାର ମଧୁର ଅମିୟ ।
"Memory is Immortal
Engraved in im-mortal letters"
Remember the lines of William Collins"-
"How sleep the 'Brave'
who sink to rest
by all their country's who has blest "

**ଏତିକି ମିନତି ହେ ଜଗତିପତି !**

ଏତିକି ମିନତି ଶଙ୍ଖପରି ମୁଦ୍ରିତ ହସ୍ତରେ ହେ ଜଗନ୍ନାଥ !
ଜଗତର ନାଥ, ଦୀନବନ୍ଧୁ, ବିଶ୍ୱନିୟାମକ
ହସ୍ତେ ଦିଅ ତୋଳି ସାତ୍ତ୍ୱିକ ସାୟକ
ଚୂର୍ଣ୍ଣ ହେଉ ଅଳୀକ ଦର୍ପ, ଦମ୍ଭଲିପ୍ସା ଆସୁରିକ ।
ଏତିକି ମିନତି ଚରଣ ଯୁଗଳେ
କାଢ଼ି ଆହ୍ନିକ, ଆରାତ୍ରିକ ଘନ ଅନ୍ତରାଳେ ।
ଓଁ
ଶାନ୍ତିଃ-ଶାନ୍ତିଃ-ଶାନ୍ତିଃ ।

• • • •

ଯିଏ ପ୍ରକୃତରେ ଭିତରେ ସ୍ୱଚ୍ଛ, ନିର୍ମଳ ସେ ବାହାରେ
ଅସ୍ୱଚ୍ଛ ହୁଏ ନାହିଁ ।

—ବାପୁଜୀ

# ସ୍ମୃତି ମୁକୁରରେ ତୁମର ପ୍ରତିବିମ୍ବନ

ସଂଯୁକ୍ତା ଚୌଧୁରୀ

ବାପା,

କାହିଁକି କେଜାଣି ତୁମ 'ଶତବର୍ଷର ରୋମଂଥନ', 'ଜୟନ୍ତୀ ଉତ୍ସବ' ଶ୍ରଦ୍ଧାଞ୍ଜଳି ଅଶ୍ରୁଜଳରେ ଉଛୁଳି ଉଠୁଛି। ଗହନ ମନ ତଳେ ଏକ ଅହେତୁକ ଆଲୋଡ଼ନ–'ମନ' ପୋଡ଼ିଯାଉଛି। ମନ ପୋଡ଼ିଗଲେ କିଏ ବା ଜାଣିବ। ମନେ ପଡ଼ିଯାଉଛି ବିସ୍ମୃତ ଅତୀତ। ଯାହାର ଗର୍ଭ ଅକଳନ, କିନ୍ତୁ; ସ୍ମୃତି, ସାଗର ମଂଥନ ପରି ମଂଥିତ। ମଂଥନ ଗର୍ଭରୁ ଉତ୍‌ଥିତ ସ୍ମୃତି–ଉଜ୍‌ଜୀବନ। ତୁମେ ସେହି ସ୍ମୃତିର ଆଧାର, ଆକାର, ଆଗାର, ପ୍ରତିବିମ୍ବନ, ମନନ, ଚିନ୍ତନ। କେତେକଥା ମନଭିତରେ ଗୁନ୍ଥି ହୋଇଯାଉଛି। ଆଖିଦୁଇଟି ଲୋତକରେ ଆର୍ଦ୍ର ହୋଇଉଠୁଛି।

ତୁମର ଅଲିଅଳ କନ୍ୟା, କୁନି (ସଂଯୁକ୍ତା), ସ୍ତ୍ରୀଭାଇରେ ଗୋଟିଏ ଆଦରର କନ୍ୟା। ସେହି ଅଲିଅଳ କନ୍ୟାପାଇଁ ତମେ ଦେଖୁଥିଲ ସ୍ୱପ୍ନ, ତାର ଜୀବନ ଯୌବନକୁ ସୁନାର ଡୋରିରେ ବାନ୍ଧିଦେବା ପାଇଁ। ତୁମରି ସ୍ୱପ୍ନ ହିଁ ସାର୍ଥକ ହେଲା। ତୁମେ ସ୍ୱପ୍ନ, ତୁମେ ହିଁ ବାସ୍ତବ। ତୁମରି ଚିନ୍ତାଧାରା, କଳ୍ପନା, ଜଳ୍ପନା ସବୁକିଛି ବାସ୍ତବତାର ରୂପାୟନ।

ବାପା ! ତୁମେ ଦେଖୁଥିଲ ସ୍ୱପ୍ନ। କିନ୍ତୁ ମୁଁ ଆଜି ସ୍ୱପ୍ନ ଦେଖୁଛି ତୁମରି ସ୍ମୃତିର ମୁକୁରରେ। ତୁମକୁ ଦେଖୁଛି ବହୁଦୂରରେ, ବାସ୍ତବରୂପରେ। ତୁମେ ବହୁଦୂରେ ନୀଳାକାଶ ଚନ୍ଦ୍ରାଲୋକରେ, ଦିବ୍ୟଜ୍ୟୋତିର ସାନ୍ନିଧ୍ୟ ଲାଭକରି। ସେଥିପାଇଁ ହେ, ଦେବପୁରୁଷ, ପାର୍ଥିବଧାମର ସ୍ୱପ୍ନ, ସାର୍ଥକ ଏକ ବଳିଷ୍ଠ ବ୍ୟକ୍ତିତ୍ୱ ଦେବଲୋକରେ ଅଧିଷ୍ଠିତ। ତୁମର ସେ ଦୀପ୍ତ ଦୃପ୍ତ ସଜଳ ଚାହାଣି, ପ୍ରକଂପିତ ଓଷ୍ଠାଧାର, ବକ୍ରୋକ୍ତି, ସଂବିଦ୍ ସଂପୃକ୍ତ ବାକ୍ୟବିନ୍ୟାସ, ହାସ୍ୟରସ ଉଜ୍‌ଜୀବିତ ସଂଳାପ, ଭାବଉଦ୍‌ବେଳିତ ଆବେଦନ, ପ୍ରାଣଭରା ନିବେଦନ, ମାନବର୍ଦ୍ଧନରେ ନିର୍ଭୀକତା, ମୋ ମନଭିତରେ, ତୁମରି ଅଲିଅଳ ଏକମାତ୍ର କନ୍ୟା କୁନିର ମନରହନରେ ଅବିସ୍ମରଣୀୟ ରେଖାପାତ କରିଛି। ତାର ମ୍ଳାନିମା ନାହିଁ, ଗ୍ଳାନିମା ନାହିଁ, ବିଲୟ ବି ନାହିଁ। ଚିରଭାସ୍ୱର ତା'ର ସ୍ମୃତି ପ୍ରତିବିମ୍ବନ ସ୍ମୃତି--ମୁକୁରରେ।

ପିତାମାତାଙ୍କର ସୁକୃତ ନେଇ ସନ୍ତାନସୁଖୀ, ଦୀର୍ଘଜୀବୀ, ସୁବୁଦ୍ଧିବନ୍ତ ହୁଏ। ପିତାମାତାଙ୍କର ଆଶ୍ଳେଷ, ଆଶିଷ ଲଭି ସନ୍ତାନ ଗଢ଼ିବସେ ସୁନାର ସଂସାର। ନିତ୍ୟଶାନ୍ତି, ପ୍ରଶାନ୍ତି, ପରମଆନନ୍ଦ, ପରମାନଂଦ, ପରବ୍ରହ୍ମମ୍, ଓଁ। ପରମ ଆନଦଂର ଫଲ୍‌ଗୁଧାରାରେ ପ୍ଳାବିତ ହୋଇଉଠେ ଜୀବନ ସୌରଭ, ଜୀବନ ସରଣୀ। ଆହାକି ତୃପ୍ତି ! କି ଆନଂଦ !

ତୁମ କୁନି, ଜୀବନର ଏହି ସ୍ୱପ୍ନ ସାତ୍ତ୍ୱିକ ସାୟକରେ ପରିବୃଦ୍ଧି, ପରିବୁଦ୍ଧ, ପରିଶୋଭିତ, ପରିପ୍ରକାଶିତ ପରିବିକଚିତ ଓ ସୁପ୍ରତିଷ୍ଠିତ। ସ୍ମୃତିରେ ଧ୍ୱନିତ ହୁଏ ସ୍ମୃତି ନିକ୍ୱଣ। ଜୀବନରେ ଉଜାଣି ଆସେ, ଭଟ୍ଟା ବି ଆସେ।

ଅକାଶରେ ନୀଳିମା, ବିକଶିତ ଚଂଦ୍ରାଳସ, ସୁଶୀତଳ ମୃଦୁମନ୍ଦ ହିଲ୍ଲୋଳ, ଚନ୍ଦ୍ରାଳସର ଆଲିଙ୍ଗନ, ମମତାର ଚୁମ୍ବନ, ମିଳନ ପରମ ଗୋଟିଏ ମୁହୂର୍ତ୍ତରେ ହଜିଯାଏ, ଅପସରିଯାଏ ଅଂଧାର ଭିତରେ। ଗର୍ଜିଉଠେ ମେଘମାଳା। ଘନବାଦଲ ଘେରିଆସେ। ନିଆଁର ରଜନୀ କାନ୍ଦିଉଠେ–ଝଲକ୍ ଗୋଟିଏ ପଲକରେ ବିଲୟ ଲଭେ। ସବିତାର ଉଚ୍ଛ୍ୱସିତ ହସ, ମୃତ୍ୟୁର ବିଭୀଷିକା ସୃଷ୍ଟି କରେ।

*'ଦଇବ ଦଉଡ଼ି ମଣିଷ ଗାଈ*
*ଯେଣିକି ଟାଣଇ, ତେଣିକି ଯାଇ'–*

ସେହି ଦେବକୂର ଚାହାଣିରେ ତୁମେ ଆଜି, ଶତ ବର୍ଷଧରି ଇହଧାମର ନିଷ୍କୃତି ନେଇ, ହିସାବ ନିକାଶର ସମାଧାନ କରି, ଦେବଲୋକରେ ପ୍ରତିଭାତ, ଉଜ୍ଜଳିତ, ମୂର୍ତ୍ତିମଂତ ଓ ଗ୍ରୁରୁବଂତ ।

ଶାରଦୀୟ ଆକାଶର ବଳାକ୍ ପରି ହାଲୁକା ମନ ମୋର ଏହି ମହାନ୍ ତିଥିବାସରେ, ଶତବର୍ଷର ପୂର୍ତ୍ତିର ଜୟନ୍ତୀ ପର୍ବରେ ବ୍ୟଥା ବିଜଡ଼ିତ ।

ବାପା ! ଏହି ଅଲିଅଳ କୁନି ପାଇଁ ତୁମେ ବହୁ ସ୍ୱପ୍ନ ଦେଖିଥିଲ । 'ମା' ମୋର କେତେ ସ୍ନେହ ଦେଇ ମତେ ଗଢ଼ିଥିଲା । ଅସୁମାରି ସ୍ୱପ୍ନ ଦେଖୁଥିଲା । 'ମତେ ରାଣୀ କରାଇବ । ଧନାଢ଼୍ୟ ପରିବାରର କୁଳବଧୂ କରାଇବ' । ତମେ ମଧ୍ୟ ସବୁକିଛି ସ୍ୱପ୍ନ ଦେଖିଥିଲ । ତୁମର ପ୍ରଥମ ସ୍ୱପ୍ନ ଥିଲା "ମତେ ଅଦ୍ୱିତୀୟା ଆଦର୍ଶ ନାରୀ, ନିର୍ଭୀକା, ସ୍ପଷ୍ଟବାଦିନୀ, କର୍ତ୍ତବ୍ୟପରାୟଣା, ନିଷ୍ଠାପର କର୍ମଯୋଗିନୀ, ସର୍ବୋପରି ଏକ ଆଦର୍ଶ ବୀରାନାରୀ, ମାତା, ଦେବୀରୂପେ ସମାଜରେ ପ୍ରତିଷ୍ଠା କରିବା ପାଇଁ।" ସ୍ୱପ୍ନ ଦେଖୁଥିଲ ତମର ଗେଲବସର, ଅଲିଅଳ 'ରାଣୀ'କୁ ଏକ ସ୍ୱପ୍ନପୁରୁଷ, ସ୍ୱପ୍ନ 'ରାଜା' ସହ ଛନ୍ଦିଦେବା ପାଇଁ । 'ମା' ଭାବିଥିଲା ମୋ ଝିଅ 'ରାଣୀ' ହେବ । 'ରାଣୀ' ହେଲି । ବାବା ଭାବିଥିଲେ ମୋ 'ସଂଜୁ' ମୋ ସ୍ୱପ୍ନର 'ରାଜା' ସହ ସଂଯୁକ୍ତ ହେବ । ବାବାଙ୍କ ସ୍ୱପ୍ନିଳ ସ୍ୱପ୍ନ ସାର୍ଥକ ହେଲା । ମୋ ଭାଇମାନେ ବିରାଟ ସ୍ୱପ୍ନ ଦେଖିଥିଲେ, 'ଅତି ଉଚ୍ଚଶିକ୍ଷିତା, ବିଶ୍ୱବିଦ୍ୟାଳୟରେ ପ୍ରତିଷ୍ଠାତା, ନିର୍ଭୀକା, ସ୍ପଷ୍ଟବାଦିନୀ, ଗୁଣବତୀ, ଭଗ୍ନୀକୁ ଏକ ଅତି ଉଚ୍ଚ ଶିକ୍ଷିତ, ଉଚ୍ଚପଦବୀ ବିଶିଷ୍ଟ ଆଇ. ଏ. ଏସ୍. ଅଫିସରଙ୍କ ସହ ବଂଧନଯୁକ୍ତ କରାଇବେ' ।

'ମା'ର ସ୍ୱପ୍ନ ନୁହେଁ, ବାସ୍ତବ । ତା'ର ଅଲିଅଳ ଗୋଟିଏ କନ୍ୟା 'ରାଣୀ'ର ପୋଷାକ ପରିଧାନ କରିବ, ଆୟୁଷ୍ମତୀ, ସୌଭାଗ୍ୟବତୀ ହେବ, ଶଂଖାସିନ୍ଦୂର ତା'ର ଜଳିଉଠିବ । ପାଦଦୁଇଟିରେ ଅଳତାର ଧାର ଝଲକି ଉଠିବ । ମଂଜୁଳ ମଂଜୀରର ମଧୁ ନିଝାନ, ତାନ, ମାନ ତୋଳିବ । ବରକନ୍ୟା ଝୁଲି ଝୁଲି ପୁଷ୍ପକ ରଥରେ ବାହୁଡ଼ିବେ । ସବୁହିଁ ହେଲା । ସମସ୍ତଙ୍କର ସ୍ୱପ୍ନ ସାର୍ଥକ ହେଲା । ଇତିହାସ ସ୍ମୃତି ଲବ୍ଧ "ଜୟଚନ୍ଦ୍ର" ତୁଲ୍ୟ ଆଇ.ଏ.ଏସ୍. ଅଫିସର ହାରିଗଲେ । ଜିତାପଟ ହେଲା ଆଉ ଏକ ଆଦର୍ଶ ପୁରୁଷ, ଚୌହାନବଂଶର ଦିବ୍ୟଜ୍ୟୋତି 'ପୃଥ୍ୱୀରାଜ' 'ପ୍ରବୋଧ ଚନ୍ଦ୍ରଙ୍କର' । ବିଧିର କି ବିଧାନ! ନିୟତିର କି ନିଦାନ, କି ନିବଂଧନ ! ଦାଦାଙ୍କର ଆଦର୍ଶ ସ୍ୱପ୍ନ, ଆଦର୍ଶ ସ୍ୱପ୍ନପୁରୁଷ । 'କୁନିର (ସଂଯୁକ୍ତାର)' ହାତ ଧରିଲେ । ଜୟଚନ୍ଦ୍ର, ପୃଥ୍ୱୀରାଜ, ମହମ୍ମଦ ଘୋରୀ, ତିରୋରୀ ଯୁଦ୍ଧର ଇତିହାସକୁ ପ୍ରକ୍ଷାଳନ କଲେ । ବାପାଙ୍କର ସ୍ୱପ୍ନିଳ ସ୍ୱପ୍ନ ସମସ୍ତଙ୍କୁ ଆଚମ୍ବିତ କଲା । ସଂଜୁ, ସଂଯୁକ୍ତା ସଂଜବତୀ ଜାଳିଥିଲା ମା ବୃନ୍ଦାବତୀଙ୍କ ପାଖରେ କେତେ ଆଶା, କେତେ ଭରସା ନେଇ । କୁମାରପୂର୍ଣ୍ଣିମା ରାତ୍ରିରେ ଜହ୍ନକୁ ଗୁହିଁ ଶପଥ କରିଥିଲା ପୃଥ୍ୱୀରାଜଙ୍କୁ, ବାବାଙ୍କର ମନୋନୀତ ସ୍ୱପ୍ନପୁରୁଷଙ୍କୁ ନିଜ ବାହୁରେ ଛନ୍ଦିଦେବା ପାଇଁ । ଆମରି 'ସୁନାର ସଂସାର', 'ମା' ବାବାଙ୍କର ଭରାତୁର ଆଶିଷରେ ଜଳିଉଠିଲା, ଉତ୍‌ଫୁଲିତ ହୋଇଉଠିଲା । ଏବେ ବି ଦୁଇଟି ପ୍ରାଣୀ ଏକାଂତ, ଏକମନରେ, ଏକପ୍ରାଣରେ, ଏକଧ୍ୟାନରେ, ମନନ, ଚିନ୍ତନରେ ବିଜୟୀ, ଦିଗ୍‌ବିଜୟୀ, ଯୁଗଯୁଗର ଯାତ୍ରୀ । ଯାତ୍ରା ଆମର ଆଦର୍ଶର 'ମାନ' ପ୍ରତିଷ୍ଠା କରିଛି । ଏପରି ବଂଧନ ବିରଳ । ମୋର ଭାଇମାନେ ଏକ ସ୍ୱପ୍ନର ଆଶା ବାଂଧିଥିଲେ । ଏପରିକି, ସ୍ୱପ୍ନ ସ୍ୱପ୍ନରେ ରହିଯିବାରୁ, ମୋ ବିବାହ ଉତ୍ସବରେ ସହଯୋଗ କରିବା ପାଇଁ ପଛେଇ ଯାଉଥିଲେ । କିଂତୁ ଦିନ ଆସିଲା, ସମସ୍ତେ ଏକସ୍ୱରରେ ଆମ ଦୁହିଁଙ୍କର ଜୟଗାଥା ଉଚ୍ଚାଙ୍ଗ ସ୍ୱରରେ ଗାନ କଲେ । ଏହି ଜୟମାଲ୍ୟ ମୋ ବାପାଙ୍କର ଆଶୀର୍ବାଦ ।

*ପିତା ସ୍ୱର୍ଗ, ପିତା ଧର୍ମ*
*ପିତାହିଁ ପରମ ତପ*
*ପିତରି ପ୍ରୀତିମା ପନ୍ନେ*
*ପ୍ରିୟନ୍ତେ ସର୍ବଦେବତା ।*

ସତ୍ୟ, ଚିରସତ୍ୟ ଧ୍ରୁବ ସତ୍ୟ ଏହି ଋଷିବାକ୍ୟ । ତୁମେ ଗୁହିଁଥିଲ, ତୁମ ଗେଲବସର, ଗ୍ରରିଭାଇଙ୍କର ବଳିଷ୍ଠ ବାହୁ ବ୍ୟୂହ ଭିତରେ ବଢ଼ିଉଠିଥିବା, ଗଢ଼ିଉଠିଥିବା କନ୍ୟା ରତ୍ନଟି, ରତ୍ନପରି ଝଲକି ଉଠିବ । ପିତାମାତାଙ୍କର ସୁକୃତରେ ସନ୍ତାନ ହୁଏ ସୁଖୀ । ବାପା ତମର ସେହି 'ଆଶୀର୍ବାଦ', ମତେ ଏକ ନିର୍ଭୀକା, ସ୍ପଷ୍ଟବାଦିନୀ ନାରୀ କରିପାରିଛି, ତା'ର ମନଲାଖି 'ଜୀବନର ବାଂଧବଙ୍କୁ ବଂଧନରେ ବାଂଧିପାରିଛି । ଯେପରି ମନେହେଲା, ତ୍ରିତଳ ପ୍ରାସାଦ, ସ୍ୱପ୍ନିଳ, ରଂଗୀନ ଜୀବନର ରଂଗୀନ୍

ସ୍ୱପ୍ନ, ମଟର ଗାଡି, ବ୍ୟାଂକ୍ ଗଚ୍ଛିତ ସଂପତ୍ତି, ସବୁକିଛି ଇନ୍ଦ୍ରପୁରୀ, ଇନ୍ଦ୍ରଦେବତା ମଧ୍ୟ, ଉଚ୍ଚପଦବୀ ବିଶିଷ୍ଟ ପୁରୁଷ ବାବାଙ୍କ ସ୍ୱପ୍ନରେ ତୁଚ୍ଛ ଓ ହେୟ। କେବଳ ପୁଷ୍ପିତ ହୋଇଉଠିଲା ଗୋଟିଏ ଆଦର୍ଶ ପୁରୁଷ। ସେହି ଆଦର୍ଶ ପୁରୁଷଙ୍କୁ ସେ ମୋ ବାହୁରେ ଛନ୍ଦିଦେବା ପାଇଁ ନିଷ୍ପତ୍ତି ନେଲେ।

ବାପା ! ତୁମରି ଆଦର୍ଶରେ ଅନୁରଂଜିତ, ଅନୁପ୍ରାଣିତ ତୁମର ଅଲିଅଳି କୁନି। ବାଲ୍ୟଜୀବନ, ଶିକ୍ଷାଜୀବନ ସବୁକିଛି ଅତିକ୍ରମ କରି, ଶିକ୍ଷାର ଉଚ୍ଚସମ୍ମାନ ଲାଭକରି, ଶିକ୍ଷାଜଗତରେ ପ୍ରତିଷ୍ଠିତ ହେଲି। ଏପରିକି ଏକ ଶ୍ମଶାନ'କୁ ଜନବସତିରେ ପରିଣତ କଲି। ସେଠାରେ ଶିକ୍ଷାର ସୌଧ ଗଢିଉଠିଲା। ଶିକ୍ଷାର ସୌଧ 'ସୁଭଦ୍ରା ମହାତବ ଉଚ୍ଚ ବାଳିକା ବିଦ୍ୟାଳୟ ନାମରେ ନାମିତ ହୋଇ ନାମର ସାର୍ଥକତା, କାର୍ଯ୍ୟରେ ପ୍ରତିପାଦନ କଲା। ଏହି ଭିତ୍ତିଭୂମି ଉପରେ ସମ୍ମାନ ମୋର ସ୍ୱାଗତ ଜ୍ଞାପନ କଲା। ଏହି ସାଫଲ୍ୟରେ ବାପାଙ୍କର ଅକ୍ଷୟ, ଅକ୍ଷୁଣ୍ଣ, ନିଖିଳ ପ୍ରଚ୍ଛନ୍ନ ଆଶୀର୍ବାଦ, ଅଦେଖା ହାତର ନିର୍ମାଲ୍ୟ, ବିଭୂତି ଲାଭକରି ମାନ'ର ସୁପାତି ବାଢିଦେଲି। ପ୍ରଧାନଶିକ୍ଷୟିତ୍ରୀ ପଦବୀରେ କୃତିତ୍ୱ ହାସଲ କରି, ରାଜ୍ୟପାଳ ଓ ରାଷ୍ଟ୍ରପତି ପୁରସ୍କାର ପାଇଲି। ଶିକ୍ଷା ଜଗତରେ ପ୍ରତିଷ୍ଠା ଲାଭକଲି। ବାପା ତୁମେ ଏକ ନିର୍ଭୀକ, ଦାମ୍ଭିକ, ସ୍ପଷ୍ଟବାଦୀ, ବଳିଷ୍ଠ ବ୍ୟକ୍ତିତ୍ୱ ସଂପନ୍ନ ତେଜସ୍ୱୀ ପୁରୁଷ ଥିଲ। ତାଂକରି ଆଦର୍ଶରେ ସେ ମତେ ଗଢିଥିଲେ। ମୋର କର୍ମକ୍ଷେତ୍ରରେ, କର୍ମଯୋଜନାରେ, ସାମାଜିକ ଜୀବନରେ, ବିବାହ ଜୀବନରେ, ବାପାଙ୍କର ମନଲାଖି ଏକ ନିର୍ଭୀକ, ବିନୟୀ, ସ୍ନେହୀ ଦେବପୁରୁଷଙ୍କୁ ସଂଗରେ ଧରି, ତାଂକର ଅପାର ପ୍ରେମ, ଗଭୀର ସହାନୁଭୂତି, ଅବାରିତ ସାହଚର୍ଯ୍ୟ, ଔଦାର୍ଯ୍ୟର ନିର୍ମାଲ୍ୟ ପାନକରି, ଜୀବନରେ ସବୁକିଛି ପ୍ରତିଷ୍ଠା, ପ୍ରଖ୍ୟାତି ଔଜ୍ଜ୍ୱଲ୍ୟରେ କର୍ମସରଣୀକୁ ଭରିଦେଇପାରିଛି। ପ୍ରିୟଦର୍ଶିନୀ 'ଇନ୍ଦିରା'ଙ୍କୁ ତାଙ୍କ ପିତା 'ଜବାହର' ଯେପରି ଗଢିଥିଲେ, ତାଂକର ଯେପରି ସ୍ୱପ୍ନ ଥିଲା ଇନ୍ଦିରାଙ୍କୁ ମହାପଦବୀରେ ଭୂଷିତ କରିବା ପାଇଁ, ତାହା ସେ କରିପାରିଲେ। ସ୍ୱପ୍ନ ସାର୍ଥକ ହେଲା। ଇନ୍ଦିରା ବିଶ୍ୱବନ୍ଦିତା ହେଲେ। ଠିକ୍ ସେହିପରି ତୁମର ଅଲିଅଳି କୁନି, ସଂଯୁକ୍ତାକୁ, ତୁମ ସ୍ୱପ୍ନର ରାଣୀ ଦୁର୍ଗାବତୀ, ରାଣୀ ଅହଲ୍ୟାବାଈ, ଝାନ୍ସିରାଣୀ ଲକ୍ଷ୍ମୀବାଈ କରିପାରିଛ। ଚୌହାନବଂଶୀ ପୃଥ୍ୱୀରାଜ, ପ୍ରବୋଧଙ୍କ ହସ୍ତରେ ହସ୍ତକୁ ଛଂଦି ଦେଇଛ। ଏ କି ବିଭୂର ବିଭୂତି! କି ଅପାର ଶାନ୍ତି !

ସବୁ ପାଇଛି କିଂତୁ ତୁମେ ଆଜି ଦୂରେ ବହୁ ଦୂରରେ, ଦେବଲୋକରେ କିଂତୁ ବାବା ! ତମ ସ୍ମୃତି, ମୋ ଜୀବନ ମୁକୁରରେ ପ୍ରତିଫଳିତ। ଶତ ବର୍ଷର 'ଜୟନ୍ତୀ' ଉତ୍ସବ ଓ ସମାରୋହରେ ତୁମେ ଏ ଲକ୍ଷୁଆ ଜାତିର ଏକ 'ସଂଗ୍ରାମୀ' ବ୍ୟକ୍ତିତ୍ୱ, ବ୍ୟତିକ୍ରମ ମଧ୍ୟ ତୁମେ ଏ ଜାତିର, ଏ ବିଶ୍ୱର, ଜାତିପ୍ରାଣର, ବିଶ୍ୱପ୍ରେମର ସ୍ମୃତି ସଂପଦ।

ଶତବର୍ଷର ଜୟନ୍ତୀ ଆଜି ଫୁଲିଉଠୁ। ବୁଦ୍ଧିମଂତ, ପ୍ରାଣବଂତ, ଗୁରୁବଂତ, ସଂବୃଦ୍ଧ ହୋଇଉଠୁ। 'ସଂଜୁ' ଲୁହ ଗଡ଼ାଇବ। ତା'ର ଜୀବନର ସଂଗୀ, ପ୍ରବୋଧ ସାନ୍ତ୍ୱନା, ଆଶ୍ୱାସନା ଦେବେ। ନାମର ସାର୍ଥକତା ପ୍ରତିପାଦନ କରିବେ। ମୋର ଏକମାତ୍ର ପୁତ୍ର ଦିବ୍ୟପୁରୁଷଙ୍କ ଦୀପ୍ତ, ଦୃପ୍ତ ମୁଖମଣ୍ଡଳକୁ ଗ୍ରହିଁରହିବ ସଜଳ ଆଖିରେ। ସଂଜୁ'ର ଭାଇମାନେ ସମସ୍ୱରରେ କାନ୍ଦିଉଠିବେ ପ୍ରବୋଧିତ ହେବେ। ବଂଧୁ, ବାଂଧବ, ଆତ୍ମୀୟ, ଅନୁଜନ, ପରିଜନ, ସ୍ୱଜନ ସମସ୍ତେ ଦୀର୍ଘଶ୍ୱାସ ତ୍ୟାଗ କରିବେ। ଏକ ସ୍ୱରରେ କହିଉଠିବେ, ତୁମେ ଅମର, ଅମ୍ଳାନ, ଅମଳିନ, ତେଜସ୍ୱୀ ଦେବପୁରୁଷ। ସ୍ମୃତି ତୁମର ଚିରନ୍ତନ।

ତୁମ ଅଲିଅଳ କୁନି, ତବ ଅଭିଷିତ ସାର୍ଥକ ପୁରୁଷ 'ପ୍ରବୋଧ' ସବିନୟେ ପ୍ରଣିପାତ କରୁଛନ୍ତି। ତୁମ ସ୍ମୃତି–ଉଜ୍ଜୀବନ ଉଜ୍ଜୀବିତ ହୋଇଉଠୁ। ଯୁଗାନ୍ତର ସୃଷ୍ଟିକରୁ।

ଏତିକି ମିନତି ଏକାଂତରେ ବିଭୁଙ୍କର ଚରଣ ଯୁଗଳରେ–

ଜୟ ଜଗନ୍ନାଥ, ଜୟ ତୁମର ବିଧାନ।

**ତୁମର ଅଲିଅଳି କନ୍ୟା**
**କୁନି (ସଂଯୁକ୍ତା)**

• • • •

# ଡାଲୁଅ ଯୋଗେ କାନସିରୀ

ଶଂକର୍ଷଣ ମଙ୍ଗରାଜ

ଡାଲୁଅ ଯୋଗେ କାନସିରୀ ପାଣି ପାଇଲା ପରି ମୋର ସାଙ୍ଗିଆ ମଙ୍ଗରାଜ ହୋଇଥିବାରୁ ବିଭିନ୍ନ ବିଶିଷ୍ଟ ବ୍ୟକ୍ତିମାନଙ୍କର ସ୍ନେହ ଓ ଶ୍ରଦ୍ଧା ମୁଁ କିପରି ଲାଭ କରିଥିଲି ତାହାର କେତେକ ଦୃଷ୍ଟାନ୍ତ ଏଠାରେ ସମସ୍ତଙ୍କ ଜାଣିବା ପାଇଁ ଲିପିବଦ୍ଧ କରୁଛି।

ରାଜ-ଆଠଗଡର ଜଣେ ସମାଜସେବୀଭାବେ ମୋ ଜୀବନ ଆରମ୍ଭ କରି ପରେ କଟକ ଆକାଶବାଣୀରେ ଯୋଗଦେଲି। ସେଠାରେ ମଙ୍ଗରାଜଙ୍କ ଜ୍ୟେଷ୍ଠପୁତ୍ର ବିଜୟକେତନ ମଙ୍ଗରାଜ କାମ କରୁଥାନ୍ତି। ସମସ୍ତେ ଧରିନେଲେ ମୁଁ ତାଙ୍କର ସାନଭାଇ। କିଛିଦିନ ପରେ ମୁଁ ଜୟପୁର କେନ୍ଦ୍ରକୁ ଗଲି। ସେଠାରେ ଦିନେ ସେ ଅଞ୍ଚଳର ସୁପ୍ରସିଦ୍ଧ ନେତା ତଥା ପୂର୍ବତନ ସ୍ୱର୍ଗତ ମନ୍ତ୍ରୀ ରାଧାକୃଷ୍ଣ ବିଶ୍ୱାସରାୟ ଆସି ମୋତେ କୁଣ୍ଢାଇପକାଇ କହିଲେ "ତୁ ମୋ ସାଙ୍ଗ ଯଦୁମଣିର ସାନପୁଅ"। ମୁଁ ଯେତେ ମନାକଲେ ମଧ୍ୟ ସେ ଶୁଣିବାକୁ ପ୍ରସ୍ତୁତ ନଥିଲେ। ସେଠାରେ ଥିବାପର୍ଯ୍ୟନ୍ତ ତାଙ୍କଠାରୁ ମୁଁ ସାନପୁଅର ସ୍ନେହ ପାଉଥିଲି। ତାଙ୍କ ବ୍ୟତୀତ ସେଠାର ପ୍ରସିଦ୍ଧ ଉତ୍କଳ ସମ୍ମିଳନୀର ଅନ୍ୟତମ ନେତା ସ୍ୱର୍ଗତ ହରିହର ମିଶ୍ର ଓ ସ୍ୱର୍ଗତ ବଳଭଦ୍ର ସାମନ୍ତରାୟ ମୋତେ ଯଦୁମଣିଙ୍କର ପୁଅ ହିସାବରେ ସ୍ନେହଶ୍ରଦ୍ଧା କରୁଥିଲେ।

ତାଙ୍କ ବ୍ୟତୀତ ଆକାଶବାଣୀ କଟକ କେନ୍ଦ୍ରର ନିର୍ଦ୍ଦେଶକ ଏବଂ ପରେ ଦିଲ୍ଲୀ ଦୂରଦର୍ଶନର ମହାନିର୍ଦ୍ଦେଶକ ପି. ଭି. କୃଷ୍ଣମୂର୍ତ୍ତୀ ମୋତେ ମଧ୍ୟ ମଙ୍ଗରାଜଙ୍କର ପୁଅ ବୋଲି ଧରିନେଇଥିଲେ। କଟକ ବିବିଧଭାରତୀ କେନ୍ଦ୍ରରୁ "ରସଧାରା" ଶୀର୍ଷକ କାର୍ଯ୍ୟକ୍ରମରେ ମୁଁ ଥରେ ଗୀତିକାର ସ୍ୱର୍ଗତ କୃଷ୍ଣମୋହନ ପଟ୍ଟନାୟକଙ୍କ ଜୀବନୀ ଓ କୃତୀ ପ୍ରସାର କରିଥିଲେ। ତାହା ଶୁଣି ସାଲେପୁର ଅଞ୍ଚଳର ପଞ୍ଚାଅଶୀ ବର୍ଷର ଜଣେ ବୃଦ୍ଧ ହାତରେ ବାଡ଼ିଧରି ଆସି ମୋ ମୁଣ୍ଡରେ ହାତବୁଲାଇ କହିଲେ "ଯଦୁମଣିର ପୁଅ ତୁ" ନହେଲେ କି ତୁ ସ୍ୱାଧୀନତା ସଂଗ୍ରାମୀମାନଙ୍କ କଥା ଏତେ ସୁନ୍ଦରଭାବେ ପ୍ରସାର କରିପାରିଥାନ୍ତୁ ?

ଏଥିରୁ ସ୍ୱର୍ଗତ ଯଦୁମଣି ଅନ୍ୟମାନଙ୍କର କେତେ ପ୍ରିୟ ଥିଲେ ଅନୁମେୟ। ମଙ୍ଗରାଜ ସାଙ୍ଗିଆ ହେତୁ ମୁଁ ଏହିପରି ବହୁ ଲୋକଙ୍କର ଆଶୀର୍ବାଦ ପାଇ ନିଜକୁ ଭାଗ୍ୟବାନ୍ ମନେକରିଛି।

**ଆକାଶବାଣୀ**
**କଟକ**

• • • •

# ଯଦୁମଣିଙ୍କ ଯାଦୁମୁଣି

## ଫକୀର ହରିଚନ୍ଦନ

ସ୍ୱର୍ଗୀୟ ଯଦୁମଣି ମଙ୍ଗରାଜଙ୍କ ସହିତ ମୋର ବ୍ୟକ୍ତିଗତ ଆଳାପ ପରିଚୟ ହୋଇଥିଲା କଣାସଠାରୁ ୫ ମାଇଲ୍ ଦୂର ଏକ ଅଭ୍ୟନ୍ତର ଅଞ୍ଚଳ ବିନ୍ଧଣ-ନନ୍ଦିଖୋଦା ପୋଖରୀହୁଡାରେ, ଏବଂ ତା ପୁଣି ଦିନରେ ନୁହେଁ, ବିଳମ୍ବିତ ରାତ୍ରିରେ । ଯେତେଦୂର ମନେହେଉଛି ୧୯୪୯ ମସିହା ମଧୁବସନ୍ତର ସେ ଥିଲା ଏକ ମଧୁମୟ ଏବଂ ସ୍ମରଣୀୟ ସଂଧ୍ୟା ।

ଓଡ଼ିଶାର ଐତିହାସିକ ପ୍ରାଚୀନ ସମର ସଂସ୍କୃତିର ବାହକ କ୍ଷତ୍ରିୟ ଖଣ୍ଡାୟତମାନଙ୍କର ନୈତିକ ମୂଲ୍ୟବୋଧର ଅପଚୟ ଏବଂ ସେମାନଙ୍କର ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ଅବନତିକୁ ପ୍ରତିରୋଧ କରି ମହାନ୍ ଖଣ୍ଡାୟତ-ସମର ସଂସ୍କୃତି ଓ ପରଂପରାର ପୁନରୁଦ୍ଧାର ଏବଂ ବିକାଶସାଧନ ଲକ୍ଷ୍ୟନେଇ ସ୍ୱର୍ଗତ ଯଦୁମଣି ମଙ୍ଗରାଜ ଓଡ଼ିଶାରେ ଖଣ୍ଡାୟତ (କ୍ଷତ୍ରିୟ) ମହାସଭା ନାମରେ ଏକ ବିରାଟ ଗଣଅନୁଷ୍ଠାନ ଗଢ଼ି କେବଳ ଓଡ଼ିଶାରେ କାହିଁକି, ସାରା ଭାରତରେ ଚହଳ ପକାଇ ଦେଇଥିଲେ । ମଣିକାଞ୍ଚନ ସଂଯୋଗପରି ଯଦୁମଣିଙ୍କ ସହିତ ସ୍ୱର୍ଗତ ନୃସିଂହ ସାମନ୍ତସିଂହାରଙ୍କର ଏ କ୍ଷେତ୍ରରେ ମହାସଂଯୋଗ ଘଟିଥିଲା । ଓଡ଼ିଶାର ଅନେକ ରାଜରାଜୁଡ଼ା ଏବଂ ଖ୍ୟାତନାମା ବୁଦ୍ଧିଜୀବୀଙ୍କର ତାଙ୍କ ପ୍ରତି ଅକୁଣ୍ଠ ସମର୍ଥନ ଥିଲା । ବିଭିନ୍ନ ପ୍ରାନ୍ତରେ ସଭା କରିବା ପାଇଁ ଲୋକେ ତାଙ୍କୁ ନିମନ୍ତ୍ରଣ କରି ମାଇଲ୍ ମାଇଲ୍ ଦୂରରୁ ହାତୀଉପରେ ବସାଇ ବାଜା, ବାଣ, ରୋଷଣି ସହ ପଟୁଆର କରି ସଭାସ୍ଥଳକୁ ପାଛୋଟି ନେଉଥିଲେ । ମନେହେଉଥିଲା-ସତେଯେପରି ସେତେବେଳେ ଯଦୁମଣି ମଙ୍ଗରାଜ ଥିଲେ ସମଗ୍ର ଓଡ଼ିଶାର ମୁକୁଟବିହୀନ ସମ୍ରାଟ ।

ସେତିକିବେଳର କଥା । ବିକ୍ଷଣ ଗ୍ରାମରେ ସ୍ୱର୍ଗତ ବଂଶୀଧର ବରାଳଙ୍କ ଉଦ୍ୟମରେ ଯଦୁମଣି ମଙ୍ଗରାଜ ଓ ନୃସିଂହ ସାମନ୍ତସିଂହାରଙ୍କୁ ଡ଼କାହୋଇଥାଏ ବିନ୍ଧଣ-ନନ୍ଦିଖୋଦା ପୋଖରୀହୁଡା ପଡ଼ିଆରେ ସଭା କରିବାକୁ । ସେଠିକି ରାସ୍ତା ତ ନଥାଏ, ଧାନକଟା ପରେ କଣାସଠାରୁ ବିନ୍ଧାଣଯାଏଁ କେବଳ ହିଡ଼ ଆଉ ଶଗଡ଼ ଗୁଳାବାଟ ଫିଟିଥାଏ । ସେଦିନ ଅପରାହ୍ନରେ କଣାସ ଗାଁମୁଣ୍ଡରୁ ଅତଥି ଦୁହିଁଙ୍କୁ ପାଲିଙ୍କିରେ ବସାଇ ବିରାଟ ପଟୁଆର ଭିତରେ ସେଇ ଅମଡ଼ା ଗହିର ବାଟରେ ସଭାସ୍ଥଳକୁ ପାଛୋଟି ନେଲାବେଳେ ହଜାର ହଜାର ଲୋକଙ୍କର ଅଭୂତପୂର୍ବ ଉତ୍ସାହ ଉଦ୍ଦୀପନା ଥିଲା ବର୍ଣ୍ଣନାତୀତ । ଢୋଲ, ଶଙ୍ଖ, ମହୁରି, ଖୋଳ, ଝାଞ୍ଜ ଆଉ ହରିବୋଲ ହୁଳହୁଳି ନାଦରେ ଗାଁଗଣ୍ଡା ପ୍ରତିଧ୍ୱନିତ ହୋଇଉଠୁଥିଲା । ସେଇ ସଂଧ୍ୟାରେ ସଭାକାର୍ଯ୍ୟ ଶେଷ ହେଲାପରେ ତାଙ୍କ ସହିତ ମୋତେ ପରିଚିତ କରାଇ ଦେଇଥିଲେ ସ୍ୱର୍ଗୀୟ ବଂଧୁ ଡାକ୍ତର ନୃସିଂହ ସାମନ୍ତସିଂହାର ।

ସେ ଘଟଣାର ୩ ବର୍ଷ ପରେ ୧୯୫୨ ମସିହାରେ ତାଙ୍କ ସହିତ ପୁଣି ଥରେ ଦେଖାହେଲା କଣାସରେ ଦୋକନ୍ଦା ମେଳଣ ପଡ଼ିଆରେ-ସଂପୂର୍ଣ୍ଣ ଏକ ଭିନ୍ନସ୍ୱାଦର ଅନୁଭୂତିପୂର୍ଣ୍ଣ ପରିବେଶ ଭିତରେ । ଭାରତର ନୂତନ ସଂବିଧାନ ଅନୁଯାୟୀ ଲୋକସଭା ଓ ରାଜ୍ୟ ବିଧାନସଭା ପାଇଁ ପ୍ରଥମ ସାଧାରଣ ନିର୍ବାଚନର ପ୍ରଚାର କାର୍ଯ୍ୟ ଚାଲିଥାଏ । ଆଜିକାଲିକା ପରି କାର୍-ଷ୍ଟାର-ବାର୍ ପ୍ରଚାର ମାଧ୍ୟମର ତ ଉଦ୍ଭାବନ ବି ହୋଇନଥାଏ; ତା'ଛଡ଼ା ସାଧାରଣ ଗାଡ଼ିମଟର, ପାମ୍ଫଲେଟ୍ ପୋଷ୍ଟର ବା ମାଇକ୍ ଇତ୍ୟାଦିର ଧୁମ୍‌ଧାମ୍ ବି ନଥାଏ । କେବଳ ସାଧାରଣସଭା ଆଉ ଲୋକସଂପର୍କକୁ ହିଁ ମୁଖ୍ୟ ପ୍ରଚାର ମାଧ୍ୟମରୂପେ

ବିବେଚନା କରାଯାଉଥାଏ । ମୋର ତ ଠିକ୍ ମନେଅଛି ୧୯୫୨ ସାଧାରଣ ନିର୍ବାଚନରେ ସମଗ୍ର ପଶ୍ଚିମ ସତ୍ୟବାଦୀ (କଣାସ) ଅଞ୍ଚଳ ପାଇଁ କଣାସରେ ମାତ୍ର ୨ଗୋଟି ନିର୍ବାଚନ ସଭା ହୋଇଥିଲା- ଗୋଟିଏ କଂଗ୍ରେସ୍ ତରଫରୁ ଓ ଆଉ ଗୋଟିଏ ଜନସଂଘ ତରଫରୁ । ଓଡ଼ିଶାରେ ପଣ୍ଡିତ ନୀଳକଣ୍ଠ ଦାଶ ଓ ପଣ୍ଡିତ ଗୋଦାବରୀଶ ମିଶ୍ର ନୂଆକରି ଜନସଂଘ ଦଳ ଗଢି ଦୁହେଁ ସେଇ ଦଳର ପ୍ରାର୍ଥୀରୂପେ ସତ୍ୟବାଦୀ ଓ ବାଣପୁର ନିର୍ବାଚନମଣ୍ଡଳୀରୁ ନିଶୁଣି ଚିହ୍ନରେ ଲଢୁଥାଆନ୍ତି । ସତ୍ୟବାଦୀରୁ ବିଧାନସଭା ପାଇଁ କଂଗ୍ରେସ୍ ପ୍ରାର୍ଥୀ ଥାଆନ୍ତି ସ୍ୱର୍ଗୀୟ ସତ୍ୟବାଦୀ ନନ୍ଦ । ମହତାବବାବୁ ସେତେବେଳେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଏବଂ କଂଗ୍ରେସ୍ ନିର୍ବାଚନ ପରିଚାଳନା ଦାୟିତ୍ୱରେ ଥାଆନ୍ତି । କଂଗ୍ରେସ୍ ପ୍ରାର୍ଥୀ ସତ୍ୟବାଦୀ ନନ୍ଦଙ୍କୁ ମୁଁ ସମର୍ଥନ କରୁଥାଏ । ଦଳଦୃଷ୍ଟିରୁ କଂଗ୍ରେସ ଦଳ ତୁଳନାରେ ଜନସଂଘ ଦଳର କୌଣସି ପ୍ରଭାବ ନଥିଲେ ମଧ୍ୟ ପଣ୍ଡିତ ନୀଳକଣ୍ଠଙ୍କ ଅସାଧାରଣ ବ୍ୟକ୍ତିତ୍ୱ ଓ ପାଣ୍ଡିତ୍ୟ ପ୍ରତି ଜନସାଧାରଣଙ୍କର ଯଥେଷ୍ଟ ଶ୍ରଦ୍ଧା ଓ ସମ୍ମାନ ଥାଏ । ସେହି କାରଣରୁ ମୁଖ୍ୟମନ୍ତ୍ରୀ ଡକ୍ଟର ମହତାବଙ୍କୁ କଣାସକୁ ଡାକି କଂଗ୍ରେସ ତରଫରୁ ସାଧାରଣ ସଭାଟିଏ କରାଇବା ପାଇଁ ମୁଁ ସତ୍ୟବାଦୀବାବୁଙ୍କୁ ପ୍ରସ୍ତାବ ଦେଇଥିଲି ଏବଂ ମୋ ପ୍ରସ୍ତାବ ଅବିଳମ୍ବେ କାର୍ଯ୍ୟକାରୀ ହୋଇଥିଲା । ୧୯୪୬ ମସିହାରୁ ମହତାବଙ୍କ ସହିତ ମୋର ସୁସଂପର୍କ ଥିଲା । ତେଣୁ ମୁଁ ନିଜେ ସଭାର ଆୟୋଜନ କରିଥିଲି । ମେଳଣପଡ଼ିଆ ଲୋକାରଣ୍ୟ ହୋଇଗଲା । ହଜାର ହଜାର ଲୋକ ଡ଼ିସେମ୍ବର ମାସର ଶୀତକାକରରେ ଘଣ୍ଟା ଘଣ୍ଟା ଧରି ଠିଆହୋଇ ପ୍ରବଳ ଆଗ୍ରହର ସହିତ ମହତାବବାବୁ ଏବଂ ପଙ୍କବାବୁ (ପୁରୀ ଲୋକସଭା ଆସନ ପାଇଁ କଂଗ୍ରେସ୍ ପ୍ରାର୍ଥୀ ଲୋକନାଥ ମିଶ୍ର) ଙ୍କ ବକ୍ତୃତା ଶୁଣି ଘନଘନ କରତାଳି ଧ୍ୱନିରେ ସଭାସ୍ଥଳକୁ ପ୍ରକମ୍ପିତ କରିଦେଲେ । ଲୋକଙ୍କର ଏପରି ଆଗ୍ରହ ଦେଖି କଂଗ୍ରେସ ପ୍ରତି ବିପୁଳ ଜନସମର୍ଥନ ଥିବାର ହୃଦୟଙ୍ଗମ କରି ଆମେସବୁ ନିଶ୍ଚିନ୍ତ ହୋଇଥିଲୁ । ସଭା ଭାଙ୍ଗିବା ପରେ ବିଭିନ୍ନ ସ୍ଥାନୀୟ ଅନୁଷ୍ଠାନ ତରଫରୁ ମୁଖ୍ୟମନ୍ତ୍ରୀଙ୍କୁ ପୁଷ୍ପମାଲ୍ୟ ଓ ମାନପତ୍ର ଦିଆଯାଇ ସ୍କୁଲ ହତା ଭିତରେ ସ୍ୱତନ୍ତ୍ରଭାବେ ସଂବର୍ଦ୍ଧିତ କରାଯାଇଥିଲା । ମୁଖ୍ୟମନ୍ତ୍ରୀ ୪ ଗୋଟି ଅନୁଷ୍ଠାନକୁ ଦେଢ଼ଶହ-ଦୁଇଶହ କରି ମୋଟ ସାତଶହ ଟଙ୍କା ସାହାଯ୍ୟ ଦେଇଥିଲେ ।

ମହତାବବାବୁଙ୍କ ସଭାର ୪ ଦିନ ପରେ ପଣ୍ଡିତ ନୀଳକଣ୍ଠଙ୍କ ନିର୍ବାଚନ ସଭା ହେଲା ଠିକ୍ ସେଇ ଜାଗାରେ, ସେଇ ମେଳଣପଡ଼ିଆରେ । ପଣ୍ଡିତ ନୀଳକଣ୍ଠଙ୍କ ସହିତ କଣାସ ଯାଇଥିଲେ ବାଗ୍ମୀପ୍ରବର ଯଦୁମଣି ମଙ୍ଗରାଜ । ଦଳଦୃଷ୍ଟିରୁ ଯେତେ ଫରକ୍ ହେଲେ ମଧ୍ୟ ସେ ଦୁଇ ନେତାଙ୍କ ପ୍ରତି ସେମାନଙ୍କର ସଦ୍‌ଗୁଣ ପାଇଁ ମୋର ବ୍ୟକ୍ତିଗତ ସଂପର୍କ ଓ ସମ୍ମାନ ଅକ୍ଷୁଣ୍ଣ ଥିଲା । ତେଣୁ ସଭାସ୍ଥାନରୁ କିଛି ଦୂରରେ ମୁଁ କାନଡେ଼ରି ଠିଆହୋଇ ରହିଲି । ଝଙ୍କାଳିଆ ବରଗଛତଳେ ଦୁଇଟି ଖଟଉପରେ ସତରଞ୍ଜିଟିଏ ପକାଇ ସଭାମଞ୍ଚ କରାଯାଇଥିଲା । ମାଇକ୍ ନଥାଏ; ପଣ୍ଡିତ ନୀଳକଣ୍ଠ ଠିଆ ହୋଇନପାରି ସଭାପତି ଆସନରେ ବସି ପ୍ରଥମରୁ କହିଦେଲେ-ଏ ଅଞ୍ଚଳ ମୁଖ୍ୟତଃ ଚାଷୀଙ୍କ ଅଞ୍ଚଳ, ତେଣୁ ମୁଁ ଯଦୁମଣି ମଙ୍ଗରାଜଙ୍କୁ ସଂଗରେ ଡ଼ାକି ଆଣିଛି, ସେ ଚାଷୀଙ୍କ ସମସ୍ୟା ସଂପର୍କରେ କହିବେ, ଆପଣମାନେ ଆଗେ ତାଙ୍କ ବକ୍ତୃତା ଶୁଣନ୍ତୁ ।

ମଙ୍ଗରାଜେ ଉଠିଲେ ଏବଂ ସେଇ ସଭାମଞ୍ଚ ଉପରେ ଦେହରୁ ପଞ୍ଜାବୀ, ଗଞ୍ଜି ସବୁ କାଢ଼ି ଥୋଇଦେଇ ପିନ୍ଧିଥିବା ଧୋତିଟାକୁ ଆଣ୍ଠୁପାଏଁ ଟେକିଟାକି ଲୋଟେଇ ଖୋସିଦେଲେ । ତା ପରେ ଦୋସତାଟାଏ ମୁଣ୍ଡରେ ଠେକା ଭିଡ଼ିଦେଲେ-ସତେ ଯେପରି ଚାଷ କରିବାକୁ ସଂଗେ ସଂଗେ ହଳ ଯୋଚିବେ । ଶୀତ ସଂଧ୍ୟାରେ ପ୍ରଥମରୁ ତାଙ୍କର ଏ ପ୍ରକାର ପ୍ରସ୍ତୁତି ହିଁ ଲୋକଙ୍କ ମନରେ ଯଥେଷ୍ଟ କୌତୂହଳ ସୃଷ୍ଟି କରିଥିଲା । ନାଭିତଳକୁ ଲୁଗା ଖୋସଣି ଥିବା ହେତୁ ଫୁଙ୍ଗୁଳା ଛାତିତଳେ ଅନ୍ତଲପେଟଟି ଭାରି ମାନୁଥାଏ- ସତେକି ଚିକ୍‌କଣ କଳାମୁଗୁନି ପଥରରେ କୁଂଦା ହୋଇଥିବା ମଣିଷ ମୂର୍ତ୍ତିଟିଏ । ତାଙ୍କ ସାମନାରେ ସଭାସ୍ଥଳରେ ଲୋକ ଖୁବ୍ କମ୍ ବସିଥିଲେ; କିନ୍ତୁ କିଛି ଦୂରରେ ପଛପାଖ, ବାଁପାଖେ ଓ ଡ଼ାହାଣପାଖେ ଏଠି ସେଠି ପୁଞ୍ଜି ପୁଞ୍ଜି ହୋଇ କିଛି ଲୋକ ନଇବନ୍ଧରେ ଠିଆ ହୋଇଥିଲେ । ତେଣୁ ଯଦୁମଣିବାବୁ ପ୍ରଥମରୁ କିଛି

ନକହି ଅପେରା ଯାତ୍ରାରେ ସୁଆଙ୍ଗିଆ ବାହାରିଲାପରି ହାତ ଦି'ଟାକୁ ଅଣ୍ଟାରେ ଦେଇ ନାଟ୍ୟଙ୍କ ସଭାମଞ୍ଚ ଉପରେ କ୍ଷଣେ ଆଡିପଟେଇ ଚାହିଁଲାପରି ଚାରିଦିଗକୁ ଗ୍ରହିଁ ଗ୍ରହିଁ ଘେରାଏ ବୁଲିଗଲେ ।

ତା'ପରେ ଆରମ୍ଭ ହେଲା ଭାଷଣ । ଭାଷଣ ନୁହେଁ ତ, ସେ ଥିଲା ଖଣ୍ଡେ କଳାମେଘ ଭିତରୁ ଘଡ଼ଘଡ଼ିର ଆବାଜ– ଯାହାକୁ ଦେଖିଲେ ଓ ଶୁଣିଲେ ମୟୂରମାନେ ପାହାଡ ଉପରେ ନୃତ୍ୟ କରନ୍ତି । ପରେ ପରେ ଅବିରାମ ଧାରାରେ ବର୍ଷା ଧ୍ୱନିର ଝଂକାର ! ପହିଲି ଆଷାଢ଼ରେ ଅସ୍ରାଏ ବର୍ଷାହୋଇ ଶୁଖିଲା ଖମାରେ କିଛି ପାଣି ଜମିଗଲେ ଏଣେତେଣେ ଭୂଇଁ ଫାଙ୍କରେ ମୁଣ୍ଡଗୋଞ୍ଜି ରହିଥିବା ଭେକମାନେ ଯେପରି ପଲପଲ ହୋଇ ଆସି ଜମା ହୋଇଯାନ୍ତି ସେଇ ପାଣିଖମା ଭିତରେ, ଠିକ୍ ସେଇପରି ଦୂରରେ ଏଠିସେଠି ଠିଆ ହୋଇଥିବା ଲୋକମାନେ ପଞ୍ଝା ପଞ୍ଝା ହୋଇ ପଳେଇଆସି ସଭାସ୍ଥଳରେ ଠେଲାପେଲା ଖୁନ୍ଦାଖୁନ୍ଦି ହୋଇ ବସିପଡ଼ିଲେ । ମୁଁ ତ ଆଗରୁ କହିଛି କଂଗ୍ରେସ୍ କାମ କରୁଥିଲି । କିନ୍ତୁ ମୁଁ ବି କେତେବେଳେ କେମିତି ଆସି ସଭାସ୍ଥଳରେ ଯଦୁମଣିବାବୁଙ୍କ ସମ୍ମୁଖରେ ବସିପଡିଥିଲି ତା ମୁଁ ଜାଣିନଥିଲି । ତାହା ଥିଲା ଯଦୁମଣିଙ୍କ ଭାଷଣ ଯାଦୁର ଚୁମ୍ବକୀୟ ଆକର୍ଷଣ । ଲୁହା ଯେପରି ଥାଉ, ଯେଉଁଠି ଥାଉ, ଲୁହାକୁ ଚୁମ୍ବକ ଟାଣିବ ହିଁ ଟାଣିବ; ଲୁହାର ସ୍ଥାନଭେଦ ଗୌଣ ।

ଯଦୁମଣି ମଙ୍ଗରାଜେ କୁଆଡୁ କେତେ ନାଇଁ କେତେ କଥାର ନଥା ସେ ଅନ୍ତଲପେଟ ଭିତରେ ସାଇତି ରଖିଥିଲେ କେଜାଣି, ମୂଳରୁ ଶେଷଯାଏଁ ଦୀର୍ଘ ଦେଡ଼ଘଣ୍ଟାକାଳ ଲୋକେ ମନ୍ତ୍ରମୁଗ୍ଧ ହେଲାପରି ସୂଚୀପାତ–ନୀରବତା ରକ୍ଷାକରି ସତେଯେପରି ତାଙ୍କ ବକ୍ତୃତାକୁ ପଣାପରି ପିଇଯାଉଥିଲେ ଏବଂ ମଝିରେ ମଝିରେ ବହେ ହସିହସି ବେଦମ୍ ହୋଇଯାଉଥିଲେ । ସେ ଦିନର ତାଙ୍କର ଦୀର୍ଘ ବକ୍ତୃତାରୁ ମୁଁ ଆଜିଯାଏଁ ଦୁଇଟି ଦୃଷ୍ଟାନ୍ତ ମନେରଖିଛି ଏବଂ ପାଠକମାନଙ୍କ ମନୋରଂଜନ ନିମନ୍ତେ ତାକୁ ଏଠି ପରିବେଷଣ କରୁଛି ।

ସେଥର ସତ୍ୟବାଦୀ ନିର୍ବାଚନମଣ୍ଡଳୀରୁ ବିଧାନସଭା ପାଇଁ ଆଉ ଦୁଇଜଣ ସ୍ୱାଧୀନ ପ୍ରାର୍ଥୀ ଠିଆ ହୋଇଥାନ୍ତି ଏବଂ ସେ ଦୁହିଁଙ୍କ ପଛରେ କଂଗ୍ରେସ୍‌ର ଦୁଇଜଣ ବଡନେତାଙ୍କ ଆଶୀର୍ବାଦ ଥିବା ଦାବି କରି ସେ ଦୁହେଁ ମଧ ନିଜ ନିଜକୁ କଂଗ୍ରେସ ପ୍ରାର୍ଥୀ ବୋଲି କହୁଥାନ୍ତି । ମଙ୍ଗରାଜେ ସେମାନଙ୍କୁ ଲକ୍ଷ୍ୟ କରି କହିଲେ–ଭାଇମାନେ ! ଗୋଟିଏ ଦଳରୁ ଗୋଟିଏ ଆସନ ପାଇଁ ଗୋଟିଏ ସ୍ଥାନରୁ ତିନିଟା ପ୍ରାର୍ଥୀ– ଗୋଟିଏ ଟିକଟିଆ ଆଉ ଦି'ଟା ବିନା ଟିକଟିଆ । ଆପଣମାନେ କାହାକୁ ଭୋଟ ଦବ ? "ବୋହୂ ଲୁଣ, ଶାଶୁ ଲୁଣ, ଶଙ୍କରସାହୁ ଲୁଣ,– ତିନି ଲୁଣରେ ପିତା ତୁ'ଣ", ସେ ତୁ'ଣ କୁ ଖାଇବ କେମିତି ? କଥା କ'ଣ କି–ଶଙ୍କର ସାହୁର ବୋହୂ ଚୁଲିରେ ତୁ'ଣ ଆଟିକା ବସେଇ ସିଝି ଆସିଲାବେଳକୁ ଲୁଣ ପକେଇ ଗ୍ରଲିଗଲା ଗାଁମୁଣ୍ଡ କୂଅରୁ ପାଣିଡାଳେ ଆଣିବା ପାଇଁ । ବୋହୂ ଗ୍ରଲିଯିବା ପଛେ ପଛେ ଶଙ୍କର ସାହୁର ସ୍ତ୍ରୀ ବାରିପାଖରୁ ବାହାର ପାଇଟି ସାରି ଘରକୁ ଆସି ଦେଖିଲା–ବୋହୂ ନାହିଁ, କିନ୍ତୁ ଚୁଲିଉପରେ ତୁ'ଣ ଆଟିକା ଘଡଘଡ ହେଉଛି–ସିଝିଆସିଲାଣି । ଏତିକିବେଳେ ଲୁଣ ପଡିବା ଦରକାର, ଏ'ୟା ଭାବି ସେ ତୁ'ଣକୁ ଗ୍ରହିଁ ଲୁଣ ପକେଇଦେଇ ପୋଖରୀତୁଠକୁ ଗାଧୋଇ ଗ୍ରଲିଗଲା । ସେ ଗ୍ରଲିଯିବା ପଛେ ପଛେ ଶଙ୍କର ସାଉ ଆସି ଘରେ ପହଞ୍ଚିଲା । ପଖାଳଖାଇ ଯାଇ ବିଲ କୋଡୁ କୋଡୁ ଗାଧୁଆବେଳ ହୋଇଯିବାରୁ ଭୋକରେ ଆଉଟ୍‌ପାଉଟ୍ ହୋଇ ସେ ଗହିରନାଳରେ ଗାଧୋଇସାରି ଆସିଥିଲା; ଦେଖିଲା ଘରେ ଶାଶୁ ନାଇଁ କି ବୋହୂ ନାଇଁ, କିନ୍ତୁ ଚୁଲିଉପରେ ତୁ'ଣ ଧକ୍‌ଧକ୍ ହୋଇ ଓହ୍ଲେଇବାକୁ ହେଲାଣି । ତେଣୁ ବେଶି ଖାଇବ ବୋଲି ଶାଶୁ ବୋହୂଙ୍କୁ ଅପେକ୍ଷା ନକରି ସେ ତୁ'ଣ ଆଟିକାରେ ମୁଠାଏ ଲୁଣ ଛାଡିଦେଇ ନିଜେ ଭାତ ତୁ'ଣ ବାଡିଆଣି ଖାଇବସିଲା । ଗୁଣ୍ଡାଏ ଭାତ ପାଟିରେ ଭର୍ତ୍ତିକରି ତୁ'ଣ ମେଞ୍ଚାଏ ପାଟିରେ ଦେଲାବେଳକୁ ସେ ଭାତଗୁଣ୍ଡାକ ତ ବାହାରିପଡିଲା, ସକାଳ ପଖାଳରୁ ପେଟଭିତରେ ଆଉ ଯାହା ରହିଲା ସେତକ ବି ପାଟିବାଟେ ବାହାରିପଡିଲା । ଏବେ କୁହ ଭାଇମାନେ ଆପଣମାନେ ! କ'ଣ କଂଗ୍ରେସ୍ ଘରେ ପଶି ପିତା ତୁ'ଣ ଖାଇବ? ଘନଘନ କରତାଳି ଧ୍ୱନିରେ ମେଳଣ ପଡିଆ ଉଛୁଳି ପଡୁଥାଏ । ଏତେ ଶୀତ ସମୟରେ ମଧ ତାଙ୍କ ଦେହରୁ ଗମ୍ ଗମ୍

ଝାଳ ବୋହି ଯାଉଥାଏ । ସତେ ଯେମିତି ସେ ସଭାମଞ୍ଚ ଉପରେ କଂଗ୍ରେସ୍ ସାଂଗରେ କୁସ୍ତି କରୁଥିଲେ ! ପ୍ରଥମରୁ ସେ କାହିଁକି ଦେହରୁ ଜାମାପଟା ଖୋଲି ଦେଇଥିଲେ ଏବେ ଜଣାପଡିଲା । ସତରେ ! ଯିଏ ନିଜ ଆଖିରେ ନଦେଖିଛି ସେ ହୁଏତ ବିଶ୍ବାସ କରିପାରିବ ନାହିଁ ଯେ ଯଦୁମଣି ମଙ୍ଗରାଜ ସାଧାରଣ ସଭାରେ ଭାଷଣ ଦେବାର ଭଙ୍ଗୀ ଓ ଠାଣି ସଂପୂର୍ଣ୍ଣଭାବେ ତାଙ୍କର ନିଜସ୍ବ ଶୈଳୀ ଥିଲା ଏବଂ ତାହା ଥିଲା ବାସ୍ତବିକ ଏକ ଅନନ୍ୟସାଧାରଣ ଭାଷଣ ଶୈଳୀ ।

ସେ ପୁଣି କହିଲେ–ଭାଇମାନେ : ଶୁଣିଲି–୪ ଦିନ ତଳେ ମୁଖ୍ୟମନ୍ତ୍ରୀ ଆସି ଏଠି ପିଲାମାନଙ୍କୁ କିଛି ଟଙ୍କା ଦେଇଯାଇଛନ୍ତି । ଭଲକଥା– ପିଲାଗୁଡ଼ାକ ଖରାରେ ତରାରେ ବୁଲି ପରିଶ୍ରମ କରିବେ, ତାଙ୍କ ଦୁଃଖ ମୁଖ୍ୟମନ୍ତ୍ରୀ ନ ବୁଝିଲେ ଆଉ କିଏ ବୁଝିବ ? ନିଅରେ ପିଲାଏ ନିଅ, ଯେତେ ପାଉଛ ସେତେ ନିଅ ; କିନ୍ତୁ "ଚିରନ୍ ଚରେ, ହୁଁ ହୁଁ କଂ ଚିତ୍ ରଖେ ବଚ୍ଛୁଆରୀ"– ମୋର ଏଇ ପଦକ କଥା ମନେ ରଖିଥିବ । ଗାଈ ପଡିଆରେ ମୁହଁପୋତି ଘାସ ଚରୁଥିଲେ ମଧ୍ୟ ବାଛୁରୀ ଏଣେତେଣେ ଡିଆଁ ମାରୁଥିବାବେଳେ ମୁଣ୍ଡହଲେଇ ହୁଁ ହୁଁ ହୋଇ ବାଛୁରୀକୁ ନିଜର ଉପସ୍ଥିତି ଜଣାଇ ଉତ୍ସାହିତ କରୁଥାଏ । ତେଣୁ ଗାଈର ପାଟି ଘାସରେ ଲାଗିଥିଲେ ମଧ୍ୟ ମନଥାଏ ବାଛୁରୀଠାରେ । ସେହିପରି ପିଲାମାନଙ୍କ ପକେଟରେ ମୁଖ୍ୟମନ୍ତ୍ରୀଙ୍କ ଟଙ୍କା ଥାଉ, କିନ୍ତୁ ମନ ଥାଉ ପିଲାମାନଙ୍କର ଉପରକୁ ଉଠିବାର ବାଟ ପଣ୍ଡିତ ନୀଳକଣ୍ଠଙ୍କ ନିଶୁଣୀ ଉପରେ ।

ସେଇ ଗୋଟିକ ସଭାରେ ଯଦୁମଣି ତାଙ୍କ ଭାଷଣରେ ଯାଦୁମୁଣିରୁ ଏଇପରି ମନ୍ତ୍ର ଝାଡି ଲୋକମାନଙ୍କୁ ଏପରି ବଶ କରିଦେଇଥିଲେ ଯେ କଂଗ୍ରେସ ପ୍ରତି ଅନୁରକ୍ତ ଥିବା ଅନେକ ଭୋଟରଙ୍କ ମତ ବଦଳାଇ ପଣ୍ଡିତ ନୀକଣ୍ଠଙ୍କୁ ଜିତାଇଲେ ।, ସେଇ ମହାନ୍ ବିପ୍ଳବୀର, ପ୍ରଖ୍ୟାତ ସ୍ବାଧୀନତା ।ସଂଗ୍ରାମୀ, ବାକ୍‌ଚତୁରୀ– ଯାଦୁକର ସ୍ବର୍ଗୀୟ ଯଦୁମଣି ମଙ୍ଗରାଜଙ୍କର ଅମ୍ଳାନ ସ୍ମୃତି ପ୍ରତି ତାଙ୍କର ଜନ୍ମ ଶତବାର୍ଷିକୀ ପାଳନ ଅବସରରେ ମୁଁ ଭକ୍ତିପୂତ ବିନମ୍ର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି ।

**ପଲ୍ଲିବାଣୀ ମନ୍ଦିର**
**କଣାସ, ପୁରୀ,**

• • • •

ଅସତ୍ୟ ପାଇଁ ମନୁଷ୍ୟ ବେଶୀ ଆସକ୍ତ ଓ ଆନନ୍ଦିତ, କିନ୍ତୁ ସତ୍ୟ ପାଇଁ ନୁହେଁ ।

–ବାପୁଜୀ

# ଯଦୁମଣି ମଙ୍ଗରାଜଙ୍କ ସ୍ମୃତି ଉପଲକ୍ଷେ

## ଜାତୀୟ କବି ବୀର କିଶୋର ଦାସ

କର୍ପୂର ଗଲାଣି        ପଡ଼ିଅଛି କନା
କେ କହିବ କାହିଁ ଗଲେ ସେ ମିଶି,
ତାଙ୍କ ଚିତ୍ର ପଟେ        ଗ୍ରହିଲା ବେଳକୁ
ମୁହଁଟି ତାଙ୍କର ଯାଉଛି ଦିଶି ।
ତରୁଣ ବୟସ ଥିଲେ ସେ ସାହାସୀ
ସଂପଦେ ବିପଦେ ସଦା ରହି ଖୁସି,
ନିର୍ଭୀକ ଚିତ୍ତରେ କହୁଥିଲେ କଥା
ଆନକୁ ହସାଇ ନିଜେ ନ ହସି,
ଜାଲିଆନାୱାଲା ବାଗ        ଅନ୍ଧକୂପ ହତ୍ୟା
ଖୋଲାଇଲା ଯେବେ        ହାହାକାର ବାତ୍ୟା
ମହାତ୍ମା ଆହ୍ୱାନେ        ସାଜିଲେ ସୈନିକ
ସ୍ୱାଧୀନତା ଯୁଦ୍ଧ ଶିବିରେ ଆସି ।

ଦାସ ଇତିହାସ        ତଳେ ଦେଇ ଫିଙ୍ଗି
କଲେଜ ଫାଟକ        ଆଗ ଦେଲେ ଭାଙ୍ଗି
ଦେଶେ ଜଳାଇଲେ        ବିପ୍ଳବର ନିଆଁ
ଦେଖି ଥରିଥିଲେଗୋରା ବିଦେଶୀ ।

ତାଙ୍କ ଡାକଶୁଣି        ଶତ ଶତ ଯୁବା
ସମର ପ୍ରାଙ୍ଗଣେ        ହେଲେ ଆସି ଉଭା
ମରଣ ସମ୍ମୁଖେ        ଛାତି ପତାଇଲେ
ଲଢ଼ିଲେ ପାଷାଣକାରାରେ ପଶି ।
ପାରାବାର ଠାରୁ        ଦରବାର ଯାକେ
ଶଙ୍କି ଯାଉଥିଲେ        ତାଙ୍କ ସିଂହ ଡାକେ
ଘୋର ଝଡ ଘୋର-        ଝଂଜା ଭିତରେ ସେ
ଗତି କରୁଥିଲେ ନୋହି ଉଦାସୀ ।

ଧନ ଯଉବନ        ଯଶ ମନବଳ
ସହଜେ କା ପାଖେ        ନ ରହେ ଅଚଳ
କାଳ ସଂଗେ ତାଳ        ଦେଇ ନ ଚ୍ଲିଲେ
(ଲୋକେ) ଉପରୁ ତଳକୁ ପଡନ୍ତି ଖସି ।

ଥକି ପଡ଼ି ନେଲେ        ଅନ୍ତିମ ବିଶ୍ରାମ
ବିଶ୍ରାମ ଦିଅଇ        ଆତ୍ମାକୁ ଆରାମ
ମଙ୍ଗରାଜ ଥିଲେ        ଯୁଗ ମଙ୍ଗଧାରୀ
ମଙ୍ଗ ଛାଡ଼ିଦେଇ ଗଲେ ତ ଭାସି ।

• • • • •

# ମଙ୍ଗରାଜେ

ବିଶ୍ୱନାଥ ପାଇକରାୟ

*ଆହେ ମଙ୍ଗରାଜ ବାଗ୍ମୀ ପ୍ରବର,*
*ଜୀବନ ଯାପିଲ ହୋଇ ଜବର ।୧।*
*ଦେଶ ମିଶ୍ରଣର ଉତ୍ତାଳ ଭଙ୍ଗ,*
*ଡେଇଁ ବାଢିଥିଲ ନାନା ପ୍ରସଙ୍ଗ ।୨।*
*ଅକାଳେ ଏ ମାଟି କରିଲା ଗ୍ରାସ*
*ତେଣୁ ଲିଭାଇଲ ଜୀବନ ପ୍ରାସ ।୩।*
*(ଉପ) ବାଚସ୍ପତି ପଦେ ପ୍ରଗଲ୍‌ଭ ଭାଷଣ*
*ସଭ୍ୟଗଣେ କରୁଥିଲା ସଂତ୍ରାସ ।୪।*
*ତମ ପରି ପୁଅ ହୋଇ ଜନମ*
*କେବେ ବା ସାଧିବ ଦେଶ କରମ ? ।୫।*
*ଏ ଉତ୍କଳ ଦୁଃଖ ଶମିବ ଜାଣ*
*ତବ ବାକ୍ୟ ଥିଲା ସବୁଠୁ ଟାଣ ।୬।*
*ଏ ଭୂଇଁର ବରପୁତ୍ରଟି ତୁମେ*
*କେତେ ଯେ ଶର [illegible] ।୭।*
*ମାତ୍ର ତବ ସେବା ଦେଶର ପାଇଁ*
*ଆଉ କାହାଠାରେ ଦେଖଇ ନାହିଁ ।୮।*
*ଧନ୍ୟ ଧନ୍ୟ ତୁମେ ହେ ମଙ୍ଗରାଜ,*
*ମରଣର ପୁରେ ଅମର ସାଜ ।୯।*
*ତବ ପୁଣ୍ୟ ପ୍ରାଣ ନେଉ ତୋଳିକି*
*ଏ ମାଟିର ନିତ୍ୟ ନମ୍ର ଓଳିକି ।୧୦।*

■ ■ ■ ■ ■

ମୀରାବାଈଙ୍କଠାରୁ ଆମେ ଏତିକି ମାତ୍ର ଶିଖିଛୁ ଯେ ସେ ଭଗବାନ ଦର୍ଶନ ପାଇଁ ସବୁ କିଛି ଛାଡ଼ି ଦେଇଥିଲେ, ନିଜ ସ୍ୱାମୀଙ୍କୁ ମଧ୍ୟ ।

—ବାପୁଜୀ

# ମଙ୍ଗରାଜ ସ୍ମରଣେ

ବୈଷ୍ଣବ ଚରଣ ସାମଲ

ବେଳେ ବେଳେ ଅତୀତଟା ମନେପଡେ
ଏବଂ ଚିନ୍ତାହୁଏ ଏତେଶୀଘ୍ର  କିପରି ଭୁଲିଲୁ ଆମେ
ଅତୀତକୁ  ଏବଂ ତାର ଶବକୁ ହୃଦୟରେ ଥପିଥୁଇ
ନିଆଁ ଜାଳି ଫଉଁଷରେ ପରିଣତ କଲୁ,
ଏଇ କଥା ବେଳେ ବେଳେ ମନେ ପଡ଼େ
କୋକବାୟା  ଗୀତ ଶୁଣି ବେଶ୍ କିଛି ଆରାମରେ
ଶୋଇ ଶୋଇ ପିଲାମାନେ କ'ଣ କିଛି ସ୍ୱପ୍ନ ଦେଖି
ଚିତ୍ ଚିତେଇଲା ପରି-ଆମେ ସବୁ ବେଳେ  ବେଳେ
ଚିତ୍ ଚିତେଇ ଉଠୁ  । ତା'ପରେ ବେଶ୍ ନିଦ।
ଗହମ ନିଦରେ ଆମେ ଶୋଇ ରହୁ, ଅତୀତଟା ଦୂରେ ଦୂରେ
ବହୁଦୂରେ ହଜମାରେ (ଯେମିତି ବା ତାର ଆଉ ଆମଠରେ ଟିକେ
ଆସ୍ଥା ନାହିଁ )
ଏଇତ ସେ ଦିନ କଥା, କାଲି ପରି ଲାଗେ,
ଆମ ଗାଁ ବଳିୟାର ସିଂହ ଏବଂ ଖେତୁଆତ ସିଂହ
ବ୍ରାହ୍ମଣୀ ନଈର ଆରପଟ ସାମନ୍ତ ସିଂହାର
ଏବଂ ଦକ୍ଷିଣ କବାଟ, ଆଉ ଉତ୍ତର କବାଟ,
ପ୍ରତାପୀ ଉଦଣ୍ଡ ରାୟ, ରାଉତରା, ମଙ୍ଗରାଜ, ଜଗଦେବ ଆଦି
ଗଜପତି ରାଜାଙ୍କର ବନ୍ଦରେଖଧାରୀ ଖଣ୍ଡାୟତମାନେ,
ପାଇକକଚ୍ଛା ଭିଡି ହୋଇ ଲମ୍ବା ଲମ୍ବା ଗାଲମୁଚ୍ଛ ନିଶ ମୋଡି
(ଅତୀତର ଯାହା ମାତ୍ର ଏତିକି ସନ୍ତକ !)
ଦାନ୍ତ କଡ଼ମଡ଼ କରି ଜେଜେ ବାଜା ଅମଳର ଦନ୍ତୁରା କୃପାଣ ଧରି
ମଙ୍ଗରାଜ ଭାଷାରେ ଡେଙ୍ଗା ପଡ଼ିଥିଲେ।
ସେ ଦିନର ଖଣ୍ଡାୟତ ମହାସଭା ଆଜି ଆଉ ନାହିଁ
ନାହିଁ ଆଉ ଖଣ୍ଡାୟତ ଦର୍ପ ଏବଂ ତା' ଦେହର ଅମିତ ପ୍ରକ୍ରମ
ଏକ ହାତେ ଲଙ୍ଗଳର ଫାଳ ଆଉ ଅନ୍ୟ ହାତେ ଶାଣିତ କୃପାଣ ଧରି
ଯିଏ ଦିନେ ଏ ମାଟିର ସୁନା ଛାତି ବିଦାରି ବିଦାରି
ଏ ଜାତିର ପ୍ରାଣେ ପ୍ରାଣେ ଭରିଥିଲା ଅସୀମ ଶକତି
ଏବଂ ଏ ଜାତିକୁ ରଖିଥିଲା ପ୍ରାଣଦେଇ ଅରାତିର ରକତ ପଖାଳି
ସେଇ ତାର ଖଣ୍ଡାୟତ ଆଜି ହୀନବଳ !  ମଙ୍ଗରାଜେ !
ସେ ଦନ୍ତୁରା ତରବାରୀ ସିନ୍ଦୂର ଚର୍ଚ୍ଚିତ ଆଜି ଦଶରା ବାସରେ ଏବଂ
ତା ପରେ ସାଇତା ପୁଣି ଭଙ୍ଗାଚୁଲା ଟୋକେଇ ଭିତରେ।
ତୁମେ ଆଉ କେତେ କାଳ ବଞ୍ଚିଥାନ୍ତ -
ଘଏ ଜାତିର ଧମନୀରେ ତଡ଼ିତ ଦେବାକୁ ?
ମଙ୍ଗରାଜେ ! ଗଲାଣି ତ ଗଲା କଥା.........
ଆଜି ଖାଲି ତୁମେ ଆମ ସ୍ମୃତି ତଳେ ବେଳେ ବେଳେ ଜାଗି ଉଠ,
ଜାଗି ଉଠ ଯେତେବେଳେ ଦେଖ ଆମେ ଅତୀତକୁ ଫେରିଚାହିଁ-
ଏ ଦେଶକୁ ଗଙ୍ଗାଠାରୁ ଗୋଦାବରୀ ଯାଏ,
ଏବଂ ଦେଖୁ ପୁଣି ବଡଦାଣ୍ଡ, ନୀଳନେତ, ବାଇଶି ପାହାଚ
ବଡପଣ୍ଡା, ବଡଡୋର, ମହୋଦଧି ମହାନଦୀ-ବିରାଟ କଳ୍ପନା।
ଏବଂ ମନେପଡେ ସେ ଦିନର ଦୁଃଖକଥା..........
କାହାକୁ କହିବୁ ? ଅଣ୍ଟିକୁଚା ଫେଣ୍ଟି କାଟେ,
କପାଳରେ କରମାରି ସେଦିନ ଆମେଇ ସବୁ
କାନ୍ଦୁଥିଲୁ ଏବଂ ମରୁଥିଲୁ..........
ଏଇ ମାଟି ସୁନା ମାଟି ଖଣ୍ଡେ ଖଣ୍ଡେ କାଟି କାଟି
ଦେଇଦେଲୁ......ଆମ ଛାତି ପଥର ହୋଇଲା;
ମଙ୍ଗରାଜେ ! ତୁମେ ଆଜି ଆମ ପାଖେ ଏବଂ ଆମ ଉତ୍ତର
ଦାୟାଦଠାରେ
ସ୍ମୃତିର ସଙ୍ଖାଳି, ତମରି ଭାଷଣ ନିଆଁ ଆଜି ସିନା ନିଭିଲାଣି,
ହେଲେ ତା' ଉତ୍ତାପ ଏବେ ଯାଇନି ମନରୁ
ଏମିତି ଦିନେ ତମ ଭାଷଣ ନିଆଁରେ
ଜଳିଥିଲା ଏଇ ଜାତି, ଓଡ଼ିଶାର ସହର ଓ ଗ୍ରାମ,
ରାସ୍ତାଘାଟ ଗିରିବନ କଂପିଥିଲା ତମରି ଆହ୍ୱାନେ
ଆଜି ସବୁ ଶୁନଶାନ୍ ତୁମେ ନାହିଁ,
ତଥାପି ସ୍ମୃତିର ପଥ ମନେ ପଡେ ବାରମ୍ବାର....।
ତମରି ସ୍ୱାଧୀନ ଚିନ୍ତା, ଜାତୀୟ ମମତା
ଆମେତ ଭୁଲିଲୁ ସବୁ....ଭୁଲିଲୁ ଅତୀତ
ଯେଣୁ ଆମେ କହୁଅଛୁ ଅତୀତଟା ଲୋଡ଼ାନାହିଁ
ଆମେ ସବୁ କୁଳାଙ୍ଗାର ଏ ଜାତିର ଅଯୋଗ୍ୟ ଦାୟାଦ।

• • • •

# ଥିଲ : ତୁମେ ମଂଗୁଆଳ.....

ମୁରାରୀ ମୋହନ ଜେନା

ଏ ଜାତିର, ସିଧା ସଳଖର
ମଙ୍ଗ ମୋଡ଼ିବାର......
ଥିଲ କିନ୍ତୁ ମଙ୍ଗରାଜ
ତୁମେ ମଂଗୁଆଳ....
କରୁଥିଲ ଦେଶସେବା.......ଜାତିସେବା
ସବୁ ବାଧା ବଂଧନକୁ ଠେଲି.....
ଇସ୍ପାତୀ ମନରେ......ଏକ୍‌ଦମ ଭୁଲିଯାଇ
ଯାହା କିଛି ଜୀବନର ଜୁଆରିଆ
ଜଂଜାଳର ଜାଳ....
ତମେ କିନ୍ତୁ ଗଲା ପରେ
ଏକମାତ୍ର ଭାବୁଛୁ ଆମେଇ

ରସେଇ, ହସେଇ, ଆଉ ତତେଇ ମତେଇ
କହିଯିବ ଲଗାମ ଛଡା ନିଚ୍ଛକ ସତ୍ୟକୁ
ଅବା କିବା କେହି ......? ?
ତମରି ସେ ଭାଷଣର ଗୁରୁ ଲଘୁ
ହାସ୍ୟ ରସିକତା.......
ଏଇ ଜାତି, ଏଇ ମାଟି....ଏ ମଣିଷ
ବଞ୍ଚିଥିବା ଯାଏ....ଭୁଲି କିନ୍ତୁ ପାରିବନି
ତମର ଉଦାତ-ବାଣୀ.........
ଦେଶ ଲାଗି ଉତ୍ସର୍ଗ ଏ ତୁମ ପ୍ରାଣ
ତୁମରି ଏ ପ୍ରାଣର-ମମତା.....! ! !

• • •

# ଉତ୍କଳ–ବୀର ଯଦୁମଣି

ରବୀନ୍ଦ୍ର କୁମାର ଜେନା

ହେ ଓଜସ୍ୱୀ ବକ୍ତା ଓ ବିପ୍ଳବୀ ଯଦୁମଣି,
ଥିଲ ତୁମେ ପରାଧୀନ ଉତ୍କଳ ଅଗ୍ରଣି ।
ତୁମରି ନେତୃତ୍ୱେ ଆଜି ସୁପ୍ତ ଦେଶବାସୀ
ହୋଇ ପାରିଛନ୍ତି ବୀର, ଉତ୍ସାହୀ, ସାହସୀ ।
ଜାତୀୟ ଜୀବନେ ଯେତେ ପାପ ଆବିଳତା,
ଅବିଶ୍ୱାସ, ଲାଞ୍ଚ ମିଛ, ଶଠତା, ଭଣ୍ଡତା ।
ଦୂର କରିଥିଲ ତୁମେ ଜନତାର ନେତା,
ତେଣୁ ତୁମେ ବୋଲାଇଛ ଆଜି ସର୍ବଜେତା
ଭାଷା ବୈଷମ୍ୟର ତୁମେ ଥିଲ ଯେ ବିରୋଧୀ
ପାରି ନଥିଲେ ତ କେହି ତୁମକୁ-ଯେ ରୋଧି ।
ବ୍ୟଙ୍ଗ ଓ କୌତୁକପୂର୍ଣ୍ଣ ତୁମରି ବକ୍ତୃତା
ଦେଶବାସୀ ମନେ ଆଣୁଥିଲା ଜାତୀୟତା ।
ଥିଲ ତୁମେ ନିର୍ଭୀକ ସ୍ୱାଧୀନ ମତବାଦୀ,
ପ୍ରଗଲ୍‌ଭ, ସାହସୀ ବୀର ତଥା ସ୍ପଷ୍ଟବାଦୀ ।
ସ୍ୱାଧୀନ ସଂଗ୍ରାମାକାଶେ ଥିଲ ଧୂମକେତୁ
ପରାଧୀନ ସମାଜ ସାଗରେ ବାନ୍ଧିଥିଲ ସେତୁ ।
ବିଦ୍ୟୁତ୍ ରେଖା ସଦୃଶ୍ୟ ବ୍ୟକ୍ତିତ୍ୱ ପ୍ରକାଶି,
ସ୍ୱାଧୀନତା ସଂଗ୍ରାମରେ ମିଶିଥିଲ ଆସି ।
ଦୁଃସାହସିକ କାର୍ଯ୍ୟେ ଅଗ୍ରୀ ଭିଡୁଥିଲ ଆଗ
ସମସ୍ତ ଆନ୍ଦୋଳନରେ ଦେଉଥିଲ ଯୋଗ ।
ବିଶିଷ୍ଟ ଜାତୀୟବାଦୀ ବାଗ୍ମୀ ମଙ୍ଗରାଜେ,
ଥିଲ ତୁମେ ମଙ୍ଗମାଡି ଓଡିଆ ସମାଜେ ।
ହରାଇ ତୁମ୍ଭଙ୍କୁ ଆଜି ଏ ଉତ୍କଳବାସୀ
ଲୋତକ ଝରାଉଅଛି ନିକାଞ୍ଚନେ ବସି
ଅକିଞ୍ଚନ ଏ ଓଡ଼ିଆ ମାଗେ ଆଜି ଭିକ୍ଷା
ଦିଅ ତା'ରେ ବୀର, ସାହସ ବିପ୍ଳବ ଦୀକ୍ଷା ।

• • • •

ଶ୍ରଦ୍ଧାଦ୍ୱାରା ମନୁଷ୍ୟ ସବୁକିଛି କରିପାରେ । ଆବଶ୍ୟକ ହେଲେ ପର୍ବତକୁ ଲଘଂନ କରିପାରେ ।

—ବାପୁଜୀ

# ଚିରଦିନ ଥିବ ମନେ

### କିଶୋର ଚନ୍ଦ୍ର ମହାପାତ୍ର

ନିୟତିର ଗତି
ନିୟତି ନିୟମେ
ସବୁତ ଯାଇଛି ଗ୍ଳଲି,
ତୁମ ଜୀବନର
ଅବସାନ ପରେ
ଯାହା ମନେ ପଡ଼େ ଖାଲି ॥୧॥
ତୁମେ ଏକା ଥିଲ
କାଳିଆ କୃଷ୍ଣ
କଂଗ୍ରେସ ବେଣୁ ଧାରୀ,
ତୁମ ହାତ ଗଢ଼ା
ପାରଳା ମନ୍ତ୍ରୀ
ଦେଶେ ପଡ଼ିଥିଲା ଝଡ଼ି ॥୨॥
କେତେ ଯେ ସରଳା
କେତେ ଯେ ଅବଳା
ତୁମ ପଛେ ବାନା ଧରି,
ସ୍ୱାଧୀନ ସମରେ
ଇଂରେଜ ସହ
ହରଦମ୍ ଥିଲ ଲଢ଼ି ॥୩॥

ମନେ ପଡ଼େ ଆଜି
ତୁମରି ବିଜୟେ
କେନ୍ଦ୍ରାପଡ଼ାର ମୂଳା,
ନିର୍ବାଚନରେ
ଛଏ ଥିଲା ତୁମ
ଧର୍ମ ଧାରଣା ଗୁଳା ॥୪॥

ମନେ ପଡ଼େ ତୁମ
ବଂକୁଲି ବାଡ଼ି
ତୁମର ସେ ବିଡ଼ିଚଣା,

ତୁମ ହସ ହସ
ରଙ୍ଗ ଓ ରସ
ଆମ ଭଳି ବହୁ
ଚକ୍ଷୁ ସମାନ
ଭୁଆଁରେ କରିଛି ବଣା ॥୫॥

ତୁମ ବିଦ୍ରୂପ
ତୁମରି ବ୍ୟଙ୍ଗ
କେତେ ଯେ କାହାର
ଛାତିରେ ଛାତିରେ
ଚଳାଇଛି ତୀକ୍ଷ୍ଣ ଛୁରୀ,

ମଂଗରାଜ ହେ !
ତୁମ ଗଲା ପରେ
ତୁମରି କଥାକୁ
ତୁମରି ଲଥାକୁ
ଚିରକାଳ ଥିବୁ ଝୁରି !

• • •

# ମଙ୍ଗରାଜଙ୍କ ବିୟୋଗେ

ଡ଼ଃ ପ୍ରସନ୍ନ କୁମାର ମିଶ୍ର

*ଓଡ଼ିଶାର ମଙ୍ଗ ଏବେ ରହିଲା ଖାଲି*
*ମଙ୍ଗରାଜେ ଗଲ ଗ୍ଳଲି (୦)*
*ବାଗ୍ମୀବୀର ଶିରୋମଣି*
*ନିର୍ଭୀକ ବଚନଖଣି.*
*ମାତୃକା-ବତ୍ସଳ ମଣି ମରୁଛୁ ଭାଳି-(୧)*
*ହସାଇ ରସାଇ ପାର*
*କନ୍ଦାଇ ବୁହାଅ ଧାର*
*କର ଯେତେ ଉପକାର ନପଡ଼ି ଘାଲି-(୨)*
*ତୁମ ଓଜସ୍ୱିନୀ ଭାଷା*
*ସଂଚରାଏ କେତେ ଆଶା*
*ଅରାତି ହରାଏ ରିଷ-ନରହେ ନାଳି-(୩)*
*ଆଉ ବା ବାଙ୍କୁଲା ବାଡ଼ି*
*ବେକକୁ ନେବେ ଘୋଷାଡ଼ି*
*ସୋହାଗ ଦେବ ଅଜାଡ଼ି ଆଦର ଡାଳି--(୪)*

**ମଦନ ମୋହନ ପଡ଼ା**
**ଅନୁଗୋଳ**

• • • • •

# ହେ ବନ୍ଦନୀୟ

ଡଃ ମିନାକ୍ଷୀ ଦାସ

ହେ ଆଲେଖ୍ୟ !
ଜୀବନ–ଯୌବନ–ଯନ୍ତ୍ରଣା–ଜରାର,
ଅସମୟେ ଥକି କି ପଡ଼ିଛ ?
ଆଜୀବନ ସଂଗ୍ରାମୀ ପୁରୁଷ,
ଓଡ଼ିଶାର ବରପୁତ୍ର ଯଦୁମଣି ମଙ୍ଗରାଜ !
କରିଅଛ କିବା ଶରର ଶୟନ–
ଜନସେବା, ରାଜନୀତି ଯାହାଙ୍କ ଭୂଷଣ ? (୧)

ତୁମେ ବନ୍ଦନୀୟ ।
ତୁମେ ଅଭିନନ୍ଦନୀୟ
ଯେଣୁ, ଏ ଜାତି ଦେଖିଛି ଦିନେ
ତୁମରି ହୃଦରେ,
ମମତାର ଶତ ହୃତ୍‌ସ୍ପନ୍ଦନ
ଜାତି ହିତେ, ଦେଶ ହିତେ
ଲଭିଛ କାରାବରଣ । (୨)

ଜନ୍ମଜୟନ୍ତୀର ଏହି ମହାମହୋତ୍ସବେ
ଉପଗତ ପୁଣି ଶୁଭଲଗ୍ନ
ତେଣୁ, କରଇ ଅନୁସ୍ମରଣ ।
ପାଥେୟ ସଜାଡ଼େ
ତବ ସେଇ ଅଦୃଶ୍ୟ ଆତ୍ମାରେ
ମନ, ପ୍ରାଣ–ବିଜଡ଼ିତ
ସଂଗ୍ରାମୀ ଅଭିବାଦନ (୩)

କର୍ତ୍ତବ୍ୟର ନିର୍ଭୀକ ପ୍ରହରୀ !
ସାଧନାର ସତତ ପୂଜାରୀ !
ଦୂର ଦିଗ୍‌ବଳୟ ଧାରେ ଥିଲେ ଥାଅ ପଛେ
ବରଷି ଯାଅ ଏ ଭୂମେ ଅଶେଷ ଆଶିଷ ।
ସାଧନାର ପୂତସୂକ୍ତ,
ମନେ ହେଉ ଉଜ୍‌ଜୀବିତ ।
ହୁଅ ତୁମେ ମନ୍ତ୍ରଦ୍ରଷ୍ଟା
କର ନିନାଦିତ । ଶ୍ରବଣେ ଅଭିମନ୍ତ୍ରିତ, ସରଗ ମରତ,
କହିଯାଅ ବାରେ,
ଦୃପ୍ତଭଙ୍ଗରେ ତବ
ଅଙ୍ଗେ ନିଭା ଗଉରବ ଗାଥା (୪)

୨.ଆର୍‌.ଏ
୧୦/୨ କଳ୍ପନା ଫ୍ଲାଟ, ଭୁବନେଶ୍ୱର–୧୪

# ଗାଁ ଜୋଇଁ

## ପ୍ରଫେସର ଯତୀନ୍ଦ୍ର ମୋହନ ମହାନ୍ତି

ଯଦୁମଣିବାବୁ ଆମ ଗାଁ ଜୋଇଁ। ଆମ ଗାଁର ଗୋଟିଏ ସମ୍ଭ୍ରାନ୍ତ ପରିବାର ରାଧାଶ୍ୟାମ ଦାସ ମୁକ୍ତିଆରଙ୍କ ଝିଅଙ୍କୁ ସେ ବିବାହ କରିଥିଲେ। ପରେ ସ୍ତ୍ରୀଙ୍କର ଅସମୟରେ ମୃତ୍ୟୁ ହେବାରୁ ସେ ସେହି ପରିବାରରେ ନିଜର ଶାଳୀଙ୍କୁ ବିଭାହେଲେ। ରାଧାଶ୍ୟାମ ବାବୁଙ୍କର ପୁଅ ନଥିଲେ, କେବଳ ଯୋଡ଼ିଏ ଝିଅ। ତେଣୁ ଯଦୁମଣିବାବୁ ପରବର୍ତ୍ତୀ କାଳରେ ସମସ୍ତ ସଂପତ୍ତି ପାଇଥିଲେ। ଆମ ଗାଆଁ ଶ୍ୟାମସୁନ୍ଦରପୁର। କେନ୍ଦ୍ରାପଡ଼ା ଦକ୍ଷିଣକୁ, ଗୋବରୀ କେନାଲ ଉପରେ ପ୍ରାୟ ଦୁଇମାଇଲ୍ ଦୂରହେବ, ଯଦୁମଣିବାବୁ ନିଜ ଗାଁ କ[illegible]ପାଟଣାଠାରୁ କେନ୍ଦ୍ରାପଡ଼ା ଆସିଲେ ଆମ ଗାଆଁ ଦେଇ ଆସନ୍ତି। ପୁଣି ବୈବାହିକ ସମ୍ବନ୍ଧ ହେବାରୁ ଆମ ଗାଁ ସହିତ ସେ ବେଶ୍ ଘନିଷ୍ଠ ହୋଇଥିଲେ ଓ ଗାଆଁଲୋକେ ସମସ୍ତେ ତାଙ୍କୁ ଯଥେଷ୍ଟ ଶ୍ରଦ୍ଧା ଓ ସ୍ନେହ କରୁଥିଲେ।

ଆମ ପରିବାର ସହିତ ଯଦୁମଣିବାବୁଙ୍କର ବିଶେଷ ସମ୍ପର୍କ ଥିଲା। ମୋ ବାପା ଜଗମୋହନ ସ୍କୁଲରୁ ପଢ଼ା ଛାଡ଼ି ଅସହଯୋଗ ଆନ୍ଦୋଳନରେ ଯୋଗଦେଇଥିଲେ ଏବଂ ଯଦୁମଣିବାବୁଙ୍କ ସହିତ ମିଶି କେନ୍ଦ୍ରାପଡ଼ାର ବିଭିନ୍ନ ଅଞ୍ଚଳରେ କଂଗ୍ରେସ୍ କାମ କରୁଥିଲେ। ସେହି ସୂତ୍ରରେ ସେ ଆମ ଗାଁକୁ ଆସିଲେ ପ୍ରଥମେ ଆମ ଗାଁକୁ ଆସନ୍ତି ଏବଂ ବାପାଙ୍କ ସଙ୍ଗରେ ବହୁ ସମୟ ବିଗ୍ଭର ଆଲୋଚନାରେ କାଟିବା ମୁଁ ଦେଖିଛି। ମୋ ଜେଜେବାପା ଓ ମଧୁସୂଦନ ଦାସଙ୍କ ସହ କାମ କରିଥିଲେ। ସୁନାକର ମହାନ୍ତି ଯେ କି କଟକରେ ମୋହରିର ଥିଲେ ଓ ମିଃ ଦାସଙ୍କ ସହିତ କାମ କରୁଥିଲେ। ସେ କଂଗ୍ରେସ୍ କାମଦାମକୁ ପସନ୍ଦ କରୁନଥିଲେ। କିନ୍ତୁ ସେ ଯଦୁମଣିବାବୁଙ୍କୁ ନିଜ ପୁଅପରି ଭାବୁଥିଲେ। ତାଙ୍କ ସଂପର୍କରେ ସ୍ନେହର ସହିତ କଥା ହେଉଥିଲେ। ତେଣୁ ମୋର ପିଲାଦିନେ ମୁଁ ଯଦୁମଣିବାବୁଙ୍କୁ ଜଣେ ସ୍ନେହଶୀଳ, ସ୍ୱାଧୀନଚେତା, ଆଦର୍ଶ ପୁରୁଷଭାବେ ଭାବିବାକୁ ଶିଖିଥିଲି। ସେ ଖୁବ୍ ଭଲ ଭାଷଣ ଦିଅନ୍ତି ବୋଲି ସମସ୍ତେ କହୁଥିଲେ। ମୁଁ ପ୍ରଥମେ ପ୍ରଥମେ ତାଙ୍କର ଏ କ୍ଷମତା ସଂପର୍କରେ ଯଥେଷ୍ଟ ଅବହିତ ନଥିଲି। କିନ୍ତୁ ପରେ ବଡ଼ହେବା ସଙ୍ଗେ ସଙ୍ଗେ ମୁଁ ଯେତେବେଳେ ତାଙ୍କ ଭାଷଣ ସବୁ ଶୁଣିଲି ଓ ବୁଝିଲି ମୋର ମନେହେଲା ତାଙ୍କର ଭାଷଣ ଦେବା ଅଦ୍ୱିତୀୟ। ଯଦି ଭାଷଣ ଦେବାର କ୍ଷମତା ବା ଇଂରାଜୀରେ ଯାହାକୁ କହନ୍ତି 'ଏଲୋକ୍ୟୁଏନ୍ସ' ଭଗବାନ ପ୍ରଦତ୍ତ ଗୁଣ ହୁଏ, ତେବେ ଓଡ଼ିଶାରେ ଏହି ଗୁଣସଂପନ୍ନ ବ୍ୟକ୍ତି ମୁଁ ଖୁବ୍ କମ୍ ଦେଖିଛି।

ଯଦୁମଣିବାବୁଙ୍କ ସହିତ ମୋର କେତେକ ନିର୍ଦ୍ଦିଷ୍ଟ ଅଭିଜ୍ଞତା ଅଛି, ମୁଁ କଟକର ପି. ଏମ୍. ଏକାଡେମୀରେ ପଢୁଥାଏ ଓ ଛୁଟିରେ ଗାଁକୁ ଯାଇଥାଏ। ଦିନେ ପ୍ରାୟ ଛାଇନେଉଟାବେଳେ ମୁଁ ଆମ ବାହାର ଖଞ୍ଜାକୁ ଯାଇଥାଏ, ଦେଖିଲି ଯେ ବାପାଙ୍କ ଲାଇବ୍ରେରୀରେ ଗୋଟିଏ ଖଟଉପରେ ଯଦୁମଣିବାବୁ ଶୋଇଛନ୍ତି ଓ ବାପା ପାଖରେ ବସିଥାନ୍ତି। ମୁଁ ପ୍ରାୟ ଫେରି ଆସୁଥାଏ, ହଠାତ୍ ଯଦୁମଣିବାବୁ ମୋ ଡାକନାମ ଧରି ମୋତେ ଡାକିଲେ। ଆରେ ଶୁଣୁ ଶୁଣି, ମୁଁ ଲାଜଲାଜ ହୋଇ

ତାଙ୍କ ପାଖକୁ ଗଲି । ସେ ହସ ହସ ହୋଇ ମୋତେ ଦୁଇମିନିଟ୍ ଅନାଇ ରହିଲେ ଓ ତା ପରେ ହଠାତ୍ ପାଟିକଲେ ଏଁ ତୁ ଗୋଟାଏ କ'ଣ କବି ହେଲୁଣି । ମୋ ମୁଣ୍ଡରେ ଯେମିତି ବଜ୍ର ପଡ଼ିଲା । ମୁଁ ଲୁଗ୍ଣଇ ଲୁଗ୍ଣଇ କବିତା ଲେଖୁଥିଲି କିନ୍ତୁ ସେ ଖବର ଯେ ଯଦୁମଣିବାବୁଙ୍କ ପାଖରେ ପହଞ୍ଚିଯିବ ଏକଥା ସ୍ୱପ୍ନରେ ବି ଭାବିନଥିଲି । ବାପାଙ୍କୁ ମୋର ବହୁତ ଡ଼ର ଓ ତାଙ୍କ ସାଙ୍ଗ ଯଦୁମଣିବାବୁଙ୍କୁ ଆହୁରି ବେଶୀ ଡ଼ର । ମୁଁ ଚୁପ୍ ହୋଇ ଠିଆହେଲି । ସେ ପୁଣି ପାଟିକରି କହିଲେ ଆଣ ଆଣ ତୋ କବିତା ଆଣ । ଏମିତି ଗଧ ପରି କ'ଣ ଠିଆ ହୋଇଛୁ । ମୁଁ ଜାଣେନା ତା'ପରେ କେମିତି କ'ଣ ହେଲା, କିନ୍ତୁ ମନେଅଛି ମୁଁ ତାଙ୍କୁ କବିତା ନେଇ ଦେଖାଇଥିଲି ଓ ପ୍ରତିଦାନରେ ତାଙ୍କର ଗୋଟିଏ ବିରାଟ ଗ୍ରପ୍ପଡା ବାହା ବାହା ଭାବରେ ପାଇଥିଲି । ପରେ ବିଭିନ୍ନ ସମୟରେ ତାଙ୍କ ସଙ୍ଗେ ଦେଖାହୋଇଛି । ସବୁବେଳେ ସେ ମୋ ସଙ୍ଗରେ ସ୍ନେହ ଓ ଆନନ୍ଦରେ କଥା ହୋଇଛନ୍ତି ।

ଆଉ ଗୋଟିଏ ଘଟଣା କଥା କୁହାଯାଇପାରେ । ମୁଁ ରେଭେନ୍ସା କଲେଜରେ ଅଧ୍ୟାପକ । ଦିନେ, ଦିନ ପ୍ରାୟ ଦୁଇଟା ଅଢ଼େଇଟା ହେବ, ଓ. ଆର. ଟି. ବସ୍‌ରେ ମୁଁ କଟକରୁ ଭୁବନେଶ୍ୱର ଯାଉଥାଏ । ବସ୍‌ରେ ଉଠି ଦେଖେ ଯେ ଯଦୁମଣିବାବୁ ବସିଥାଆନ୍ତି । ମୁଁ ନମସ୍କାର କଲି । ସେ ମୋତେ ଦେଖେଇ ପାଖରେ କାହାକୁ କହିଲେ–ଚିହ୍ନିଛୁ ୟା'କୁ । ଏ ଜଗ ପୁଅ, ରେଭେନ୍ସା କଲେଜରେ ଇଂରାଜୀ ଅଧ୍ୟାପକ ପ୍ରଫେସର । ତା'ପରେ ମୋ ଆଡ଼କୁ ବୁଲିପଡ଼ି କହିଲେ, ତୁ ବିଲାତ ଯାଉଛୁ, ମୁଁ ଆଶ୍ଚର୍ଯ୍ୟ ହେଲି । ପଗ୍ଣରିଲି ଆପଣ କେମିତି ଜାଣିଲେ । ସେ ବସ୍ କଂପାଇ ପାଟିକଲେ କ'ଣ ହେଲା ତୁ ବିଲାତ ଯିବୁ ମୁଁ ଜାଣିବି ନାହିଁ ?

ଏହି ଯଦୁମଣିବାବୁ ବା ଯଦୁମଣି ମଙ୍ଗରାଜ ସାଧାସିଧା, ସ୍ପଷ୍ଟବାଦୀ, ଅତ୍ୟନ୍ତ ସ୍ୱାଭିମାନୀ ଓ ପ୍ରଚଣ୍ଡ ତେଜୀଲୋକ । ସେ କଥା କହିବାବେଳେ ଅନ୍ୟମାନେ ସମସ୍ତେ ନିସ୍ତବ୍ଧ ହୋଇଯାଆନ୍ତି । କେନ୍ଦ୍ରାପଡ଼ା ଅଞ୍ଚଳରେ ତାଙ୍କର ଯେତେ ସମ୍ମାନ ଥିଲା ସେ ସମ୍ମାନର ଅଧିକାରୀ ବୋଧହୁଏ ଆଜିପର୍ଯ୍ୟନ୍ତ କେହି ହୋଇନାହାନ୍ତି । ସେ ଯେଉଁ ପିଢ଼ିର ଲୋକ ସେ ପିଢ଼ି ଆଜି ନିଶ୍ଚିହ୍ନ ଓ ସେପରି ନେତା ଓ କର୍ମୀ ଆଜିକାଲି ଦୁର୍ଲଭ । ଯଦୁମଣିବାବୁଙ୍କ ସ୍ମୃତିଚାରଣ କେବଳ ସ୍ମୃତିଚାରଣ ନୁହେଁ । ଏ ଏକ ତେଜଦୀପ୍ତ ଆଲୋକର ସଂଧାନ । ଆଶା ସେ ଆଲୋକ ଆଜି ଅନ୍ୟମାନଙ୍କୁ ଉଦ୍‌ଭାସିତ କରୁ ।

**ଅବସରପ୍ରାପ୍ତ ଇଂରାଜୀ ପ୍ରଫେସର୍**
**ଉତ୍କଳ ବିଶ୍ୱବିଦ୍ୟାଳୟ**
**୧୫୭୩. ମଧୁବନ ସାରଣୀ**
**ଭକ୍ତମଧୁ ନଗର.**
**ଭୁବନେଶ୍ୱର–୩**

• • • •

# ମଙ୍ଗଧରା ମଙ୍ଗରାଜେ

ନିତ୍ୟାନନ୍ଦ ମହାପାତ୍ର

ଅର୍ଦ୍ଧଶତାବ୍ଦୀ ପାର ହୋଇଯିବ ଆଉ କେତେଟା ବର୍ଷ ପରେ........ ଆମେ ସ୍ୱାଧୀନ ହେଲୁ। ସ୍ୱାଧୀନ ହେବା ପୂର୍ବର କଥା ମନେ ପଡ଼ିଯାଉଛି-- ସେ କାଳର କେତେ କିଏ ସବୁ ମରିହଜି ଗଲେଣି। ସ୍ୱାଧୀନତା ସଂଗ୍ରାମ ବୋଲି ଗୋଟିଏ କୋଳାହଳ ଲାଗିଥିଲା ସେତେବେଳେ, ୧୯୨୧ ଠାରୁ। ତା'ପରେ ୧୯୩୦। ତା'ପରେ ୧୯୪୨। ଏମିତି ପ୍ରାୟ ୧୦ ବର୍ଷ ଛାଡରେ ତିନୋଟି ଆନ୍ଦୋଳନ ହୋଇଗଲା ଏଇ ଦେଶରେ- ଭାରତରେ। ଓଡ଼ିଶା ଭାରତର ଗୋଟିଏ ଅଞ୍ଚଳ। ସେଠି ମଧ୍ୟ ଲାଗିଲା ଯୁଦ୍ଧ-ବ୍ରିଟିଶ ଶାସନ ବିରୋଧରେ। ସେଇ ଯୁଦ୍ଧରେ ସାମିଲ ହୋଇଥିଲେ ପ୍ରଥମରୁ, ୧୯୨୧ରୁ, ଯେଉଁମାନେ, ସେମାନଙ୍କ ମଧ୍ୟରେ ଗଣାହେଉଥିଲେ ଜଣେ ନେତା ରୂପରେ- ଯଦୁମଣି ମଙ୍ଗରାଜ।

ମୁଁ ତ ୧୯୩୦ ବାଲା। ସେତେବେଳକୁ ଯଦୁମଣି ମଙ୍ଗରାଜ ଜଣେ ନେତା-ମାନେ ସ୍ୱାଧୀନତା ସଂଗ୍ରାମୀମାନଙ୍କ ଜଣେ ଆଦର୍ଶ ପୁରୁଷ। ମୋର ମନେପଡୁଛି, ୧୯୩୦ ବେଳକୁ ଓଡ଼ିଶାରେ ଯେତେ ନେତା ଥିଲେ, ସେମାନଙ୍କ ମଧ୍ୟରେ ଦୁଇଜଣ ବକ୍ତା ପ୍ରସିଦ୍ଧିଲାଭ କରିଥିଲେ। ଜଣେ ରାଜକୃଷ୍ଣ ବୋଷ, ଅନ୍ୟ ଜଣେ ହେଉଛନ୍ତି ଯଦୁମଣି ମଙ୍ଗରାଜ।

ଇତି ମଧ୍ୟରେ ଆନ୍ଦୋଳନ ୧୯୩୦ରୁ ପ୍ରାୟ ୧୯୪୫ ଯାଏଁ ଗଲା। ଆମେ ସ୍ୱାଧୀନ ହେଲୁ। ମୋର ଭେଟ ହେଲା ମଙ୍ଗରାଜଙ୍କ ସାଙ୍ଗରେ ଏକାଘରେ-ମାନେ ବିଧାନସଭା ଗୃହରେ। ସେ ଥାଆନ୍ତି କଂଗ୍ରେସ୍‌ର ସଭ୍ୟ, ମୁଁ ଥାଏଁ ତାଙ୍କ ବିରୋଧରେ। ସେ ହେଲେ ଉପବାଚ୍‌ସ୍ପତି। ବକ୍ତୃତା ମାଧ୍ୟମରେ କେତେକଥା କଟାକଟି ହୋଇଛି, ମୋର ମନେନାହିଁ। କିନ୍ତୁ ଗୋଟିଏ କଥ ମୋର ମନେ ପଡୁଛି, ଯେତେବେଳେ ଉପବାଚ୍‌ସ୍ପତିଙ୍କର ଅଧିକ ମାସିକ ଦରମା ଏବଂ ଅନ୍ୟାନ୍ୟ ସୁବିଧା ସୁଯୋଗ ମିଳିବା ପାଇଁ ପ୍ରସ୍ତାବ ଆସିଲା, ସେତେବେଳେ ବିରୋଧୀ ଦଳର ପ୍ରାୟ ସମସ୍ତ ସଭ୍ୟ ସେଇ ପ୍ରସ୍ତାବ ବିରୋଧରେ ମତ ଦେଲେ। ମୁଁ ବିରୋଧୀ ମଞ୍ଚରେ ଥିଲେହେଁ କୌଣସି ଦଳଭୁକ୍ତ ହୋଇନଥିଲି। ସ୍ୱାଧୀନ ସଭ୍ୟଭାବେ ବିଧାନସଭାକୁ ନିର୍ବାଚିତ ହୋଇଥାଏ। ସୁତରାଂ କୌଣସି ଦଳର ନେତାଙ୍କର ମତ ବା ତାଙ୍କ ଦଳର ମତ ଅନୁସାରେ ପରିଚାଳିତ ହେବାର ଦୁର୍ଭାଗ୍ୟ ମୋର ନଥିଲା। ତେଣୁ ମୁଁ ସ୍ୱାଧୀନ ଭାବେ ମୋର ମତ ଦେଲି। ସେଇ ମତଟି ସରକାରୀ ପକ୍ଷର ସମର୍ଥନ କରୁଥିଲା। ମୋର ବକ୍ତୃତା ଉଭୟ ସରକାର ଓ ବିରୋଧୀ ଦଳର ସମସ୍ତ ସଭ୍ୟମାନଙ୍କ ଦ୍ୱାରା ପ୍ରଶଂସିତ ହେଲା। ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ ଖଣ୍ଡିଏ ଚିଠି ମୋ ପାଖକୁ ପଠାଇଦେଲେ। ସେଥିରେ ଲେଖାଥିଲା -'ନିତ୍ୟାନନ୍ଦ, ତୁମର ବକ୍ତୃତାଟି ଅତି ସୁନ୍ଦର ହେଲା। ତା'ପରେ ସଭା ମଉଳିଗଲା ଉତ୍ତାରୁ ମୋତେ ଶ୍ରୀଯୁକ୍ତ ମଙ୍ଗରାଜ ଆସି ଅଭିନନ୍ଦନ ଜଣାଇଲେ। ସେଦିନର କଥା ମୋର ସ୍ପଷ୍ଟ ମନେଅଛି।

ମୁଁ ତାଙ୍କୁ ପୂର୍ବରୁ ଦେଖିଛି-ମାନେ ମୋର ପିଲାକାଳରେ ମୁଁ ତାଙ୍କୁ ଆମ ଘରେ ଦେଖିଥିଲି। ସେ ଆସିଥିଲେ ମୋର ପିତାଙ୍କ ସହ ସାକ୍ଷାତ କରିବାକୁ। ସେତେବେଳେ ମୋର ବୟସ ସାତ/ଆଠ ବର୍ଷ

ହୋଇଥାଏ। ମୋତେ ଦେଖି ସେ ମୋତେ ତାଙ୍କ କୋଳକୁ ଟାଣିନେଲେ ଏବଂ କହିଲେ-"ତୁ ପ୍ରତିଦିନ ଏକ୍‌ସର୍‌ସାଇଜ୍ କର, ଦେଖ ମୁଁ ଏକ୍‌ସର୍‌ସାଇଜ୍ କରେ ବୋଲି ମୋ ଦେହ କେମିତି ଟାଣ ଓ ମଜବୁତ୍ ହୋଇଛି"।

ତା'ପରେ ଅନେକଥର ଆମେ ଅତି ନିକଟରେ ରହିଛୁଁ। ସେ ସବୁ କଥା ଏବେ ମନେ ପଡୁନାହିଁ, ଭୁଲି ହୋଇଯାଉଛି। କିନ୍ତୁ ଗୋଟିଏ ଦିନର କଥା ଭୁଲିବାର ନୁହେଁ। ସେ ପଡ଼ିଥିଲେ ହସ୍‌ପିଟାଲ୍‌ରେ, ନର୍ସିଂହୋମରେ। ମୁଁ ଗଲି ତାଙ୍କୁ ସାକ୍ଷାତ୍ କରିବା ପାଇଁ। ସେ ମୋତେ ଦେଖି ହସି ଦେଲେ। ପଚାରିଲେ-"କିରେ ! କୁଆଡେ ଆସିଛୁ ?" ମୁଁ ଉତ୍ତର ଦେଲି -"ଆପଣଙ୍କୁ ଭେଟିବାକୁ"। ସେ କହିଲେ "ମୋର କ'ଣ ହୋଇଛି? କିଛି ହୋଇନାହିଁ। ମୁଁ ଶୀଘ୍ର ଚାଲିଯିବି"।

ସେ ଚାଲିଗଲେ-ମାନେ ସ୍ୱର୍ଗକୁ ଚାଲିଗଲେ। ଆମେ ତାଙ୍କୁ ଭୁଲିଗଲୁଣି। ତାଙ୍କୁ ଖାଲି ନୁହେଁ, ସମସ୍ତଙ୍କୁ ଭୁଲିଗଲୁଣି, ମାନେ ଯିଏ ସ୍ୱାଧୀନତା ସଂଗ୍ରାମ କରିଥିଲେ ସେମାନଙ୍କୁ। କେବଳ ସେମାନଙ୍କୁ ନୁହେଁ, ସେମାନେ ଯେଉଁ ଆନ୍ଦୋଳନ କରିଥିଲେ, ସେଇ ଆନ୍ଦୋଳନରେ ଇତିହାସକୁ ମଧ୍ୟ ଭୁଲିଗଲୁଣି। ସ୍ୱାଧୀନତା ଦିବସ ସରକାରୀ ସ୍ତରରେ ପାଳିତ ହୁଏ। କିନ୍ତୁ ସେଇଦିନ ଆମ ଘରମାନଙ୍କରେ ଜାତୀୟପତାକା ଉଡାଇବାର ଅଧିକାରକୁ ଆମେ ଭୁଲିଗଲୁଣି। ଏବେ ତ ସ୍ୱାଧୀନତା ପାଇଛୁ ବୋଲି ମୋର ମନେ ହେଉନାହିଁ। ଇଂରେଜୀ ଧଳା ଲୋକଙ୍କର ରାଜୁତି ଯାଇଛି, ତା ସ୍ଥାନରେ ଇରେଜୀପଢ଼ା କଳାଲୋକଙ୍କ ରାଜୁତି ଆସିଛି। ଲୋକେ, ଆଉ କୌଣସି ଦରିଦ୍ର ଲୋକର କଥା ଶୁଣିବାକୁ ପ୍ରସ୍ତୁତ ନୁହେଁ। ଯାହାର ଧନ ଅଛି, ସେଇ କେବଳ ନିର୍ବାଚନରେ ଜୟଯୁକ୍ତ ହୋଇ ସରକାରୀ ସ୍ତରରେ ଆଧିପତ୍ୟ ବିସ୍ତାର କରୁଛି।

ଏହାହିଁ ଆମର ସ୍ୱାଧୀନତା। ତେଣୁ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଭୁଲିଯିବା କଥା ଅତି ସ୍ୱାଭାବିକ। ସ୍ୱାଧୀନତା ସଂଗ୍ରାମୀ, ସୁବକ୍ତା, ଯଦୁମଣି ମଙ୍ଗରାଜଙ୍କୁ ସ୍ମରଣ କରି ଆଜି ମୁଁ ନିଜେ ଗୌରବାନ୍ୱିତ ମନେକରୁଛି ସିନା, ମାତ୍ର ଲୋକଙ୍କ ହୃଦୟରେ ମଙ୍ଗରାଜ କେଉଁଠି, ବା ମୋ ଭଳି ସେତେବେଳେ ଯେଉଁମାନେ ନୌକାରେ ବସିଥିଲେ ସେମାନେ କେଉଁଠି-କହିବା କଷ୍ଟକର।

କାନ୍ତ କୁଟୀର
ୟୁନିଟ-୩, ଭୁବନେଶ୍ୱର

• • • •

# ଜନନେତା ଯଦୁମଣି ମଙ୍ଗରାଜ

ରମେଶ ଚନ୍ଦ୍ର ଧଳ

ମଙ୍ଗରାଜ କହିଲେ ଏକସମୟରେ ସମସ୍ତେ ତାଙ୍କୁ ବୁଝୁଥିଲେ। ତାଙ୍କ ପୂରାନାମ ଯଦୁମଣି ମଙ୍ଗରାଜ। ଏହା କହିବା ପ୍ରୟୋଜନ ପଡୁନଥିଲା। ସେ ଏକାଧାରରେ ଜଣେ ଦେଶପ୍ରେମୀ, ମହାନ୍ ସ୍ୱାଧୀନତା ସଂଗ୍ରାମୀ, ଉଚ୍ଚକୋଟୀର ବାଗ୍ମୀ ଓ ଜନନେତା ଥିଲେ। ତାଙ୍କର ଅବଦାନ ପାଇଁ ଜାତୀୟ ଇତିହାସ ପୃଷ୍ଠାରେ ସେ ଜଣେ ଆଦର୍ଶ ପୁରୁଷ ରୂପେ ସ୍ମରଣୀୟ ହୋଇ ରହିବେ।

କେନ୍ଦ୍ରାପଡ଼ାର କରିଲୋପାଟଣା ଗ୍ରାମରେ ଗୋଟିଏ ମଧ୍ୟବିତ୍ତ ପରିବାରରେ ସେ ଜନ୍ମଗ୍ରହଣ କରିଥିଲେ। ତାଙ୍କ ପିତାଙ୍କ ନାମ ଭିକାରୀ ଚରଣ ମଙ୍ଗରାଜ ଯଦୁମଣି ଜଣେ ମେଧାବୀ ଓ ଉଚ୍ଚାଭିଳାଷ ଛାତ୍ର ଥିଲେ। ସ୍କୁଲ ପଢା ଶେଷ ପରେ ସେ ଜଣେ ମୋହରିର ରୂପେ ଜୀବନ କାଟନ୍ତୁ ବୋଲି ତାଙ୍କ ବାପା ଗୃହୁଥିଲେ। ମାତ୍ର ସେ ବାପାଙ୍କ କଥାରେ ଏକମତ ହୋଇପାରି ନଥିଲେ।

ଉଚ୍ଚଶିକ୍ଷା ଲାଗି ସେ କଟକରେ ପ୍ୟାରୀମୋହନ ଏକାଡ଼େମୀରେ ନାମ ଲେଖାଇଥିଲେ। ପ୍ରଥମ ଶ୍ରେଣୀରେ ମାଟ୍ରିକ୍ ପାସ୍‌କରିବା ପରେ ସେତେବେଳର ଓଡ଼ିଶାର ଏକମାତ୍ର ଉଚ୍ଚ ଶିକ୍ଷାନୁଷ୍ଠାନ ରେଭେନ୍‌ସା କଲେଜରୁ କୃତିତ୍ୱର ସହିତ ଆଇ.ଏସ୍‌ସି. ପାସ୍ କରିଥିଲେ। ପରେ ବିଜ୍ଞାନରେ ସ୍ନାତକ ଡ଼ିଗ୍ରୀ ହାସଲ କରିଥିଲେ।

କଲେଜ ଛାତ୍ର ଥିବାବେଳେ ବିଭିନ୍ନ କ୍ଷେତ୍ରରେ ସେ ଛାତ୍ରମାନଙ୍କର ନେତୃତ୍ୱ ନେଉଥିଲେ, ମହାତ୍ମାଗାନ୍ଧୀଙ୍କ ଆହ୍ୱାନରେ ସେ କଲେଜ ତ୍ୟାଗକରି କଂଗ୍ରେସର ଜଣେ ପ୍ରମୁଖ ନେତାରୂପେ ଜାତୀୟ ଆନ୍ଦୋଳନରେ ଯୋଗଦେଇ ଏକାଧିକବାର ଜେଲ୍‌ବରଣ କରି ବହୁ ନର୍ଯାତନା ସହିଥିଲେ। ମାତ୍ର କୌଣସି ପ୍ରକାର କ୍ଲେଶ ବା ଦଣ୍ଡାଦେଶ ତାଙ୍କର ମନୋବଳକୁ ଦବାଇ ପାରିନଥିଲା। ଦେଶବାସୀଙ୍କୁ ନିର୍ଭୀକ, ତଥା ସମାଜରେ ଥିବା ବିଭିନ୍ନ କୁସଂସ୍କାରରୁ ମୁକ୍ତହୋଇ ଜାତିର ସେବା କରିବାକୁ ସେ ଆହ୍ୱାନ କରୁଥିଲେ। ସେ ସମୟରେ ମହିଳାମାନେ ଘରଦାର ଅନ୍ତରାଳରେ ରହୁଥିଲେ। ତାଙ୍କରି ଉଦ୍ୟମରେ ଅନେକ ମହିଳା ଆସି ଖୋଲାଖୋଲିଭାବେ ସଭାସମିତିରେ ଯୋଗଦେଉଥିଲେ। ଜାଲିଆନାୱାଲାବାଗ୍ ପଞ୍ଜାବର ନିର୍ମମ ଗୁଳିକାଣ୍ଡ ତାଙ୍କର ଯୁବ-ପ୍ରାଣରେ ଜାତୀୟତାର ବହ୍ନିକୁ ଅଧିକ ପ୍ରଜ୍ୱଳିତ କରିଥିଲା। ସେ ମାତୃଭୂମିକୁ ବ୍ରିଟିଶ କବଳରୁ ମୁକ୍ତ କରିବାକୁ ରକ୍ତ-ଶପଥ ନେଇଥିଲେ ଏବଂ ଗାଇଉଠିଥିଲେ ପୁଣ୍ୟ ଭାରତର ଜୟଗାନ।

ଓଡ଼ିଶାରେ କଂଗ୍ରେସର ପ୍ରତିଷ୍ଠା ନିମନ୍ତେ ଯେଉଁ ଯୁବକମାନେ ମନପ୍ରାଣ ଦେଇ ପ୍ରଚେଷ୍ଟା ଚଳାଇଥିଲେ ସେମାନଙ୍କ ମଧ୍ୟରେ ଯଦୁମଣି ମଙ୍ଗରାଜ ଥିଲେ ଅନ୍ୟତମ। ଲୋକଙ୍କ ମଧ୍ୟରେ କଂଗ୍ରେସର ବାର୍ତ୍ତା-ପ୍ରଚାର ଓ ସେବାମୂଳକ କାର୍ଯ୍ୟଲାଗି ତାଙ୍କୁ ଅନେକ କେନ୍ଦ୍ରପଡ଼ାର ଗାନ୍ଧୀ ବୋଲି କହୁଥିଲେ।

ସେ ଥିଲେ ଜଣେ ଉଚ୍ଚକୋଟୀର ବାଗ୍ମୀ। ବୁଲେଟ୍ ପରି ତାଙ୍କ ମୁହଁରୁ ଭାଷା ନିର୍ଗତ ହେଉଥିଲା। ଓଡ଼ିଆ, ବଙ୍ଗଳା, ହିନ୍ଦୀ ଓ ଇଂରାଜୀ ଭାଷାରେ ସେ କହିପାରୁଥିଲେ। ତାଙ୍କ ସଭାରେ ଉପସ୍ଥିତ ହେଲେ

ଦେଖିବାକୁ ମିଳୁଥିଲା ମଙ୍ଗରାଜ ବଜ୍ରଗମ୍ଭୀର ଭାବରେ ଭାଷଣ ପ୍ରଦାନ କରିଗ୍ଲିଛନ୍ତି । ଜନ–ସମୁଦ୍ର ଶାନ୍ତ । ମଝିରେ ମଝିରେ ହାସ୍ୟରୋଳ କିମ୍ବା କରତାଳିର ଧ୍ୱନିରେ ସଭାସ୍ଥଳ ମୁଖରିତ । ଭାଷଣରେ ଥିଲା ତାଙ୍କର ଶାସକମାନଙ୍କ ପ୍ରତି କଟୁସମାଲୋଚନା, ବ୍ୟଙ୍ଗବିଦ୍ରୂପ, ପରିହାସ ତାଚ୍ଛଲ୍ୟ । ଜନତା ତାହା ବେଶ୍ ଉପଭୋଗ କରୁଥିଲା । ତାଙ୍କ ଶୁଣିବାଲାଗି ଦୂରଦୂରାନ୍ତରୁ ହଜାର ହଜାର ଲୋକ ଆସି ରୁଣ୍ଡ ହେଉଥିଲେ । ତାଙ୍କ ଭାଷଣ ଅନ୍ୟମାନଙ୍କୁ କଂଗ୍ରେସ ପ୍ରତି ବିଶେଷ ଆକୃଷ୍ଟ କରିପାରୁଥିଲା । କେବଳ ଦେଶବାସୀ ନୁହଁନ୍ତି ବ୍ରିଟିଶ୍ ଉଚ୍ଚକର୍ମଗ୍ଭରୀମାନେ ମଧ୍ୟ ତାଙ୍କ ଭାଷଣର ପ୍ରଶଂସା କରୁଥିଲେ ।

ଅନ୍ୟତମ ଅସହଯୋଗୀ ରୂପେ ସେ ପ୍ରଥମେ ୧୯୨୧ ରେ କାରାବରଣ ତଥା ଅର୍ଥଦଣ୍ଡରେ ଦଣ୍ଡିତ ହୋଇଥିଲେ । ତା ପରେ ସେ ଏକାଧିକବାର କାରାବରଣ କରିଥିଲେ । ବିହାରର ହଜାରିବାଗ୍ ଜେଲ୍‌ରେ ଭାରତର ପ୍ରଥମ ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦ ଓ ଅନ୍ୟାନ୍ୟ ସଂଗ୍ରାମୀମାନଙ୍କ ସହିତ ସେ କିଛିଦିନ କରାରୁଦ୍ଧ ଥିଲେ । ସେ ସମୟର ଜେଲ୍‌ଜୀବନର ଅନୁଭୂତି ବର୍ଣ୍ଣନା କଲାବେଳେ ତାଙ୍କ ଚକ୍ଷୁ ଅଶ୍ରୁ ସଜଳ ହୋଇ ଉଠୁଥିଲା ।

ସେ ବିଭିନ୍ନ ସମୟରେ କେନ୍ଦ୍ରାପଡ଼ା ଲୋକାଲ୍ ବୋର୍ଡ଼ର ସଭାପତି ମ୍ୟୁନିସ୍‌ପାଲିଟିର କାଉନସିଲ୍‌ର, ପାରଳା ମହାରାଜଙ୍କ ମନ୍ତ୍ରିମଣ୍ଡଳରେ ଅର୍ଥ ବିଭାଗର ସେକ୍ରେଟାରୀ ଓ ବିଧାନସଭାରେ ଉପବାଚସ୍ପତି ରୂପେ କାର୍ଯ୍ୟ କରିଥିଲେ । ଜଣେ ଉଚ୍ଚକୋଟୀର ବୈଧାନିକ ରୂପେ ଗୃହ ଭିତରେ ଓ ବାହାରେ ସେ ସମସ୍ତଙ୍କର ଶ୍ରଦ୍ଧାଭାଜନ ହୋଇପାରିଥିଲେ । ସେ କିଛିଦିନ ମଧ୍ୟ କେନ୍ଦ୍ର ରେଳବାଇ ବୋର୍ଡ଼ର ସଦସ୍ୟ ଥିଲେ । ନୀତିଗତ ଅସନ୍ତୋଷ ଯୋଗୁ ସେ ୧୯୩୬ରେ ଜାତୀୟ କଂଗ୍ରେସ ତ୍ୟାଗ କରିଥିଲେ । ଅବଶ୍ୟ ପରେ ପୁଣି କଂଗ୍ରେସରେ ଯୋଗଦେଇଥିଲେ ।

ନେତାଜୀ ସୁଭାଷ ବୋଷ ତାଙ୍କର ସତୀର୍ଥ ଥିଲେ । ସେ କଂଗ୍ରେସ ତ୍ୟାଗ କରିବା ପରେ ପ୍ରଥମେ ଯଦୁମଣି ତାଙ୍କ ପ୍ରିୟ ବନ୍ଧୁ ସୁଭାଷଙ୍କୁ ନିମନ୍ତ୍ରଣ କରି କଟକ ସହରରେ ଭବ୍ୟ ସମ୍ବର୍ଦ୍ଧନା ଦେଇଥିଲେ । ଏହି ଅବସରରେ ଯେଉଁ ସଭା ହୋଇଥିଲା ସେଥିରେ ସେ ସଭାପତିତ୍ୱ କରିଥିଲେ ।

ମହାଜାତୀୟତାର ଦ୍ୱାହିଦେଇ ସେ ଉତ୍କଳର ସ୍ୱାର୍ଥକୁ କେବେ ବଳିଦେଇ ନଥିଲେ । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଉଦ୍ଦେଶ୍ୟରେ କୁଳବୃଦ୍ଧ ମଧୁସୂଦନଙ୍କ ନେତୃତ୍ୱରେ ପରିଗ୍ଭଳିତ ଉତ୍କଳ ସମ୍ମିଳନୀର ସେ ଜଣେ ସକ୍ରିୟ ସଭ୍ୟ ଥିଲେ । ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ଲାଗି ସେ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ପଣ୍ଡିତ ନୀଳକଣ୍ଠ ଦାଶ୍ ଏବଂ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ସହିତ କାନ୍ଧକୁ କାନ୍ଧ ମିଳାଇ କାର୍ଯ୍ୟ କରିଥିଲେ । ଏଥିପାଇଁ ଅଣଓଡ଼ିଆଙ୍କ ଟେକାମାଡ଼ରେ ସେ କେବେ କେବେ ରକ୍ତସ୍ନାତ ହୋଇଥିଲେ, ମାତ୍ର ସେଥିଲାଗି ନିଜ କର୍ତ୍ତବ୍ୟରୁ କେବେ ଅପସରି ଯାଇନଥିଲେ ।

ଷଢ଼େଇକଳା ଖରସୁଆଁର ବିହାରରେ ମିଶ୍ରଣବେଳେ ଏହା ବିରୁଦ୍ଧରେ ଯେଉଁ ଜନଆନ୍ଦୋଳନ ହୋଇଥିଲା । ସେଥିରେ କଟକର ସୁନୀଲ ଦେ ଏବଂ ପୁରୀର ବେଙ୍ଗପାଣିଆ ପୁଲିସ ବୁଲେଟ୍‌ରେ ମୃତ୍ୟୁବରଣ କରି ଶହୀଦ ହୋଇଥିଲେ । ଏହା ନିଶ୍ଚିତଭାବେ ଥିଲା । ଐତିହାସିକ ଘଟଣା ଏହି ଆନ୍ଦୋଳନର ଯଦୁମଣି ଯେ ମହାନାୟକ ଥିଲେ । ଏହା କହିଲେ ଅତ୍ୟୁକ୍ତି ହେବନାହିଁ । ବୃଦ୍ଧାବସ୍ଥାରେ ଯୁବକର ଉନ୍ମାଦନା ନେଇ ସେ ସମ୍ବୋଧନ କରୁଥିଲେ ଅଗଣିତ ସଂଗ୍ରାମୀ ଜନତାଙ୍କୁ କି ଜ୍ୱାଳାମୟୀ ଭାଷଣ । ତାଙ୍କରି ଆହ୍ୱାନ ଆବାଳବୃଦ୍ଧବନିତା ପ୍ରାଣରେ ସୃଷ୍ଟି କରୁଥିଲା ଦେଶପ୍ରେମ, ସ୍ପନ୍ଦନ, ଉନ୍ମାଦନା, ଆଲୋଡ଼ନ ।

ଓଡ଼ିଆ ଜାତି, ତାର ଭାଷା ସାହିତ୍ୟ ସଂସ୍କୃତିକୁ ତା'ର ସାହିତ୍ୟ କେହି ଅପମାନିତ କରିବାକୁ ଦୁଃସାହାସ କରୁଥିଲେ ସେ ତା'ର ଘୋର ପ୍ରତିବାଦ କରୁଥିଲେ । ତାଙ୍କରି ମୁହଁରୁ ଶୁଣିଛି କଲିକତା ମହାନଗରୀର କୌଣସି ପ୍ରାନ୍ତରେ ଆପଣାର ହୀନମନ୍ୟତା ହେତୁ କେହି ଓଡ଼ିଆ ଲୋକଙ୍କୁ ଆଘାତ କଲେ ବା ଅପମାନିତ କଲେ ସେ ଘଟଣା ସ୍ଥଳରେ ପହଞ୍ଚି

ବୀରଦର୍ପରେ ସେମାନଙ୍କୁ ସତର୍କବାଣୀ ଶୁଣାଇ ଦେଉଥିଲେ । ଅନ୍ତରରେ ସାମାନ୍ୟତମ ଶଙ୍କା ନଥିଲା । କି ଦୁର୍ଦ୍ଦାନ୍ତ !

ଉତ୍କଳର ପାଇକମାନଙ୍କର ଗୌରବମୟ ଭୂମିକା ନିମନ୍ତେ ସେ ଗର୍ବ କରୁଥିଲେ । ସେ କହୁଥିଲେ ଗୋଟାଏ ବୀରଜାତି ତା'ର ଅତୀତକୁ ଭୁଲିଯିବା ଉଚିତ ନୁହେଁ । ସେଥିଲାଗି ସେ ଖଣ୍ଡାୟତ କ୍ଷତ୍ରିୟମାନଙ୍କୁ ସଂଗଠିତ କରିଥିଲେ । ସେମାନଙ୍କର ମୁଖପତ୍ର ରୂପେ "ନାୟକ" ନାମକ ଏକ କାଗଜ ମଧ୍ୟ ପ୍ରକାଶ କରିଥିଲେ । ପରିବର୍ତ୍ତିତ ପରିସ୍ଥିତିରେ ଆତ୍ମରକ୍ଷା ଓ ସ୍ୱାସ୍ଥ୍ୟରକ୍ଷା ଲାଗି ପୁରାତନ ସମୟର ସମର କୌଶଳ, କ୍ରୀଡ଼ାକସରତ ଓ ଆଖଡ଼ା ଘରେ ଦଣ୍ଡବୈଠକ କରିବା ଉପରେ ସେ ଗୁରୁତ୍ୱ ଆରୋପ କରୁଥିଲେ । ଅନେକ ଏହାର ସମାଲୋଚନା କରୁଥିଲେ । ମାତ୍ର ଏଥିଲାଗି ସେ କର୍ଣ୍ଣପାତ ନକରି କହୁଥିଲେ ସିଂହକୁ ସିଂହ ପରି ବଞ୍ଚିବାକୁ ଦିଅ, ତାଙ୍କର ଦାୟାଦମାନେ ସ୍ୱଧର୍ମ ରକ୍ଷାକରନ୍ତୁ । ସେମାନେ ସିଂହ ନ ହୋଇ ଯଦି ମୂଷିକ ପରି ଆଚରଣ କରିବେ, ତେବେ ତାହା ହେବ ଜାତୀୟ ଅପମାନ । କାରଣ ସିଂହ ଯଦି ସ୍ୱଧର୍ମରେ ଅବହେଳା ପ୍ରଦର୍ଶନ କରେ, ତେବେ ଜୀବଜଗତର ମଙ୍ଗଳ ହେବନାହିଁ । ଏଥିଲାଗି ତାଙ୍କୁ କେତେକ ସମାଲୋଚନା କରିଥିଲେ । ସେ କେତେଦୂର ଠିକ୍ ଥିଲେ ଭବିଷ୍ୟତ କହିବ ।

ଏହି ମହାନ୍ ନେତାଙ୍କର ଜୀବନ ପ୍ରଦୀପର ଉଜ୍ଜ୍ୱଳ ଶିଖା ଧୀରେ ଧୀରେ ଅସ୍ତମିତ ହୋଇଆସୁଥାଏ । ମୁଁ

ସେତେବେଳେ ଓଡ଼ିଶା ଯୁବକଂଗ୍ରେସର କର୍ମକର୍ତ୍ତା ଓ ଜଣେ ସାଂବାଦିକ । ମୋତେ ମୋର ମଉସା ଓଡ଼ିଶାର ଅନ୍ୟତମ ସୁପରିଚିତ କମ୍ୟୁନିଷ୍ଟ ନେତା ସ୍ୱର୍ଗତ ବିଶ୍ୱନାଥ ପଣ୍ଡାୟତ ଡ଼ାକି କହିଲେ ତୁ ତାଙ୍କୁ ଜାଣୁ ଯାଇ ତାଙ୍କୁ ସାକ୍ଷାତ କରି ତାଙ୍କ ଜୀବନୀ ଲିପିବଦ୍ଧ କରି ଆଣ । ସେତେବେଳେ ସେ ପ୍ରକାଶ କରୁଥିବା ପତ୍ରିକାରେ ତାହା ଦେବାଲାଗି ଚାହିଁଥିଲେ । ସେ ତାଙ୍କୁ ବହୁ ସମ୍ମାନ କରୁଥିଲେ । ସେ କହୁଥିଲେ, ସେ ଉତ୍କଳର ବରପୁତ୍ର ତାଙ୍କପରି ବାଗ୍ମୀ, ଦେଶପ୍ରେମୀ ଜନନେତା ଆଉ ନାହାନ୍ତି । ସେ କୌଣସି ଦଳର କିମ୍ବା ଗୋଷ୍ଠୀର ହୋଇନପାରନ୍ତି । ସେ ଏ ଜାତିର ଗୌରବ । ତାଙ୍କ ଜୀବନର ଶେଷ ପ୍ରହରରେ ତାଙ୍କୁ ସାକ୍ଷାତ କରିଛି । ସେତେବେଳେ ମଧ୍ୟ ସୀମା ଆନ୍ଦୋଳନରେ ଆମେ ସବୁ ଯେତେ ଛାତ୍ରନେତା, ଯୁବକ ଭାଗ ନେଇଥିଲୁ ସେମାନଙ୍କ ସଂପର୍କରେ ସେ ବିଶେଷଭାବେ ଜାଣିବାକୁ ଚାହୁଁଥିଲେ । ନିଃସ୍ୱାର୍ଥପର ଭାବେ ଦେଶସେବା କରିଯିବାଲାଗି ସେ ଯୁବକମାନଙ୍କୁ ଆହ୍ୱାନ ଦେଉଥିଲେ । ସେମାନଙ୍କ ଉପରେ ତାଙ୍କର ଅଗାଧ ବିଶ୍ୱାସ ଥିଲା । ଆଜକୁ ଶହେବର୍ଷ ତଳେ ପହିଲା ଜାନୁଆରୀ ୧୮୯୪ ମସିହାରେ ଯଦୁମଣି ମଙ୍ଗରାଜ ଜନ୍ମଗ୍ରହଣ କରି ୧୯୬୪ ମସିହା ଅପ୍ରେଲ୍ ୨ ତାରିଖ ରାତି ୨ଟାବେଳେ କଟକ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ ହାସ୍‌ପାତାଳରେ କର୍କଟ ରୋଗରେ ମୃତ୍ୟୁବରଣ କରିଥିଲେ । ଏହି ମହାନ୍ ସଂଗ୍ରାମୀ ଉତ୍କଳର ବରପୁତ୍ରଙ୍କୁ ଓଡ଼ିଆଜାତି କେବେ ଭୁଲିପାରିବ ନାହିଁ । ଆଜି ବିଭିନ୍ନ ସ୍ଥାନରେ ଶ୍ରଦ୍ଧା ଓ ସମ୍ମାନର ସହିତ ଜନସାଧାରଣ ତାଙ୍କ ପ୍ରିୟ ନେତାଙ୍କର ଜନ୍ମ ଶତବାର୍ଷିକୀ ଜୟନ୍ତୀ ପାଳନ କରୁଅଛନ୍ତି । ଏହି ଅବସରରେ ମୁଁ ତାଙ୍କୁ ମୋର ବିନମ୍ର ପ୍ରଣତି ଜଣାଉଛି ।

**ଆରୋହୀ**
**ତା୧.୧.୧୯୯୪**

• • • •

# ନିର୍ଭୀକ ନେତା ଯଦୁମଣି ମଂଗରାଜ

ଅଧ୍ୟାପକ ଭଗବାନ ଜେନା

୧୯୫୨ର ସାଧାରଣ ନିର୍ବାଚନ। ଆମେ ସେତେବେଳେ ଛୋଟପିଲା। ସୁନାମଧନ୍ୟ ଯଦୁମଣି ମଂଗରାଜ କେନ୍ଦ୍ରାପଡାରୁ ସ୍ୱାଧୀନ ପ୍ରାର୍ଥୀ ହୋଇଥାନ୍ତି। ତାଙ୍କର ମୁଖ୍ୟ ପ୍ରତିଦ୍ୱନ୍ଦ୍ୱୀ ସ୍ୱର୍ଗତ ଦୀନବଂଧୁ ସାହୁ କଂଗ୍ରେସ ପ୍ରାର୍ଥୀ। ଆମ ଗାଁ ଅଞ୍ଚଳରେ ମଂଗରାଜଙ୍କ ପାଇଁ ପ୍ରବଳ ଉତ୍ସାହ। ପିଲାଏ ଗୀତ ବୋଲୁଥାନ୍ତି- ନିର୍ଭୀକ ନେତା, ସୁବିଖ୍ୟାତ ବକ୍ତା, ମଂଗରାଜଙ୍କୁ ଭୋଟ ଦିଅ, ମଂଗରାଜଙ୍କୁ ଭୋଟ ଦିଅ।

ସେ ନିର୍ବାଚନରେ ମଂଗରାଜବାବୁ ହାରିଗଲେ ଏବଂ ନିର୍ବାଚନ ମକଦ୍ଦମା କଲେ। ଦୀନବଂଧୁବାବୁ କେସ୍‌ରେ ହାରିଗଲେ ଏବଂ ଇସ୍ତଫା ଦେଲେ। ପରନିର୍ବାଚନ ପ୍ରଚାରରେ ମଂଗରାଜବାବୁ ପ୍ରଚ୍ଚାରପତ୍ରରେ ଲେଖିଲେ..... 'ମୁଁ ଓଡ଼ିଶାର ଆଇନ୍ ମନ୍ତ୍ରୀଙ୍କୁ ଆଇନ୍ ପଢାଇଲି'। ପରବର୍ତ୍ତୀକାଳରେ ମଂଗରାଜବାବୁ ଆମ ଗାଁ ଦାଣ୍ଡଦେଇ ଗଲାବେଳେ ନମସ୍କାର କଲେ ପିଠି ଆଉଁଷି ହସିଦେଇ ଭଲମନ୍ଦ ପଚ୍ଚାରନ୍ତି। ତାଙ୍କର ମୁଖମଣ୍ଡଳ ସର୍ବଦା ହାସ୍ୟମୟ ଅଥଚ ଗମ୍ଭୀର ଥିଲା। ସେ ସେତେବେଳେ ଖଦଡ ଲୁଗା ସହିତ ସବୁଜା ଡୋରିଆ ପଂଜାବି ପିନ୍ଧୁଥିଲେ। ହାତରେ ବଙ୍କା ବାଡି। ଚେହେରା ଖୁବ୍ ସୁନ୍ଦର କିଂତୁ ସେହି ନରମ ସୁନ୍ଦର ଚେହେରା ତଳେ ଗୋଟିଏ ନିର୍ଭୀକ ପୁରୁଷତ୍ୱ ଥିବାର ସମସ୍ତେ ଜାଣିଥିଲେ।

ପରବର୍ତ୍ତୀ କାଳରେ କଟକ ରାଜାବଗିଚ୍ଚ ଛାତ୍ରାବାସ ବିଷୟ ନେଇ ତାଙ୍କ ସହ ଦେଖାହୋଇଛି। ଥରେ ମୁଁ କହିଲି-ଆପଣଙ୍କ ଜୀବନରେ ଇତିହାସ ଲେଖନ୍ତୁ, ଆମ ପାଇଁ ଖୁବ୍ ଦରକାରୀ। ହଠାତ୍ ହସିଦେଇ କହିଲେ-ଆମେ ସବୁତ ବୁଢା ହେଲୁ। ତୁମେ ସିନା ଲେଖନ୍ତୁ !

କେନ୍ଦ୍ରାପଡାରେ ଥରେ ବିଶ୍ୱ ଜାତିସଂଘ ଦିବସ ପାଳିତ ହେଉଥାଏ। ମ୍ୟୁନିସିପାଲିଟି ହତାରେ ବିରାଟ ସାଧାରଣସଭା। ମୁଖ୍ୟବକ୍ତା ମଂଗରାଜବାବୁଙ୍କ ପାଳି ପଡିଲା। ମାଇକ୍‌ଟା ତଳକୁ ରଖିଦେଲେ, କହିଲେ ଦରକାର ନାହିଁ। ତା'ପରେ ଆରମ୍ଭ କଲେ- ଇଉ ନୋ ଆଇ ଅଲ୍-ଅର୍ଥାତ୍ ଦେଶମାନେ ନିଜର ବ୍ୟକ୍ତିତ୍ୱ ଓ ସ୍ୱାତନ୍ତ୍ର୍ୟ ପ୍ରତିପାଦିତ କରିବାକୁ ବିଶ୍ୱ ଜାତିସଂଘର ପ୍ରତିଷ୍ଠା କଥା ପଦକରେ ବିପୁଳ କରତାଳି ଧ୍ୱନିରେ ସଭାସ୍ଥଳ ପ୍ରକଂପିତ ହେଲା। ଯେଉଁମାନେ ସୀମା ଆନ୍ଦୋଳନବେଳେ କଟକ ମ୍ୟୁନିସିପାଲିଟି ପଡିଆରେ ମଂଗରାଜବାବୁଙ୍କ ଜ୍ୱାଳାମୟୀ ଭାଷଣ ଶୁଣିଛନ୍ତି, ସେମାନେ କହନ୍ତି, ଏକ ବିଶାଳ ଜନସମୁଦ୍ରକୁ ବାନ୍ଧିରଖିବାର ବାଗ୍ମିତା ତାଙ୍କ ନିକଟରେ ଥିଲା।

ମଂଗରାଜବାବୁଙ୍କ ପ୍ରତିଭା ବହୁମୁଖୀ। ସେ ସ୍ୱାଧୀନତା ଆନ୍ଦୋଳନରେ ଅନ୍ୟତମ ବିଶିଷ୍ଟ ନେତା ଥିଲେ। ତାଙ୍କର ଦୋଷ ହେଲା ତାଙ୍କର ସ୍ପଷ୍ଟବାଦୀତା ସେଥିପାଇଁ ସେ କୌଣସି ନିର୍ଦ୍ଦିଷ୍ଟ ରାଜନୈତିକ ଦଳର ଗଣ୍ଡି ଭିତରେ ଆବଦ୍ଧ ହୋଇ ବେଶୀଦିନ ରହିପାରୁନଥିଲେ। ଏହି କାରଣରୁ ସେ ପରବର୍ତ୍ତୀକାଳରେ ମନ୍ତ୍ରୀ ହୋଇପାରିଲେ ନାହିଁ। କିନ୍ତୁ ସେ ଅବିସଂବାଦିତ ନେତା ରୂପେ ସମସ୍ତଙ୍କ ନିକଟରେ ପରିଚିତ ଥିଲେ। ଅନୁନ୍ନତ ଓଡ଼ିଶାର ବିକାଶ ତାଙ୍କର ମୂଳ ଲକ୍ଷ୍ୟ ଥିଲା। ସେଥିପାଇଁ ସେ ପାରଳା ମହାରାଜାଙ୍କ ମନ୍ତ୍ରିମଣ୍ଡଳରେ ଯୋଗଦେଇଥିଲେ। ସେ ନେତାଜୀ ସୁଭାଷ ବୋଷଙ୍କ ଅନ୍ୟତମ ସହଯୋଗୀ ଥିଲେ। ଆଜାଦହିନ୍ଦ୍ ଫୌଜକୁ ଆର୍ଥିକ ସାହାଯ୍ୟ ପାଇଁ ସେ ପାରଳା ମହାରାଜାଙ୍କ ରେଂଗୁନ ବ୍ୟାଙ୍କରେ ଥିବା ପାଣ୍ଠି ଦେବାପାଇଁ ତାଙ୍କୁ ପ୍ରଭାବିତ କରିଥିଲେ। ତାଙ୍କର

ସହଯୋଗ ସ୍ୱର୍ଗତ ଦିବାକର ପଟ୍ଟନାୟକ ଏବଂ ଲକ୍ଷ୍ମୀନାରାୟଣ ପଟ୍ଟନାୟକଙ୍କ ମାଧ୍ୟମରେ ସେ ଏହା କରାଉଥିଲେ ।

ଓଡ଼ିଶାର ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ଆନ୍ଦୋଳନରେ ମଂଗରାଜବାବୁ ପଣ୍ଡିତ ଗୋପବଂଧୁ, ପଣ୍ଡିତ ଗୋଦାବରୀଶଙ୍କ ସହଯୋଗୀ ଥିଲେ । ସେ ସେମାନଙ୍କ ସହ ବିଭିନ୍ନ ଅଂଚଳ ଭ୍ରମଣ କରି ସଂଗଠନ ଦୃଢ କରିବାପାଇଁ ଲଗାତର ଉଦ୍ୟମ କରିଥିଲେ । ପଣ୍ଡିତ ନୀଳକଂଠ, ପଣ୍ଡିତ ଗୋଦାବରୀଶଙ୍କ ସହ ମଂଗରାଜବାବୁଙ୍କ ଘନିଷ୍ଠ ସଂପର୍କ ଥିଲା । ଓଡ଼ିଶାର ଜାତୀୟ ଜୀବନରେ ସେ ସବୁ କ୍ଷେତ୍ରରେ ପ୍ରମୁଖ ଭୂମିକା ଗ୍ରହଣ କରୁଥିଲେ ।

ନିଜର ନିର୍ଭୀକତା ଏବଂ ସ୍ୱାଧୀଚେତା ଗୁଣ ପାଇଁ ଜୀବନରେ ସେ ଅନେକ ଅଭାବ ଅସୁବିଧାର ସମ୍ମୁଖୀନ ହୋଇଥିଲେ ଶେଷ ଜୀବନରେ ସେ ଓଡ଼ିଶା ବିଧାନସଭାର ଉପବାଚସ୍ପତି ରୂପେ ନିଜର ଦକ୍ଷତା ପ୍ରତିପାଦିତ କରିଥିଲେ । ମଂଗରାଜବାବୁ ଜାଣିଥିଲେ ଯେ କୃଷକ ସମାଜର ସାମୂହିକ ବିକାଶ ନହେଲେ ଓଡ଼ିଶାର ବିକାଶ ସମ୍ଭବପର ହେବନାହିଁ । ସେଥିପାଇଁ ସେ କୃଷକ ସମାଜକୁ ଏକାଠି କରିବାକୁ ଆପ୍ରାଣ ଉଦ୍ୟମ କରିଥିଲେ । କିନ୍ତୁ ତାଙ୍କ ମନରେ କ୍ଷୁଦ୍ର ଜାତିଆଣଭାବ ନଥିଲା । "ନାୟକ" ପତ୍ରିକା ପ୍ରକାଶନରେ ମୁଖ୍ୟ ଭୂମିକା ଗ୍ରହଣ କରି ଓଡ଼ିଶାର କୃଷିଭିତ୍ତିକ ଗ୍ରାମ୍ୟ ସଂସ୍କୃତିକୁ ଉଜ୍ଜୀବିତ କରିବାକୁ ଉଦ୍ୟମ କରିଥିଲେ । କଟକ ରାଜାବଗିଚ୍ଚାରେ ଥିବା ଖଣ୍ଡାୟତ କ୍ଷତ୍ରିୟ ଛାତ୍ରାବାସର ଗ୍ରାମାଞ୍ଚଳର ଛାତ୍ରମାନଙ୍କ ଉଚ୍ଚଶିକ୍ଷା ପ୍ରସାର କ୍ଷେତ୍ରରେ ବିରାଟ ଅବଦାନ ରହିଆସିଛି । ଏହି ଛାତ୍ରାବାସ ପ୍ରତିଷ୍ଠାରେ ମଂଗରାଜବାବୁ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ । ଓଡ଼ିଶା କୃଷକ ଆନ୍ଦୋଳନର ଅନ୍ୟତମ ବିଶିଷ୍ଟ ନେତା ସାଧୁଚରଣ ମହାନ୍ତିଙ୍କ ସହ ମଂଗରାଜବାବୁଙ୍କ ଘନିଷ୍ଠ ସଂପର୍କ ଥିଲା । ରାଜନୈତିକ ସଚେତନତା ଏବଂ ସ୍ୱାଧୀନତା ସଂଗ୍ରାମର ଆବଶ୍ୟକତା କ୍ଷେତ୍ରରେ କେନ୍ଦ୍ରାପଡା ଅଞ୍ଚଳରେ ଅବଦାନ ନଗଣ୍ୟ ବୋଲି ଅଭିଯୋଗ ଶୁଣିବାକୁ ମିଳେ । କିନ୍ତୁ ଯେଉଁ କେତେକ ପ୍ରଖ୍ୟାତ ନେତା ଏକ୍ଷେତ୍ରରେ ମୁଖ୍ୟ ଭୂମିକା ଗ୍ରହଣ କରିଛନ୍ତି, ସେମାନଙ୍କ ମଧ୍ୟରେ ସ୍ୱର୍ଗତ ଯଦୁମଣି ମଂଗରାଜଙ୍କ ଭୂମିକା ଅଗ୍ରଗଣ୍ୟ ଏଥିରେ ସନ୍ଦେହ ନାହିଁ । ସେ ଓଡ଼ିଶା, ବିଶେଷତଃ କେନ୍ଦ୍ରାପଡ଼ାରେ ଚିରସ୍ମରଣୀୟ ହୋଇ ରହିବେ । ତାଙ୍କର ସ୍ମୃତିରକ୍ଷା ପାଇଁ କେନ୍ଦ୍ରାପଡା ସହରରେ ତିନିମୁହାଣି ଛକରେ ଏକ ଆବକ୍ଷ ପ୍ରତିମୂର୍ତ୍ତି ପ୍ରତିଷ୍ଠିତ ହୋଇଛି । ସେ ଅଂଚଳରେ ତାଙ୍କ ନାମରେ ଏକ ପାଠାଗାର ପ୍ରତିଷ୍ଠିତ ହେଲେ ତାଙ୍କର ସ୍ମୃତିରକ୍ଷା ଦିଗରେ ଆଉ ଏକ ସଫଳ ପଦକ୍ଷେପ ହେବ ବୋଲି ଆଶା କରାଯାଏ । କେନ୍ଦ୍ରାପଡ଼ା ପୌରପାଳିକା ଏ ଦିଗରେ ପଦକ୍ଷେପ ଗ୍ରହଣ କରିବାକୁ ସମସ୍ତେ ଆଶା କରନ୍ତି ।

• • • •

> ମିଥ୍ୟାଜ୍ଞାନକୁ ଆମ୍ଭେ ଡ଼ରୁ । ଯାହା ଆମକୁ ସତ୍ୟରୁ ଦୂରରେ ରଖି ଦୂର କରିଦିଏ ତାହାହିଁ ମିଥ୍ୟା ।
>
> —ବାପୁଜୀ

# ଶତାବ୍ଦୀର ସୂର୍ଯ୍ୟ

ସୁରେନ୍ଦ୍ର ଦାସ

ଯଦୁମଣି ହେ,
ଏ ଜାତିର ମଂଗରାଜ
ଶତାବ୍ଦୀର ସୂର୍ଯ୍ୟଶିଖା
ମଉଳି ଯାଇନି
ଶତାବ୍ଦୀର ଆଗମନ ପାଇଁ
ତମ ଶତବାର୍ଷିକୀ
ଜନ୍ମ 'ନକ୍ଷତ୍ର'ରେ
ଏ ଜାତିର ପ୍ରଣାମ ଘେନ ହେ !

ଦିଅ ଶୁଭାଶିଷ
ଓଡ଼ିଆର ଓଡ଼ିଆତ୍ୱ
ଦିଗ ଦିଗ ଦିଗ୍‌ବିଜୟ କରୁ
ଚିନ୍ତା ଆଉ
ଚେତନାରେ ଭରିଦିଅ
ନିର୍ଭୀକ ସାହସ
ଧୈର୍ଯ୍ୟ କର୍ମନିପୁଣତା
ଦେଶ ପାଇଁ ଜାତି ପାଇଁ
ଗର୍ବ ଓ ଗୌରବ

ହେ ଶତାବ୍ଦୀର ସୂର୍ଯ୍ୟ
ସୂର୍ଯ୍ୟଶିଖା ସମ ତମ
ସୌର୍ଯ୍ୟ, ଓ ସାହାସ
ଭରିଯାଉ ପ୍ରତିଟି ପ୍ରାଣରେ–
ନୂଆବର୍ଷ ନୂଆ ଶତାବ୍ଦୀରେ
ଏ ଓଡ଼ିଆ ଦେଖୁ ତା'ର
ସ୍ୱଚ୍ଛ ପ୍ରତିବିମ୍ବ
ପୃଥିବୀର ପ୍ରତିଟି କୋଣରେ

• • • • •

# ବିପ୍ଳବୀ ମଙ୍ଗରାଜ

ରବୀନ୍ଦ୍ର ନାଥ ପଣ୍ଡା

ଯେତେବେଳେ ଭାରତବର୍ଷ ପରାଧୀନ ଠିକ୍ ସେତିକିବେଳେ, ବହୁ ବ୍ୟକ୍ତି ନିଜ ଜୀବନର ସମସ୍ତ ସୁଖସମ୍ଭୋଗକୁ ତ୍ୟାଗକରି, ଇଂରେଜ କବଳରୁ, ନିଜର ମାତୃଭୂମିକୁ ସ୍ୱାଧୀନ କରିବା ପାଇଁ, ଆତ୍ମୋତ୍ସର୍ଗ କରିଥିଲେ । ଯେଉଁ ମହାମାନ୍ୟ, ମହାପୁରୁଷମାନେ ସଂପ୍ରତି ସ୍ୱାଧୀନତାର ମୂଲ୍ୟ ଉପଲବ୍ଧି କରି, ନିଜର ଶଙ୍କାକୁଳ ଜୀବନକୁ ତୁଚ୍ଛ ମନେକରି ସ୍ୱାଧୀନତା ମନ୍ତ୍ରରେ ଦୀକ୍ଷିତ ହୋଇଥିଲେ, ସେହି ମହାମାନ୍ୟ, ମହାପୁରୁଷଙ୍କ ଭିତରୁ, ସ୍ୱର୍ଗତ ଯଦୁମଣି ମଙ୍ଗରାଜ ଥିଲେ ଅନ୍ୟତମ । ଆଉ ସେହି ମହାମାନ୍ୟଙ୍କ ପ୍ରତିଭା ସମ୍ପର୍କରେ, ସମ୍ୟକ୍ ସୂଚନା ଦେବା ନିମନ୍ତେ ଆଜିର ଏ ପ୍ରବନ୍ଧ ।

ବାଲ୍ୟ ଅବସ୍ଥାରୁ, ସେ ଥିଲେ, ସ୍ପଷ୍ଟବାଦୀ ଆଉ ନିର୍ଭୀକ । ବାଲ୍ୟଶିକ୍ଷା ସମୟରେ, ସେ ପିତାଙ୍କଠାରୁ ନିର୍ଦ୍ଦେଶ ପାଇଲେ, ଆଉ ସ୍କୁଲକୁ ଯିବାର କୌଣସି ଆବଶ୍ୟକତା ନାହିଁ । ଜେଜେଙ୍କଠାରୁ ଶୁଣିଲେ ଯେ ଭାଗବତ ପୋଥିରୁ ଅଧ୍ୟାୟେ, ଆଉ ରାମାୟଣରୁ କାଣ୍ଡେ ବୋଲିଜାଣିଲେ ଯଥେଷ୍ଟ । ଆଉ ଗୋଟେ ପାଠପଢ଼ା କ'ଣ ? ଏ ପ୍ରକାର ନିଷ୍ପତ୍ତି ତଥା ଆଉ ସ୍କୁଲକୁ ନ ଯିବାର ନିର୍ଦ୍ଦେଶ, ମଙ୍ଗରାଜଙ୍କ ମନରେ ଦାରୁଣ ଆଘାତ ଦେଲା । ଚପଳମତି ବାଳକ ମଙ୍ଗରାଜ, ଗୁରୁଜନମାନଙ୍କ ପ୍ରସ୍ତାବକୁ ଠୋକ୍‌ଠୋକ୍ ଭାବେ ପ୍ରତ୍ୟାଖ୍ୟାନ କରି କହିଲେ- ଉଚ୍ଚଶିକ୍ଷା ତାଙ୍କର ଅଭିଳାଷ । ସେଥିରୁ ତାଙ୍କୁ କ୍ଷାନ୍ତ କଲେ ସେ ଗୃହତ୍ୟାଗ କରିବାକୁ ବାଧ୍ୟ ହେବେ । ତାଙ୍କର କୌଣସି କଥା ପ୍ରତି ଗୁରୁଜନମାନେ କର୍ଣ୍ଣପାତ କଲେନାହିଁ । ପରୋକ୍ଷରେ କହିଲେ, ଗୃହତ୍ୟାଗ କରି କୁଆଡ଼େ ଯିବ ?

ସତକୁସତ, ନିର୍ଭୀକ ଯଦୁମଣି, ତାଙ୍କ ନିଷ୍ପତ୍ତିରେ ଅଟଳ ରହି, ଫେବ୍ରୁଆରୀର ନିଶାର୍ଦ୍ଧ ରାତ୍ରରେ, ପରିବାରର ସମସ୍ତଙ୍କ ଅଗୋଚରରେ ଗୃହତ୍ୟାଗ କଲେ । ଭୟଭ୍ରାନ୍ତି ତ୍ୟାଗ କରି, ବାଳକ ଯଦୁମଣି, ଉଦ୍ଦେଶ୍ୟହୀନ ଭାବରେ ଚାଲିଥାନ୍ତି । ମନରେ କେବଳ ଏକମାତ୍ର ଚିନ୍ତା, କିପରି ଉଚ୍ଚଶିକ୍ଷା ପାଇବେ । କିନ୍ତୁ ଏତେ ରାତିରେ ଯିବେ କିପରି ? ଆଗରେ ଭରାନଈ । ଡଙ୍ଗା ଅଛି କିନ୍ତୁ ନାଉରୀ ନାହିଁ । ମହା ଦ୍ୱନ୍ଦ୍ୱରେ ପଡ଼ି ନିରୂପାୟ ହୋଇ ଏକ ନଳିତା କିଆରିରେ ନିଜକୁ ଆତ୍ମଗୋପନ କରି, ଆଗାମୀ ସୂର୍ଯ୍ୟଙ୍କୁ ଅପେକ୍ଷା କଲେ । ପ୍ରଭାତ ହେବାପରେ ନଈକୂଳରେ ସେ ଧରାହୋଇ ଘରକୁ ଆସିଲେ । ତାଙ୍କର ଏତାଦୃଶ କାର୍ଯ୍ୟ ଦେଖି ସମସ୍ତେ ବିସ୍ମିତ ହେବା ସଙ୍ଗେ ସଙ୍ଗେ, ଶେଷରେ ସ୍କୁଲକୁ ଯିବାପାଇଁ ପିତାଙ୍କଠାରୁ ପ୍ରତିଶ୍ରୁତି ପାଇ ସେ ଆନନ୍ଦିତ ହେଲେ ।

ସେ ଜଣେ ମେଧାବୀ ଛାତ୍ର ଥିଲେ । ମେଟ୍ରିକ୍‌ଠାରୁ ବି.ଏସ୍‌ସି. ପର୍ଯ୍ୟନ୍ତ, ସଫଳତାର ସହ ସେ କୃତିତ୍ୱ ଅର୍ଜନ କରିଥିଲେ । ବାଲ୍ୟଜୀବନଠାରୁ ଆରମ୍ଭକରି ଶେଷପର୍ଯ୍ୟନ୍ତ କେଉଁଠାରେ ସେ ଦ୍ୱିତୀୟ ସ୍ଥାନ ପାଇନାହାନ୍ତି । କଟକ କଲେଜରେ ସେଜଣେ ସୁବକ୍ତା ଓ ବିଶିଷ୍ଟ ଛାତ୍ରନେତା ହିସାବରେ ଖ୍ୟାତଥିଲେ । ତାଙ୍କର ସୁନାମ କେବଳ କଲେଜ ପରିସର ମଧ୍ୟରେ ସୀମିତ ନଥିଲା । ତାଙ୍କର ପ୍ରତିଭା, ତଥା ଅଲୌକିକ ବାଗ୍ମୀତାରେ ସାଧାରଣ ଜନତା ଅଭିଭୂତ ହୋଇପଡୁଥିଲେ ।

୧୯୨୫ ମସିହା ମହାତ୍ମା ଗାନ୍ଧୀଙ୍କର ଅସହଯୋଗ ଆନ୍ଦୋଳନର ସୂତ୍ରପାତ । ଅସହଯୋଗ ଆନ୍ଦୋଳନରେ ଯୋଗ ଦେବାପାଇଁ ବହୁ ଯୁବପ୍ରାଣଙ୍କୁ ଆହ୍ୱାନ ଦିଆଯାଉଥାଏ । ସ୍ୱାଧୀନତା ନିମନ୍ତେ ପ୍ରତ୍ୟେକ ଚିନ୍ତିତ

ଓ ବ୍ୟସ୍ତ । ସାରା ଦେଶ ସେହି ମହାମନ୍ତ୍ରରେ ମୁଖରିତ ।

୧୯୨୧ ମସିହାରୁ ଯଦୁମଣି ଛାତ୍ର ଅବସ୍ଥାରୁ ସ୍ୱାଧୀନତା ପ୍ରାପ୍ତିଯାଏ ନିଜକୁ ଜାତିପାଇଁ, ଦେଶପାଇଁ ସଂପୂର୍ଣ୍ଣ ଉତ୍ସର୍ଗ କରିଦେଇଥିଲେ । ତାଙ୍କର ଅସାଧାରଣ ବାଗ୍ମିତା, ବାକ୍‌ପଟୁତା ଶକ୍ତି ଅତୀବ ପ୍ରବଳ ଥିଲା । ତାଙ୍କର ଅଗ୍ନିମୟ ଭାଷଣ ସମଗ୍ର ଜନତାକୁ ସ୍ତମ୍ଭୀଭୂତ କରି ଦେଉଥିଲା । କେବଳ ଓଡ଼ିଆ ନୁହେଁ, ଅନେକ ପ୍ରାନ୍ତୀୟ ଭାଷାରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ଏକଦା ବଙ୍ଗଳାରେ ରହୁଥିବା ସମୟରେ ଜଣେ ବଙ୍ଗାଳୀ ଭଦ୍ରଲୋକ ତାଙ୍କୁ ହିନ୍ଦୀ, ପଞ୍ଜାବୀ ଓ ବଙ୍ଗଳା ପ୍ରଭୃତି ଭାଷାରେ କଥାବାର୍ତ୍ତା କରୁଥିବାର ଲକ୍ଷ୍ୟକରି ମନରେ କୌତୂହଳ ଜାତ ହୋଇଥିଲା ।

ତାଙ୍କପରି ଜଣେ ନିଷ୍ଠାପର, ନିର୍ଭୀକ, ତେଜସ୍ୱୀ, ଜାତୀୟ ହିତୈଷୀ ନେତା ବିରଳ । ସେ ଯେପରି ନିଷ୍ଠାପର ସେହିପରି ନିରଳସ । ତାଙ୍କ ଜୀବଦଶା ମଧ୍ୟରେ ବର୍ତ୍ତମାନର ନେତାମାନଙ୍କ ପରି କୌଣସି ପଦପଦବୀ ପାଇଁ ଲାଳାୟିତ ହୋଇନାହାନ୍ତି । ସେ ବିଧାନସଭାର ସଭ୍ୟରୂପେ ନିର୍ବାଚିତ ହୋଇଥିଲେ । ଓଡ଼ିଶାର ବିଚ୍ଛିନ୍ନାଞ୍ଚଳ, ସିଂହଭୂମ, ଧଳଭୂମ, ଷଡେଇକଲା, ଖରସୁଆଁ, ବସ୍ତର, ଫୁଲଝର ଇତ୍ୟାଦି ଅଞ୍ଚଳରେ ଦୀର୍ଘଦିନ ଧରି, ଦୁଃଖଦୁର୍ଦ୍ଦଶାଗ୍ରସ୍ତ, ବୁଭୁକ୍ଷୁ, ନିରନ୍ନ ଜନତାଙ୍କ ପାଇଁ କାର୍ଯ୍ୟ କରିଛନ୍ତି । ବହୁ ସ୍ଥାନରେ ସଭାସମିତି କରି ଉଦ୍‌ବୋଧନ ଦେଇ, ଲୋକଙ୍କ ମନରେ ଜାଗରଣ ସୃଷ୍ଟି କରିଛନ୍ତି । ଜୀବନରେ ବହୁ ଗାଳି, ଅପମାନ, କେତେ ନିର୍ଯାତନା ଓ କଷଣ ଭୋଗିଛନ୍ତି । ଦେଶର ସ୍ୱାଧୀନତା ଆନ୍ଦୋଳନରେ ଝାସଦେଇ ବହୁବାର କରାବରଣ କରିଛନ୍ତି କିନ୍ତୁ ସ୍ୱାଧୀନତା ପ୍ରାପ୍ତିପରେ ନେତାର ଗର୍ବ କିମ୍ବା ଅହଙ୍କାର କେବେ କରିନାହାନ୍ତି ।

ଅନ୍ୟାୟ, ଅତ୍ୟାଚାର, ଅନୀତି ଦେଖିଲେ ସେ ବାଘପରି ଲମ୍ଫପ୍ରଦାନ କରି ଅତି ଶାଣିତ ଭାବରେ ଅନୀତିଗ୍ରସ୍ତ ବ୍ୟକ୍ତିଙ୍କୁ ସମାଲୋଚନା କରି ବ୍ୟତିବ୍ୟସ୍ତ କରିଦେଉଥିଲେ । ସ୍ଫୁଲିଙ୍ଗ ବର୍ଷଣକାରୀ ଜ୍ୱାଳାମୟୀ ଜୀବନ୍ତ ଭାଷାରେ ସଭାମଞ୍ଚରେ କଠୋର ଭାବରେ ପ୍ରକାଶ କରି କହୁଥିଲେ'

*'ବିଳାସବ୍ୟସନ ଛାଡ଼ି ହୁଅ ବ୍ରହ୍ମଚାରୀ*
*ତୁମ ପ୍ରଦୀପ ଅନଳେ ଜଳିଉଠୁ ପୁରୀ'*

କଳା ମୁଚ୍‌ମୁଚ୍ ଚେହେରା, ଗଜରା ନିଶ, ଗମ୍ଭୀର ମୁଖମଣ୍ଡଳ, ହାତରେ ବାଡ଼ି ଓ ଦୋ'କୋଛି ଭିଡ଼ା ଧୋତି ସହିତ ସାମାନ୍ୟ ଲମ୍ବା ପଞ୍ଜାବି ପରିଧେୟ ପ୍ରତିଭାବାନ୍ ବ୍ୟକ୍ତି ଯଦୁମଣି ମଙ୍ଗରାଜଙ୍କୁ ଦେଖିବାର ଆଉ ସୁଯୋଗ ନାହିଁ । କିମ୍ବା ତାଙ୍କର ଶ୍ରେଷ୍ଠ ଆର୍ଟ, ଥଟ୍ଟା, ପରିହାସ, ଟାହୁଲି, ଟାପରା, ବ୍ୟଙ୍ଗବିଦ୍ରୁପ ରସାଣିଆ ଭାଷା ଶୁଣିବାର ସମ୍ଭାବନା ନାହିଁ । ଯେଉଁମାନେ ତାଙ୍କ ଭାଷଣ ଶୁଣିଛନ୍ତି, ସେମାନେ ନିଶ୍ଚିତଭାବେ ଏକମତ ହେବେ ଯେ ତାଙ୍କ ପରି ଯୋଗଜନ୍ମା ବାଗ୍ମୀ ଉତ୍କଳରେ ବିରଳ । ଶ୍ରୋତାମାନଙ୍କୁ ହସି, ହସାଇ ଯେପରି ଗଡ଼ାଇ ଦେଉଥିଲେ, ଠିକ୍ ସେହିପରି କାନ୍ଦି, କନ୍ଦାଇ ଅଧୀର କରିଦେଉଥିଲେ । ଏକସଙ୍ଗେ ହସାଇ, ରସାଇ, କନ୍ଦାଇ, ତତାଇ, ମତାଇ ଭାଷଣ ଦେବା ବ୍ୟକ୍ତି ଅଦ୍ୱିତୀୟ କହିଲେ ଅତ୍ୟୁକ୍ତି ହେବନାହିଁ । ସୀମା ଆନ୍ଦୋଳନ ସମୟର ଘଟଣା । ଓଡ଼ିଶାର ନ୍ୟାଯ୍ୟ ଦାବିକୁ ତତ୍‌କାଳୀନ କେନ୍ଦ୍ରସରକାର ପ୍ରତ୍ୟାଖ୍ୟାନ କରିବାରୁ, ଓଡ଼ିଶାର ଅସନ୍ତୋଷ ଗ୍ରାରିଆଡ଼େ ବହ୍ନି, ବିକ୍ଷୋଭର ଦପୁଆର ଏବଂ କୋଣେ, କୋଣେ ଆନ୍ଦୋଳନ, ଧର୍ମଘଟ । ଠିକ୍ ସେତିକିବେଳେ ସ୍ୱର୍ଗତ ଯଦୁମଣି ମଙ୍ଗରାଜଙ୍କ ଓଜସ୍ୱିନୀ ଭାଷଣ ଯେ ଶୁଣିଥିବ, ସେ କେବେ ସେଇ ପ୍ରତିଭାସମ୍ପନ୍ନ ବ୍ୟକ୍ତିଙ୍କୁ ଭୁଲିପାରିବ ନାହିଁ । ତାଙ୍କ ଭାଷଣ ଶୁଣିବା ପାଇଁ ଜନତାଙ୍କ ବିପୁଳ ସମାବେଶ । ଟାଉନହଲ୍ ପଡ଼ିଆରେ ବଜ୍ରଗମ୍ଭୀର ସ୍ୱରରେ ସେ ସଭାରେ ଘୋଷଣା କଲେ ଯେ, ସେ ହେଉଛନ୍ତି ଓଡ଼ିଶାର ସର୍ବମୟ ଶାସକ । ତାଙ୍କରି ନିର୍ଦ୍ଦେଶ ହେବ ଗ୍ରହଣୀୟ । ତାଙ୍କର ଅସାଧାରଣ ନିର୍ଭୀକ କଠୋର ଭାଷଣରେ ଜନତା ସ୍ତମ୍ଭୀଭୂତ ହୋଇଯାଇଥିଲେ ।

ସେ, ଯେପରି ରୁକ୍ଷ, ସେପରି ହାସ୍ୟରସିକ । ରସିକଚୂଡ଼ାମଣି । ରସିକରାଜ ପୁରୁଷ । ତାଙ୍କର ରହସ୍ୟ ପାଇଁ ତାଙ୍କୁ ଅନେକ ନୟାଗଡ଼ର ରସିକ କବି ଯଦୁମଣି ମହାପାତ୍ରଙ୍କ ସଙ୍ଗେ ତୁଳନା କରିଥାନ୍ତି । ତାଙ୍କର ରସିକତା ତଥା ହାସ୍ୟ ସମ୍ପର୍କରେ ଗୋଟିଏ ଉଦାହରଣ ଦେଲେ ଯଥେଷ୍ଟ ହେବ । ଏକଦା ଆଡ୍‌ଭୋକେଟ ସୁରଜମଲ୍ଲ ସାହାଙ୍କ ବାସଭବନରେ, ଶ୍ରୀୟାଜୀ ସୁନ୍ଦରମ୍, କର୍ଣ୍ଣେଲ ମୋହନ ସିଂ, ମେଜର୍

ଧୀଲେନ୍ ଓ ଶ୍ରୀ ଦିବାକର ପଟ୍ଟନାୟକ ପ୍ରଭୃତି ଆସିଥିବାବେଳେ, ପ୍ରେସ୍ କନ୍‌ଫରେନ୍ସବେଳେ ଶ୍ରୀଯୁକ୍ତ ରାଧାନାଥ ରଥ ପ୍ରଭୃତି ଉପସ୍ଥିତ ଥାଆନ୍ତି ।

ଆଲୋଚନା ଶେଷରେ ତାଙ୍କ କୋଠାର ଛାତ ଉପରେ ଗୋଟିଏ ଗ୍ରୁପ୍ ଫଟୋ ଉଠାହେବାର ଥିଲା । ସମସ୍ତେ ଉପରକୁ ଗଲେ । କିନ୍ତୁ ଯଦୁମଣି ପରିସ୍ରା କରିବାକୁ ଯାଇଥିବାରୁ ତାଙ୍କର ସାମାନ୍ୟ ଡେ଼ରି ହେଲା । ଡେ଼ରିର କାରଣ ପଚାରିବାରୁ ସେ ହସି ହସି କହିଲେ, ଫଟଟା ବାସିବା ପାଇଁ ମୁଁ ନିଶରେ ସାମାନ୍ୟ ସେଣ୍ଟ ମାରିବାକୁ ଯାଇଥିଲି । ଏହିପରି ନିଛକ ହାସ୍ୟରସଭରା ପଟୁତା କେତେଜଣଙ୍କ ପାଖରେ ?

ଉକ୍ତ ପ୍ରବନ୍ଧ ରଚନାର ଅବସରରେ ଆଉ ଏକ ଘଟଣା ଉଲ୍ଲେଖଯୋଗ୍ୟ । ଯେଉଁଥିରେ ତାଙ୍କର ସାହସିକତା ସୁସ୍ପଷ୍ଟ ଅନୁମେୟ । ଯେତେବେଳେ ମେଦିନପୁର ଓଡିଶାରୁ ବିଚ୍ଛିନ୍ନ ହୋଇ ବଙ୍ଗଳାର ଅନ୍ତର୍ଭୁକ୍ତ ହେବାକୁ ଗଲା ଓ ଓଡ଼ିଶାର କୌଣସି ନେତା କିମ୍ବା କର୍ମୀ ଓଡ଼ଶା ସମ୍ବନ୍ଧରେ ପ୍ରଚାର କରିବାକୁ ଯିବାକୁ ସାହାସ କଲେନାହିଁ । ବଙ୍ଗଳା ତରଫରୁ ଶ୍ରୀ ବୀରେନ୍ଦ୍ର ଶାସମଲ ବଙ୍ଗଳା ସହ ମେଦିନପୁର ସମ୍ମିଶ୍ରଣର ପ୍ରଧାନ ଉଦ୍ୟୋକ୍ତା ଓ ନେତା ଥିଲେ । ସେ ସେଠାରେ ବଙ୍ଗଳା ସପକ୍ଷରେ ପ୍ରଚାର ଚଳାଇଥିବାବେଳେ, ଓଡ଼ିଶାରୁ ତା'ର ତୀବ୍ର ପ୍ରତିରୋଧ ନିମନ୍ତେ ଏକମାତ୍ର ଯଦୁମଣି ସେଠାକୁ ଯାଇ ସ୍ଥାନେ ସ୍ଥାନେ ବକ୍ତୃତା ଦେଇ ନିର୍ଭୀକ ଯୁବକ ଯଦୁମଣି ଗୁଣ୍ଡାମାନଙ୍କ ଦ୍ଵାରା ଆକ୍ରାନ୍ତ ହୋଇ ସୁଦ୍ଧା ବିଚଳିତ ହୋଇନଥିଲେ ।

ଉତ୍କଳମଣି ଗୋପବନ୍ଧୁ ଓ ଉତ୍କଳ ଗୌରବ ମଧୁସୂଦନଙ୍କର ଯଦୁମଣି ଥିଲେ ପ୍ରିୟପାତ୍ର । ସେତେବେଳେ, ଯେଉଁ କାମଥିଲା ଅନ୍ୟମାନଙ୍କ ପକ୍ଷେ ଦୁଃସାଧ୍ୟ, ଯଦୁମଣି ହସି ହସି ସେ କାର୍ଯ୍ୟ ସମାପନ କରୁଥିଲେ । ଏଣୁ ତାଙ୍କୁ କେହି କେହି ରସରାଜ, ବାଘ, ନିଆଁଗିଳା, ରସିକ ପୁରୁଷ ଇତ୍ୟାଦି ବହୁନାମରେ ସମ୍ବୋଧନ କରୁଥିଲେ ।

ଦେଶ ଓ ଜାତିର ଘଡ଼ିସନ୍ଧି ମୁହୂର୍ତ୍ତରେ ବହୁ ଅସାଧାରଣ ବ୍ୟକ୍ତିତ୍ୱ, ବହୁମୁଖୀ ପ୍ରତିଭା, ସ୍ୱାଧୀନତା ସଂଗ୍ରାମୀ, ନିର୍ଭୀକ ବାଗ୍ମୀ, ହାସ୍ୟରସିକ, ଓଡ଼ିଶା ଖଣ୍ଡାୟତ (କ୍ଷତ୍ରିୟ) ମହାସଭାର ପ୍ରତିଷ୍ଠାତା ବିପ୍ଳବୀ ଯଦୁମଣି ମଙ୍ଗରାଜ, ଦୀର୍ଘ ଅର୍ଦ୍ଧ ଶତାବ୍ଦୀଧରି ଜଣେ ତାନ୍ତ୍ରିକର, ଜଣେ କାପାଳିକର ପ୍ରାଣଥରା ବୈପ୍ଳବିକ ହୁଙ୍କାର ଛାଡ଼ି–ପ୍ରଳୟଙ୍କର ତାଣ୍ଡବ ନୃତ୍ୟକାରୀ ରୁଦ୍ରଙ୍କର ଅନୁଚର ରୂପେ, ଅନେକ ନୃତ୍ୟକରି– ଦୁର୍ନୀତି, ଶୋଷଣ ବିରୁଦ୍ଧରେ କ୍ରୂର ବିଦ୍ରୂପର ବହ୍ନିକଣା ବିକୀର୍ଣ୍ଣ କରି, ଜାତିର ଅଧୋଗତି ଶିକ୍ଷାର ଅବହେଳା, ସଂସ୍କୃତିର ଅଧଃପତନ, ପୁରୁଷର ସ୍ତ୍ରୈଣତା, ବନ୍ୟା, ମରୁଡ଼ି ବ୍ୟାଧି, ଦାରିଦ୍ର୍ୟ ଶୋଷଣ, ବିରୁଦ୍ଧରେ ନିରବଚ୍ଛିନ୍ନ ସଂଗ୍ରାମ ଚଳାଇ, ଶେଷରେ ଏ ଜାତି, ଏ ଦେଶଠାରୁ ୧୯୬୪ ମସିହା ଏପ୍ରିଲ ଦୁଇତାରିଖରେ ଅନ୍ତିମ ବିଦାୟ ନେଲେ ।

ସେ ଆଜି ଜୀବିତ ଥିଲେ, ଉତ୍କଳ ଗ୍ରାମାଞ୍ଚଳର ଦୁଃଖଦୁର୍ଦ୍ଦଶାଗ୍ରସ୍ତ, ବୁଭୁକ୍ଷୁ ନଗ୍ନ ନିରନ୍ନ ଜନତାଙ୍କ ପାଇଁ ଓ ବର୍ତ୍ତମାନ ଦେଶର ରାଜନୈତିକ ଚେତନା ପାଇଁ ତାଙ୍କର ଦେଶପ୍ରାଣ ବ୍ୟାକୁଳ ତଥା ବ୍ୟଥିତ ହେଉଥାନ୍ତା ।

ଏଣୁ, ଯଦୁମଣି ମଙ୍ଗରାଜଙ୍କପରି ଜଣେ ପ୍ରବୀଣ ଜନନେତାଙ୍କଠାରୁ ଏ ଦେଶ, ଏ ଜାତି, ନେତା, ଶିକ୍ଷିତ, ଯୁବକ, ଜୀବନର ସକଳ ସୌନ୍ଦର୍ଯ୍ୟ ଫୁଟାଇ, ନୂତନ ନେତୃତ୍ୱ ଦେଇ ସୁଖୀ ସମାଜ ଗଠନ ଦିଗରେ ଅଗ୍ରସର ହେବାକୁ ନିଶ୍ଚିତ ଶିକ୍ଷାଲାଭ କରିବ । ତାଙ୍କପରି ବାଗ୍ମୀବୀର, ରୟାଲ୍ ଟାଇଗର୍ ଅଫ୍ ଓଡ଼ିଶାଙ୍କ ଭାଷାରେ ପ୍ରତ୍ୟେକ ଉତ୍କଳୀୟ, ଦୁର୍ଦ୍ଧର୍ଷ ହୁଅ । ସାହାସୀ ହୁଅ । ଯୁବପ୍ରାଣ ଆଗେଇଗ୍ଲ–ମାଡ଼ିଯାଅ । ସୁଜଳା–ସୁଫଳା, ଶସ୍ୟଶ୍ୟାମଳା ଜନ୍ମଭୂମିକୁ ସମୃଦ୍ଧ କର, ଉନ୍ନତ କର । ନିଜ ମାତୃଭାଷାର ଗୌରବ ରକ୍ଷାକର ।

# ସଂପାଦକୀୟ

୧୮୯୪ ରୁ ୧୯୯୪ ର ନବବର୍ଷ। ଶତାବ୍ଦୀଟିଏ ବିତିଗଲାଣି। ଓଡ଼ିଶାର ରାଜନୈତିକ ଆକାଶରୁ କେତେ ଉଜ୍ଜ୍ୱଳ ନକ୍ଷତ୍ର ଏ ମାଟିରେ ଆଲୁଅ ବିଞ୍ଚି ଲିଭିଗଲେଣି। ନିର୍ଭୀକ ସ୍ୱାଧୀନଚେତା, ରସରାଜ, ପ୍ରତ୍ୟୁତ୍ପନ୍ନମତି, ଦେଶସେବୀ, ଚିରସଂଗ୍ରାମୀ ଓଡ଼ିଆ ନବଜୀବନର ଅନ୍ୟତମ ମଂଗୁଆଳ, ଉତ୍ଥାନ ପାଦ ମଂଗରାଜଙ୍କ ୧୯୬୪ ମସିହା ଏପ୍ରିଲ୍ ଦୁଇ ତାରିଖରୁ ବିଦାୟ ନେଇ ଗ୍ଲିଗଲେଣି। ଆଜି ତାଙ୍କର ଜନ୍ମ ଶତବାର୍ଷିକୀ। ୧୯୯୪ ମସିହା ନୂଆବର୍ଷରେ ଆମେ ଖୋଜୁଛୁ ସେ ଉଜ୍ଜ୍ୱଳ ପୁରୁଷଙ୍କର ଦୁଇଟି ରତ୍ନପାଦ ବହୁ ନକ୍ଷତ୍ର ଖଚିତ ମୁକ୍ତଆକାଶର ଛାୟାପଥରେ, ମନେହୁଏ, ଏଯାଏଁ ସେ ଅନ୍ଧାର ଆମ ଜାତୀୟ ଜୀବନରୁ ଦୂର ହୋଇନି। ଆଜି ଏମିତି ସମୟ ଆସିଛି, ଯେତେବେଳେ ଆମକୁ ଖୋଜିବାକୁ ପଡୁଛି ସେହି ମହାନ୍ ଚରିତ୍ରମାନଙ୍କୁ, ବଳିଷ୍ଠ ଜାତୀୟ ପ୍ରାଣ ଅନମନୀୟ ବ୍ୟକ୍ତିତ୍ୱଙ୍କୁ, କାଳେ ଆମ ଭିତରେ, ଆମ ଉତ୍ତରପୁରୁଷଙ୍କ ଭିତରେ ସେଭଳି ଚରିତ୍ରଟିଏ, ସେଭଳି ପ୍ରାଣବନ୍ତ ବ୍ୟକ୍ତିତ୍ୱଟିଏ ନବଜନ୍ମ ନେଇପାରେ ! ଯେମିତି କବି ଯଦୁମଣିଙ୍କ ବ୍ୟଙ୍ଗବିଦ୍ରୂପଭରା ସ୍ୱର ପରେ ଜନ୍ମନେଲେ ଆଉ ଜଣେ ଯଦୁମଣି, ଜଣେ ଗୋଦାବରୀଶ। ତା'ପରେ ଆଉ କିଏ ? ଆଉ କିଏ ବୋଲି ଖୋଜିଲେ ନାହିଁ ଜଣେ ତ ମିଳୁନି ଏ କାଳରେ।

ସେଥିପାଇଁ ଏ ପ୍ରଚେଷ୍ଟା, ଏ ସ୍ମରଣିକା, ଜାତୀୟପ୍ରାଣ ଏ ଶତାବ୍ଦୀ ପୁରୁଷଙ୍କୁ ସ୍ମରଣ କରିପାରିଲେ ଆଉ ଏକ ନୂତନ ଗ୍ଚରା ଅଙ୍କୁରିତ ହେବ, ହେବ ମହାଦ୍ରୁମରେ ପରିଣତ। ମଙ୍ଗରାଜ ଯଦୁମଣି, ନୀଳକଂଠଙ୍କ ଦାଢି ପରେ ମଂଗରାଜଙ୍କ ବାଡ଼ି କି ସରଳା ଦେବୀଙ୍କ ଖାଡୀ କଥା ଲୋକଙ୍କ ମୁହେଁ ମୁହେଁ ଆପଣାଛାଏଁ ବାହାରିଆସେ। ହୁଣ୍ଡା ନୁହଁନ୍ତି କି ଗୁଣ୍ଡା ନୁହଁନ୍ତି। ମଣିଷଧର୍ମୀ ପୁରୁଷସିଂହରେ। ଛୋଟରେ ପେଟ ପୂରେ ନାହିଁ। ବଡ଼ ନ ହେଲେ ପସନ୍ଦ ହୁଏନାହିଁ। କଟରା ନୁହେଁ କଂସା। ନୋଟା ନୁହେଁ ଗରା। ହାଣ୍ଡି ନୁହେଁ ହଣ୍ଡା। ଓଳିଆ ନୁହେଁ ଆମାର। ପେଣାରେ ନୁହେଁ କାନ୍ଦିଏ। ନିଜେ ନିଜର ଉପମା। ବଡ଼ ଆଖି, ଚକାଆଖିଙ୍କ ସିଂହଦୁଆରେ ଗୋପବଂଧୁଙ୍କୁ ଗ୍ରହି ବିଚ୍ଛିନ୍ନାଅଞ୍ଚଳର ଅଶ୍ରୁତକ ଅଜାଡ଼ି ଦେଉ ଦେଉ ଲୋକଙ୍କ ମନକୁ ପୁଣି ଉଶ୍ୱାସ କରିଦିଅନ୍ତି ହସର ମିଠାପସରାରେ। ଯଦୁମଣିଙ୍କ

ସାଧନା ଓ ପ୍ରେରଣାରେ ମହାପ୍ରସାଦର ମୈତ୍ରୀମନ୍ତ୍ର ବାନ୍ଧି ରଖିଲା ଓଡ଼ିଆର ଲକ୍ଷ ଲକ୍ଷ ପ୍ରାଣ। ସ୍ୱଧର୍ମ ବିପ୍ଳବର ଐତିହ୍ୟ ଜାଗରଣରେ ସେଦିନ ଅଭ୍ୟୁଦୟ ହେଲା ଓଡ଼ିଶାର ଜନମାନସରେ ନବାରୁଣର ଆଦ୍ୟାନୁରାଗ।

ଶିଷ୍ୟ ଯଦୁମଣିଙ୍କୁ ପାଇ ଗୁରୁ ଆର୍ତ୍ତବଲ୍ଲଭ ମହାନ୍ତି ନିଜର ଗୁରୁଗୌରବ ଲାଭକଲେ। ଡଃ ମହତାବ ଅନୁଭବକଲେ ସହକର୍ମୀର ସାର୍ଥକ ସହଯୋଗିତା। କବିଚନ୍ଦ୍ର ଅନୁଭବ କଲେ ନିଜଭିତରେ 'ମହାଭାବ' । ଯଦୁମଣିଙ୍କୁ ସମ୍ବୋଧନ କଲେ 'ରସରାଜ'। ଲୋକଙ୍କୁ କଥା କଥାରେ ହସାଇ, ରସାଇ, ଚଟାଇ, ମଟାଇ, ତାଙ୍କ ଦେଖାନ୍ତରେ ମଙ୍ଗରାଜ ଥିଲେ ତାଙ୍କ ସରିସମ ଏକା ସିଏ।

ଅନନ୍ୟ ବ୍ୟକ୍ତିତ୍ୱ। ଯଦୁମଣିଙ୍କ ନେତୃତ୍ୱର ଥିଲା ଅସାଧାରଣ ବିଶେଷତ୍ୱ। ସେ ନେତୃତ୍ୱ ପାଖରେ କ୍ଷୁଦ୍ରତା ଓ କୁଟିଳତାର ସ୍ଥାନ ନଥିଲା। ସ୍ୱଚ୍ଛତା, ସହିଷ୍ଣୁତା, ନୀତି କଠୋର, ଅଦର୍ଶ ଉଦ୍‌ବୁଦ୍ଧ ପ୍ରାଣ ଯଦୁମଣିଙ୍କ ଜୀବନ ଆଶା ଓ ପ୍ରେରଣାର ଉତ୍ସ। ଉତ୍କଳ ଗୌରବ ମଧୁସୂଦନଙ୍କୁ ଶେଷ ଜୀବନରେ ପ୍ରଣିପାତ କରି ଉତ୍କଳମଣି ଗୋପବନ୍ଧୁଙ୍କ କଥା ଅନୁସାରେ ସେ ନିଜ ବଂଶଧରଙ୍କ ନାମକରଣ କରିଯାଇଛନ୍ତି। ସ୍ମରଣ କରିଛନ୍ତି ତାଙ୍କର ପୂର୍ବସୂରୀ ଜାତୀୟପ୍ରାଣ ବ୍ୟକ୍ତିତ୍ୱକୁ।

ଆମେ ତାଙ୍କ ବ୍ୟକ୍ତିତ୍ୱକୁ ସ୍ମରଣ କରୁଛୁ। ହେ ଯଦୁମଣି ! ହେ ରସିକଶ୍ରେଷ୍ଠ ! ହେ ଅଦ୍ୱିତୀୟ ବ୍ୟଙ୍ଗକାର, ହେ ଶକ୍ତି ଆଉ ଏକତାର ପ୍ରତିଭୂ ଉଦାରମନା ଚଳଚଞ୍ଚଳ ମହାପୁରୁଷ, ହେ ଉତ୍କଳର ବିବେକ ଓ ଆଦର୍ଶର ଉପବାଚସ୍ପତି, ଜନଚେତନାର ମୁଖ୍ୟ ପ୍ରବକ୍ତା ଆମର ପ୍ରଣିପାତ ଗ୍ରହଣ କରନ୍ତୁ। ଆପଣଙ୍କ ବ୍ୟକ୍ତିତ୍ୱ ସ୍ୱତନ୍ତ୍ର, ଆପଣଙ୍କ ରୁଚିର ଦେଶଟିଏ ଆମର ଲୋଡା, ଆପଣଙ୍କ ଅଭିଳଷିତ ଜୀବନଟିଏ ଆମର ଦରକାର। ଆପଣ ଚିରଂଜୀବୀ–ଓଡ଼ିଆ ଜୀବନରେ ଏକ ଅମୃତମୟ ଉପଲବ୍‌ଧି । ଏକ ଅବିନଶ୍ୱର ଚେତନା।

ଏ ଜାତିର ମୁହଁରୁ ହସ ଆଜି ଲିଭିଯାଇଛି। ଆପଣ ସେ ହସ ଆଉ ଥରେ ଭରିଦେବାକୁ ଆସିବେନି ସତ କିନ୍ତୁ ଏ ସ୍ମରଣିକା ଯଦି ଆପଣଙ୍କ ସ୍ମୃତିରେ କାନ୍ଦୁ କାନ୍ଦୁ କାହାକୁ ହସେଇଦିଏ, ଆମେ କି ଓଡ଼ିଆବାସୀ, କେହି ଆଶ୍ଚର୍ଯ୍ୟ ହେବେନାହିଁ।

ଯୁଗ୍ମ ସଂପାଦକ

# ଓଡ଼ିଶା ଖଦି ଓ ଗ୍ରାମୋଦ୍ୟୋଗ ବୋର୍ଡ଼, ଭୁବନେଶ୍ୱର

**୩୬ ବର୍ଷର ନିରନ୍ତର ସେବା ଓ ସାଧନାର ପ୍ରତୀକ**

- ଗାଁ ଗହଳିର ଗରିବ କାରିଗର, ମହିଳା ଓ ବେକାର ଯୁବକମାନଙ୍କୁ ଆର୍ଥିକ ସହାୟତା ଯୋଗାଇ ଦେଇ ଆତ୍ମନିର୍ଭର କରି ଗଢ଼ି ତୋଳିବାରେ ଏହାର ଭୂମିକା ଅଗ୍ରପ୍ରଧାନ।
- ଖଦି ଓ ପାରଂପରିକ ଗ୍ରାମ୍ୟ ଶିଳ୍ପ ସହିତ ରେଡିମେଡ୍ ଗାର୍ମେଂଟ ମେକିଂଗ୍, ଲଫାପା ତିଆରି, ବହି ବଂଧେଇ, ଟେଲରିଂ, ପ୍ଲିମ୍ବିଂ, ଅଗରବତୀ ଓ ମହମବତୀ ଉତ୍ପାଦନ ଇତ୍ୟାଦି କେତୋଟି ନୂଆ ଶିଳ୍ପ ପାଇଁ ଆର୍ଥୀକ ସହାୟତା ଯୋଗାଇ ଦିଆଯାଉଛି।
- ପଲ୍ଲୀବସ୍ତ୍ର ଯୋଜନା ମାଧ୍ୟମରେ ଗ୍ରାମାଂଚଳର ମହିଳାମାନଙ୍କ ପାଇଁ କର୍ମ ନିଯୁକ୍ତିର ସୁଯୋଗ ସୃଷ୍ଟି କରାଯାଇଛି।
- କଳାହାଣ୍ଡି ଓ ଫୁଲବାଣୀ ଜିଲ୍ଲାର ଅନଗ୍ରସର ଲୋକମାନଙ୍କ ଅର୍ଥନୈତିକ ବିକାଶ ସାଧନ ପାଇଁ ସ୍ୱତନ୍ତ୍ର କାର୍ଯ୍ୟକ୍ରମମାନ ହାତକୁ ନିଆଯାଇଛି।
- ଉତ୍ତମ ଖାଉଟି ସେବା ଯୋଜନାରେ ବୋର୍ଡର ଗ୍ରାମୋଦ୍ୟୋଗ ବିକ୍ରୟ ଭଣ୍ଡାର ଓ ଜିଲ୍ଲାସ୍ତରୀୟ ଗ୍ରାମୋଦ୍ୟୋଗ ବିକ୍ରୟ ସମିତି ଜରିଆରେ ଘଣାପେଡ଼ା ସୋରିଷ ତେଲ, ମହୁ, ହଳଦୀଗୁଣ୍ଡ ଓ ସାବୁନ୍ ଆଦି ସୁଲଭ ମୂଲ୍ୟରେ ବିକ୍ରୟ କରାଯାଉଛି।
- ଆଗାମୀ ପଞ୍ଚବାର୍ଷିକ ଯୋଜନାକାଳ ମଧ୍ୟରେ ୨୦୦ କୋଟି ଟଙ୍କାର ବ୍ୟୟବରାଦ ଯୋଜନା କରାଯାଇଛି ଏବଂ ୩୦୦ ଶହ କୋଟି ଟଙ୍କାର ସାମଗ୍ରୀ ଉତ୍ପାଦନ ଓ ୫ ଲକ୍ଷରୁ ଉର୍ଦ୍ଧ୍ୱ ଲୋକଙ୍କ ପାଇଁ କର୍ମନିଯୁକ୍ତିର ଲକ୍ଷ୍ୟ ଧାର୍ଯ୍ୟ ହୋଇଛି।
- ଖଦି ଓ ଗ୍ରାମ ଶିଳ୍ପ ମାଧ୍ୟମରେ ଗ୍ରାମାଞ୍ଚଳର ଅର୍ଥନୈତିକ ବିକାଶ ସାଧନ ପାଇଁ ଓଡ଼ିଶା ଖଦି ଓ ଗ୍ରାମୋଦ୍ୟୋଗ ବୋର୍ଡ ବଦ୍ଧପରିକର।

**ଶ୍ରୀ ରାଜ କିଶୋର ନାୟକ**
ଅଧକ୍ଷ